# ଭି. ଆଇ. ଲେନିନ୍

## "ବାମପନ୍ଥୀ" କମ୍ୟୁନିଜମ୍
## ଏକ ଶୈଶବସ୍ଥ ବ୍ୟାଧି



ନବଯୁଗ ଗ୍ରନ୍ଥାଳୟ, କଟକ

ପୃଥିବୀର ମଜଦୁର, ଏକ ହୁଅ

# ଭି. ଆଇ. ଲେନିନ

## "ବାମପନ୍ଥୀ" କମ୍ୟୁନିଜ୍ମ
## ଏକ ଶୈଶବ୍ୟ ବ୍ୟାଧି

"ବାମ

ନବଯୁଗ ଗ୍ରନ୍ଥାଳୟ, କଟକ

# ସୂଚୀ

ବିଷୟ | ପୃଷ୍ଠା



ପରିଶିଷ୍ଟ

# କେଉଁ ଅର୍ଥରେ ଆମେ ଋଷୀୟ ବିପ୍ଳବର ଆନ୍ତର୍ଜାତିକ ତାତ୍ପର୍ଯ୍ୟ କଥା କହି ପାରିବା ?

ରୁଷିଆରେ ସର୍ବହରା ଶ୍ରେଣୀ ଦ୍ୱାରା ରାଜନୈତିକ କ୍ଷମତା ଦଖଲ ହେବାର (ଅକ୍ଟୋବର ୨୫ [ ନଭେମ୍ବର ୭ ] ୧୯୧୭) ପ୍ରଥମ କେତୋଟି ମାସ ପର୍ଯ୍ୟନ୍ତ କେହି କେହି ହୁଏତ ଭାବିଥାଇ ପାରନ୍ତି ଯେ ଅନୁନ୍ନତ ରୁଷିଆ ଓ ପଶ୍ଚିମ ୟୁରୋପର ଅଗ୍ରସର ଦେଶମାନଙ୍କ ମଧ୍ୟରେ ବିରାଟ ବ୍ୟବଧାନ ରହିଥିବାରୁ ଏସବୁ ଦେଶରେ ଯେଉଁ ସର୍ବହରା ବିପ୍ଳବ ହେବ ତାହାର କୌଣସି ସାଦୃଶ୍ୟ ଆମର ବିପ୍ଳବ ସହିତ ରହିବ ନାହିଁ । କିନ୍ତୁ ବର୍ତ୍ତମାନ ଆମର ବିପୁଳ ଆନ୍ତର୍ଜାତିକ ଅଭିଜ୍ଞତା ହୋଇସାରିଛି । ସେସବୁ ଅଭିଜ୍ଞତା ଅତି ନିର୍ଦ୍ଦିଷ୍ଟ ଭାବେ ଦେଖାଇ ଦିଏ ଯେ, ଆମ ବିପ୍ଳବର କେତେ ଗୁଡ଼ିଏ ମୌଳିକ ଲକ୍ଷଣର ତାତ୍ପର୍ଯ୍ୟ ରହିଛି, ଯାହାକି ସ୍ଥାନୀୟ ନୁହେଁ, ବିଶେଷ ଭାବେ ଜାତୀୟ ନୁହେଁ, କେବଳ ରୁଷୀୟ ନୁହେଁ, ବରଂ ଆନ୍ତର୍ଜାତୀୟ । ମୁଁ ଏଠାରେ ଆନ୍ତର୍ଜାତୀୟ ତାତ୍ପର୍ଯ୍ୟ ଶବ୍ଦ ତାର ବ୍ୟାପକ ଅର୍ଥରେ ପ୍ରୟୋଗ କରୁନାହିଁ । ଅର୍ଥାତ୍ ମୁଁ କହୁନାହିଁ ଯେ ଆମ ବିପ୍ଳବର କେବଳ କେତେଟି ଲକ୍ଷଣ ନୁହେଁ, ସବୁ ମୌଳିକ ଲକ୍ଷଣ ଓ ଅନେକ ଗୌଣ ଲକ୍ଷଣର ମଧ୍ୟ ସବୁ ଦେଶକୁ ପ୍ରଭାବିତ କରିପାରିଲା ଭଳି ଆନ୍ତର୍ଜାତିକ ତାତ୍ପର୍ଯ୍ୟ ରହିଛି । ନା, ତା କଥା ମୁଁ କହୁନାହିଁ । ମୁଁ ଉକ୍ତ ଶବ୍ଦଟିକୁ ତାର ସଂକୀର୍ଣ୍ଣତମ ଅର୍ଥରେ ପ୍ରୟୋଗ କରୁଛି । ଆନ୍ତର୍ଜାତିକ ତାତ୍ପର୍ଯ୍ୟ କହିଲେ ମୁଁ ବୁଝେ ଯେ ଆମ ଦେଶରେ ଯାହାସବୁ ଘଟିଯାଇଛି ଆନ୍ତର୍ଜାତିକ କ୍ଷେତ୍ରରେ ତାର ପୁନରାବୃତ୍ତିର

ଏକ ଅନ୍ତର୍ଜାତିକ ଯଥାର୍ଥତା ବା ଐତିହାସିକ ଅନିବାର୍ଯ୍ୟତା ରହିଛି । ସେହି ଦୃଷ୍ଟିରୁ ବିଚାର କଲେ ଏକଥା ନିଶ୍ଚୟ ସ୍ୱୀକାର କରିବାକୁ ହେବ ଯେ, ଋଷ ବିପ୍ଳବର କେତେକ ମୌଳିକ ଲକ୍ଷଣର ଏ ପ୍ରକାର ତାତ୍ପର୍ଯ୍ୟ ରହିଛି ।

ଅବଶ୍ୟ, ଏହି ସତ୍ୟକୁ ଅତି-ରଞ୍ଜିତ କରିବା ଓ ଆମ ବିପ୍ଳବର ବହୁ ମୌଳିକ ଲକ୍ଷଣ ପ୍ରତି ଏହାକୁ ପ୍ରୟୋଗ କରିବା ଅତି ମାରାତ୍ମକ ଭୁଲ ହେବ, ତା'ଛଡ଼ା ଆମେ ଆହୁରି ଭୁଲ କରି ବସିବା ଯଦି ଆମେ ଏହି ସତ୍ୟ ପ୍ରତି ଆଖି ବୁଜି ଦେବା ଯେ, ଅଗ୍ରସର ଦେଶମାନଙ୍କ ଭିତରୁ ଅନ୍ତତଃପକ୍ଷେ ଗୋଟିଏ ହେଲେ ଦେଶରେ ସର୍ବହରା ବିପ୍ଳବର ବିଜୟ ପରେ ସେଠାର ଅବସ୍ଥା ହୁଏତ ଅତି ତୀକ୍ଷ୍ଣଭାବେ ବଦଳି ଯାଇପାରେ: ଅର୍ଥାତ, ଋଷିଆ ହୁଏତ ଆଉ ବେଶିକାଳ ଏକ ଆଦର୍ଶ ଦେଶ ହୋଇ ରହିନପାରେ ଓ ପୁଣି ଥରେ ଗୋଟିଏ ଅନଗ୍ରସର ଦେଶରେ ପରିଣତ ହୋଇଯାଇପାରେ ("ସୋଭିଏତ୍" ଏବଂ ସମାଜବାଦୀ ଅର୍ଥରେ ଅବଶ୍ୟ) ।

କିନ୍ତୁ ଇତିହାସର ଏଇ ମୁହୂର୍ତ୍ତରେ ପରିସ୍ଥିତି ଠିକ୍ ଏପରି ଆକାର ଧାରଣ କରିଛି ଯେଉଁଥିରେ ଋଷିଆର ଏହି ଆଦର୍ଶ ସବୁ ଦେଶମାନଙ୍କ ସମ୍ମୁଖରେ ସେମାନଙ୍କର—ଆଶୁ ଓ ଅନିବାର୍ଯ୍ୟ ଭବିଷ୍ୟତର କିଛି ନା କିଛି ଗୋଟାଏ ଦିଗ, ଗୋଟାଏ ଅତି ଅପରିହାର୍ଯ୍ୟ ଦିଗକୁ ଉନ୍ମୋଚନ କରିଦେଉଛି । ପ୍ରତ୍ୟେକ ଦେଶରେ ଅଗ୍ରଗାମୀ ଶ୍ରମିକମାନେ ବହୁଦିନୁ ଏହା ବୁଝିସାରିଲେଣି । ଅନେକ ସମୟରେ ସେମାନେ ଏହି ସତ୍ୟକୁ ହୁଏତ ଭଲରୂପେ ହୃଦୟଙ୍ଗମ କରିପାରି ନଥାନ୍ତି, କିନ୍ତୁ ନିଜର ବୈପ୍ଳବିକ ଶ୍ରେଣୀ ପ୍ରବୃତ୍ତିଦ୍ୱାରା ସେମାନେ ଏଇ ସତ୍ୟକୁ ଆୟତ୍ତ କରି ନେଇଛନ୍ତି, ତାହାର ପୂର୍ଣ୍ଣ ଆଭାସ ପାଇ ସାରିଛନ୍ତି ।

ଏହାର ଭିତରେ ହିଁ ନିହିତ ରହିଛି ସୋଭିଏତ୍ କ୍ଷମତାର ଏବଂ ବଲଶେଭିକ ତତ୍ତ୍ୱ ଓ ରଣ-କୌଶଳର ମୂଳନୀତି ଗୁଡ଼ିକର ଆନ୍ତର୍ଜାତିକ "ତାତ୍ପର୍ଯ୍ୟ" (ସଙ୍କୀର୍ଣ୍ଣ ଅର୍ଥରେ) । କିନ୍ତୁ ଜର୍ମାନୀର କାଉଟ୍ସ୍କି ଏବଂ ଅଷ୍ଟ୍ରିଆର ଅଟୋ ବାଉଏର ଓ ଫ୍ରେଡ଼ରିକ ଆଡ଼ଲରଙ୍କ ଭଳି, ଦ୍ୱିତୀୟ

ଆନ୍ତର୍ଜାତିକର "ବିପ୍ଳବୀ" ନେତାମାନେ ଏହା ବୁଝିବାକୁ ଅକ୍ଷମ । ତେଣୁ ସେମାନେ ଅତି ପ୍ରତିକ୍ରିୟାଶୀଳ ହୋଇ ପଡ଼ିଛନ୍ତି ଏବଂ ସୁବିଧା-ବାଦ ତଥା ସାମାଜିକ ବିଶ୍ୱାସଘାତକତାର ଘୃଣ୍ୟତମ ଓକିଲାତି କରିବାକୁ ବାଧ୍ୟ ହୋଇଛନ୍ତି । ପ୍ରସଙ୍ଗକ୍ରମେ, ସେହି ବେନାମୀ ପୁସ୍ତିକା "ବିଶ୍ୱବିପ୍ଳବ" ("ୱେଲ୍ଟରେଭଲ୍ୟୁସନ") ଶିରୋନାମାରେ ୧୯୧୯ରେ ଭିଏନାରେ (ସୋଜିଆଲିଷ୍ଟିକ୍ ବୁଚେରାଇହେଫଟ୍ ୧୧; ଇଗନାଜ୍ ବ୍ରାଣ୍ଡ) ପ୍ରକାଶ ପାଇଥିଲା ସେଥିରେ ଅତି ସ୍ପଷ୍ଟ ଭାବେ ସେମାନଙ୍କର ସମସ୍ତ ଚିନ୍ତାଧାରା ଏବଂ ସେମାନଙ୍କର ସମଗ୍ର ଯୁକ୍ତିବଚନ ପରିସ୍ଫୁଟ ହୋଇ ଉଠିଥିଲା । ବରଂ, କହିବାକୁ ଗଲେ ସେଥିରେ ସେମାନଙ୍କର ଚରମ ନିର୍ବୋଧତା, ବୃଥା ପାଣ୍ଡିତ୍ୟ, ନୀଚତା ଏବଂ ଶ୍ରମିକ ଶ୍ରେଣୀ ସ୍ୱାର୍ଥ ପ୍ରତି ସେମାନଙ୍କର ବିଶ୍ୱାସଘାତକତା ପ୍ରକାଶିତ ହୋଇଥିଲା । ଆଉ ଏହା ପ୍ରକାଶ ପାଇଥିଲା ସେମାନଙ୍କର "ବିଶ୍ୱବିପ୍ଳବ" ଭାବଧାରାକୁ "ସୁରକ୍ଷା" କରିବାର ଛଳନାର ଆବରଣ ତଳେ ତଳେ ।

କିନ୍ତୁ ଏହି ପୁସ୍ତିକାର ବିଶଦ ଆଲୋଚନା ଏଠାରେ ସମ୍ଭବ ନୁହେଁ, ତାହା ଅନ୍ୟ ସମୟରେ କରାଯାଇପାରେ । ଏଠାରେ ଆମେ କେବଳ ଆଉ ଗୋଟିଏ ବିଷୟ ବିଚାର କରିବା: ବହୁଦିନ ତଳେ, ଯେତେବେଳେ କାଉଟ୍‌ସ୍କି ଜଣେ ମାର୍କ୍ସବାଦୀ ହୋଇ ରହିଥିଲେ ଓ "ରେନିଗେଡ୍" (ସ୍ୱଧର୍ମ ତ୍ୟାଗୀ ବ୍ୟକ୍ତି) ହୋଇନଥିଲେ, ସେତେବେଳେ ସେ ଏକ ଐତିହାସିକ ଦୃଷ୍ଟିକୋଣରୁ ଏହି ପ୍ରଶ୍ନକୁ ବିଚାର କରି ଆଗରୁ ଦେଖି ପାରିଥିଲେ ଯେ, ଏଭଳି ଏକ ପରିସ୍ଥିତିର ସମ୍ଭାବନା ଅଛି ଯେଉଁଥିରେ ରୁଷୀୟ ସର୍ବହରାର ବିପ୍ଳବୀ ଚେତନା ପଶ୍ଚିମ ୟୁରୋପ ପାଇଁ ଏକ ଆଦର୍ଶ ରୂପେ କାର୍ଯ୍ୟ କରିବ । ଏହା ଘଟିଥିଲା ୧୯୦୨ରେ ଯେତେବେଳେ କାଉଟ୍‌ସ୍କି ବୈପ୍ଳବିକ "ଇସ୍କ୍ରା" ପାଇଁ "ସ୍ଲାଭ ଓ ବିପ୍ଳବ" ଶିରୋନାମାରେ ଗୋଟିଏ ଲେଖା ଲେଖିଥିଲେ ସେଇ ଲେଖାରେ ସେ ଏକଥା ଲେଖିଥିଲେ :

"ବର୍ତ୍ତମାନ ସମୟରେ (୧୮୪୮ର ବିପ୍ଳବରେ) ଦେଖାଯିବ ଯେ, ଫ୍ରାନ୍ସ ଅନେକ ବିପ୍ଳବୀ ଜାତିମାନଙ୍କର ଶ୍ରେଣୀ ଭୁକ୍ତ କେବଳ ହୋଇ ନାହାନ୍ତି, ଏହି ଫ୍ରାନ୍ସ ଜାତି ଆଜିକୁ ବୈପ୍ଳବିକ ଚିନ୍ତା ଓ ବୈପ୍ଳବିକ କାର୍ଯ୍ୟର କେନ୍ଦ୍ର ମଧ୍ୟ କ୍ରମାଧିକ ଭାବେ ଘୁଞ୍ଚି ଆସୁଛି । ବୈପ୍ଳବିକ କେନ୍ଦ୍ର ପାଶ୍ଚାତ୍ୟରୁ ପ୍ରାଚ୍ୟକୁ ଘୁଞ୍ଚି ଘୁଞ୍ଚି ଆସୁଛି । ଉନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଏହା ଫ୍ରାନ୍ସରେ ଥିଲା । ବେଳେ ବେଳେ ଏହା ଇଂଲଣ୍ଡରେ ରହୁଥିଲା । ୧୮୪୮ରେ ଜର୍ମାନୀ ମଧ୍ୟ ବୈପ୍ଳବିକ ଜାତିମାନଙ୍କର ଶ୍ରେଣୀରେ ଯୋଗ ଦେଲା.........। ନୂତନ ଶତାବ୍ଦୀ ବର୍ତ୍ତମାନ ଏପରି ସବୁ ଘଟଣା ଦ୍ୱାରା ଉଦ୍‌ଘାଟିତ ହେଉଛି ଯେଉଁଥିରେ ଆମେ ଭାବିବା ପାଇଁ ବାଧ୍ୟ ହେଉଛୁ ଯେ ବୈପ୍ଳବିକ କେନ୍ଦ୍ର ଏଥର ଆହୁରି ପୂର୍ବକୁ ଘୁଞ୍ଚି ଯିବ, ରୁଷିଆ ଆଡ଼କୁ ଘୁଞ୍ଚିଯିବ,.........ଯେଉଁ ରୁଷିଆ ପାଶ୍ଚାତ୍ୟରୁ ଏତେବେଶି ବୈପ୍ଳବିକ ଉଦ୍ୟୋଗଶୀଳତା ଅର୍ଜନ କରିଛି, ବର୍ତ୍ତମାନ ବୋଧହୁଏ ସେହି ରୁଷିଆ ପାଶ୍ଚାତ୍ୟ ପାଇଁ ବୈପ୍ଳବିକ ଶକ୍ତିର ଉତ୍ସ ରୂପେ କାର୍ଯ୍ୟ କରିବାକୁ ପ୍ରସ୍ତୁତ । ଯେଉଁ ରୁଷୀୟ ବୈପ୍ଳବିକ ଆନ୍ଦୋଳନ ଏଇନେ ତେଜସ୍ୱୀନ ହୋଇ ଉଠୁଛି ତାହା ବୋଧହୁଏ ସ୍ଥୂଳ ନିର୍ବୋଧତାର ପ୍ରେତକୁ, ଶିଥିଳ ଓ ଶୀତଳ ରାଜନୀତିର ପ୍ରେତକୁ ଯାହାକି ଏଇନେ ଆମକୁ ତ୍ରାସ କରିବାକୁ ଆରମ୍ଭ କରିଛି ତାହାକୁ ଦୂରୀଭୂତ କରିବା ଦିଗରେ ଏକ ଶକ୍ତିଶାଳୀ ଆୟୁଧ ରୂପେ ଠିଆ ହୋଇ ଉଠିବ ଏବଂ ଆମ ଭିତରେ ପୁଣି ସଂଗ୍ରାମର ପିପାସାକୁ ଓ ଆମର ମହାନ ଆଦର୍ଶ ପ୍ରତି ଆମର ଗଭୀର ନିଷ୍ଠାକୁ ଆହୁରି ପ୍ରଜ୍ଜ୍ୱଳିତ କରିଦେବ । ରୁଷିଆ ଆଗେ ପଶ୍ଚିମ ୟୁରୋପରେ ପ୍ରତିକ୍ରିୟା ଓ ସ୍ୱୈରତନ୍ତ୍ରର କେବଳ ଏକ ଦୁର୍ଗ ହୋଇ ରହିଥିଲା । କିନ୍ତୁ ତାର ଏହି ଭୂମିକା ଅନେକ ଦିନୁ ଲୋପ ପାଇଗଲାଣି । ବର୍ତ୍ତମାନ ତାର ଠିକ ବିପରୀତ କଥା ହୋଇଛି ବୋଲି କୁହାଯାଇ ପାରେ । ବର୍ତ୍ତମାନ ରୁଷିଆରେ ପଶ୍ଚିମ ୟୁରୋପ ହିଁ ପ୍ରତିକ୍ରିୟା ଓ ସ୍ୱୈରତନ୍ତ୍ରର ଏକ ଦୁର୍ଗ ହୋଇ ଉଠୁଛି.........ରୁଷିଆର ବିପ୍ଳବୀମାନେ ବହୁଦିନୁ ବୋଧହୁଏ

କାର ପଦ୍ଧତ ପ୍ରଭାବ ନଜାଣ ଜଣ ସାରନ୍ତେଣି, ଯଦ ସେମାନେ ଏକ ଢଙ୍ଗରେ ତାର ମିତ୍ର, ୟୁରୋପୀୟ ପ୍ରତିକ୍ରିୟା ସହିତ ଲଢେଇ କରିବାକୁ ବାଧ୍ୟ ହୋଇ ନ ଥାନ୍ତେ । ଆମେ ଆଶା କରିବା ଯେ ସେମାନେ ହୁଏତ ଶୀଘ୍ର, ସହିତ ପାର ଉଠିବାରେ ଏଥର ସଫଳ ହେବେ, ଏବଂ ନୂତନ "ପଭଫ ମେଣ୍ଟ" ତାର ପୂର୍ବ ପୁରୁଷମାନଙ୍କ ଅପେକ୍ଷା ଏଥର ଅଧିକ ଦୃଢ ଗଢରେ ଭୂଷିତ ହେବ । କିନ୍ତୁ ରୁଷିଆର ଉପସ୍ଥିତ ସଂଗ୍ରାମର ପରିଣତି ଯାହା ହେଉନା କାହିଁକି ତାର ଯେଉଁ ଅରକ୍ଷିତ ଶହୀଦ ନିଜ ରକ୍ତ ଆଉ ଆନନ୍ଦମୟ ଜୀବନକୁ ଏହି ସଂଗ୍ରାମରେ ବଳି ଦେଇଛନ୍ତି ସେମାନଙ୍କର ସେହି ଆତ୍ମଦାନ କଦାପି ବ୍ୟର୍ଥ ହୋଇ ଯିବ ନାହିଁ । ସେମାନେ ସମସ୍ତ ସଭ୍ୟ ଜଗତରେ ସାମାଜିକ ବିପ୍ଳବର ଅଙ୍କୁରକୁ ପରିପୁଷ୍ଟ କରିବେ ଏବଂ ସେଗୁଡ଼ିକୁ ଅଧିକ ବିପୁଳ ହେବେ ଓ ଦ୍ରୁତ ଗତିରେ ବଢାଇ ନେବେ । ୧୮୪୮ରେ ସ୍ଲାଭମାନେ ଏକ କୃଷ୍ଣ ତୁଷାରପାତ ସଦୃଶ ଥିଲେ, ଯାହାକି ଜନତାର ବସନ୍ତ ପୁଷ୍ପକୁ ହତ୍ୟା କରୁଥିଲା । ସେମାନେ ବୋଧହୁଏ ଆଜି ଏକ ଝଞ୍ଜା ହେବାକୁ ବସିଛନ୍ତି ଯିଏ ପ୍ରତିକ୍ରିୟାର ବରଫକୁ ଭାଙ୍ଗିଦେବ ଓ ଅପ୍ରତିହତ ଭାବେ ତାହା ସହିତ ସବୁ, ଜାତି ପାଇଁ ଏକ ନୂତନ ଓ ଆନନ୍ଦମୟ ବସନ୍ତ ଆଣିଦେବ ।" (ରୁଷୀୟ-ସମାଜିକ-ଗଣତାନ୍ତ୍ରିକ) ବୈପ୍ଳବିକ ସମ୍ବାଦପତ୍ର ଇସ୍କ୍ରା—୧୮ ସଂଖ୍ୟା-ମାର୍ଚ୍ଚ ୧୦, ୧୯୦ 'ରେ "ସ୍ଲାଭ ଓ ବିପ୍ଳବ" ଶିରୋନାମାରେ ଲିଖିତ-କାର୍ଲ କାଉଟସ୍କି ।

[illegible] ବର୍ଷ ତଳେ କାର୍ଲ କାଉଟସ୍କି ଏକଥା କେଡ଼େ ସୁନ୍ଦର ଭାବେ ଲେଖିଥିଲେ !

[ ୨ୟ ପରିଚ୍ଛେଦ ]

# ବଲଶେଭିକମାନଙ୍କ ସଫଳତାର ଅନ୍ୟତମ ମୌଳିକ ସର୍ତ୍ତ

ସୁନିଶ୍ଚିତ ଭାବେ ଏଣୀଅଧିକେ ପ୍ରତ୍ୟେକେ ବର୍ତ୍ତମାନ ଉପଲବ୍ଧି କଲେଣି ଯେ ଯଦି ଆମ ପାର୍ଟିରେ କଠୋରତମ ପ୍ରକୃତ ଲୌହ ଶୃଙ୍ଖଳା ନଥାନ୍ତା ଓ ସମଗ୍ର ଶ୍ରମିକ ଶ୍ରେଣୀ ଯଦି ସଂପୂର୍ଣ୍ଣ ଓ ଅକୁଣ୍ଠିତ ସମର୍ଥନ ଦେଇ ନ ଥାନ୍ତା, ତେବେ ୨½ ବର୍ଷ କଥା ତ ଛାଡ଼, ୨½ ମାସ ବି ବଲଶେଭିକମାନେ ନିଜକୁ କ୍ଷମତାରେ ରକ୍ଷିପାର ନଥାନ୍ତେ। ଏଇ ଶ୍ରମିକ ଶ୍ରେଣୀ ହେଉଛନ୍ତି ତାଙ୍କର ସମସ୍ତ ଚିନ୍ତାଶୀଳ, ସଚ୍ଚୋଟ, ସ୍ୱାର୍ଥତ୍ୟାଗୀ, ତଥା ପ୍ରଭାବଶାଳୀ ଶକ୍ତି, ଯେଉଁମାନେ ନେତୃତ୍ୱ ଦେବାରେ ଓ ସେମାନଙ୍କ ସହିତ ଅନୁନ୍ନତ ଶ୍ରେଣୀକୁ ସାଙ୍ଗରେ ଆଗେଇ ନେବାରେ ସକ୍ଷମ।

ସର୍ବହରାର ଅଧିନାୟକତ୍ୱ ହେଉଛି ନୂତନ ଶ୍ରେଣୀ ଦ୍ୱାରା ଅଧିକ ଶକ୍ତିଶାଳୀ ଶତ୍ରୁ ବୁର୍ଜୁଆ ଶ୍ରେଣୀ ବିରୁଦ୍ଧରେ ସର୍ବାଧିକ ଦୃଢ଼ସଂକଳ୍ପ ଓ ନିର୍ମମ ସଂଗ୍ରାମ। ବୁର୍ଜୁଆ ଶ୍ରେଣୀ (ଗୋଟିଏ ଦେଶରେ ହେଲେ ବି) କ୍ଷମତାଚ୍ୟୁତ ହେବା ଫଳରେ ତାର ପ୍ରତିରୋଧ ୧୦ ଗୁଣ ବଢ଼ିଯାଏ, ଏବଂ ତାର ଶକ୍ତି କେବଳ ଆନ୍ତର୍ଜାତିକ ପୁଞ୍ଜିର ଶକ୍ତିରେ ନିହିତ ନୁହେଁ, ବୁର୍ଜୁଆ ଶ୍ରେଣୀର ଆନ୍ତର୍ଜାତିକ ସଂପର୍କର ଶକ୍ତିରେ ଓ ସ୍ଥାୟିତ୍ୱରେ ନିହିତ ନୁହେଁ, ତାହା ଅଭ୍ୟାସର ଶକ୍ତି ବଳରେ, କ୍ଷୁଦ୍ର ଉତ୍ପାଦନ ଶକ୍ତିରେ ମଧ୍ୟ ନିହିତ। କାରଣ, ଦୁର୍ଭାଗ୍ୟବଶତଃ, କ୍ଷୁଦ୍ର ଉତ୍ପାଦନ ତଥାପି ବିଶ୍ୱରେ ବେଶି ମାତ୍ରାରେ ବିସ୍ତାରିତ ହୋଇ

ରହୁଛି, ଏବଂ କ୍ଷୁଦ୍ର ଉତ୍ପାଦନ କ୍ରମାଗତ ଭାବେ, ପ୍ରତିଦିନ, ପ୍ରତି ଘଣ୍ଟାରେ, ସ୍ୱତଃସ୍ଫୂର୍ତ୍ତ ଭାବେ ଓ ବ୍ୟାପକ ଭାବେ ପୁଞ୍ଜିବାଦକୁ ଓ ବୁର୍ଜୁଆ ଶ୍ରେଣୀକୁ ସୃଷ୍ଟି କରାଇବାରେ ସାହାଯ୍ୟ କରୁଛି । ଏହି ସବୁ କାରଣ ହେତୁ ସର୍ବହରାର ଅଧିନାୟକତ୍ୱ ଅତ୍ୟାବଶ୍ୟକୀୟ ଏବଂ ଏକ ଦୀର୍ଘ, ଜୀବନ ଓ ମରଣର ଦ୍ୱନ୍ଦ୍ୱ ଓ ଉନ୍ମତ୍ତ ଯୁଦ୍ଧ ବିନା; ଅଧ୍ୟବସାୟ, ଶୃଙ୍ଖଳା, ଦୃଢ଼ତା, ଅନମନୀୟତା ତଥା ଐକ୍ୟବଦ୍ଧ ସଂକଳ୍ପ ବିନା ବୁର୍ଜୁଆଶ୍ରେଣୀକୁ ପରାସ୍ତ କରିବା ଅସମ୍ଭବ ।

ମୁଁ ପୁନର୍ବାର କହୁଛି ଯେ, ରୁଷିଆରେ ସର୍ବହରାର ଅଧିନାୟକତ୍ୱର ବିଜୟର ଅଭିଜ୍ଞତା ସ୍ପଷ୍ଟଭାବେ, ଯେଉଁମାନେ ଏହି ପ୍ରଶ୍ନ ଉପରେ ଚିନ୍ତାକରିବାକୁ ଅକ୍ଷମ ବା ଯେଉଁମାନେ ଏହି ପ୍ରଶ୍ନକୁ ବିଚାର କରିବାକୁ ସୁଯୋଗ ପାଇ ନାହାନ୍ତି, ସେହିମାନଙ୍କୁ ମଧ୍ୟ ଦେଖେଇ ଦିଏ ଯେ ସର୍ବହରାର ସମ୍ପୂର୍ଣ୍ଣ କେନ୍ଦ୍ରୀକରଣ ଓ କଠୋରତମ ଶୃଙ୍ଖଳା ହେଉଛି ବୁର୍ଜୁଆଶ୍ରେଣୀ ଉପରେ ବିଜୟ ହାସଲ କରିବା ପାଇଁ ଏକ ମୌଳିକ ସର୍ତ୍ତ ।

ଏହା ବାରମ୍ବାର ଉଲ୍ଲେଖିତ ହେଉଛି ସତ । କିନ୍ତୁ ଏହାର ଅର୍ଥ କଣ ଏବଂ କି ଅବସ୍ଥାରେ ଏହା ସମ୍ଭବ ତାହା ଉପରେ ଯଥେଷ୍ଟ ଚିନ୍ତା କରାଯାଉ ନାହିଁ । ଏହା କଣ ଭଲ ହେବ ନାହିଁ ଯଦି ଯେତେ ଗୁଡ଼ିଏ ଅଭିବାଦନ ସୋଭିଏତ୍ ଶକ୍ତି ଓ ବଲଶେଭିକମାନଙ୍କ ସମ୍ମାନରେ ଆସୁଛି ସେଗୁଡ଼ିକ ବାରମ୍ବାର ପ୍ରଗାଢ଼ ବିଶ୍ଳେଷଣ କରାଯିବ ଯେ କେଉଁ କେଉଁ କାରଣରୁ ବଲଶେଭିକମାନେ ସୃଷ୍ଟ ଥିବା ବୈପ୍ଳବିକ ସର୍ବହରାର ଶୃଙ୍ଖଳା ଗଢ଼ିବା ସମ୍ଭବ ହୋଇପାରିଲା ?

ରାଜନୈତିକ ଚିନ୍ତାଧାରା ରୂପେ ଓ ରାଜନୈତିକ ପାର୍ଟି ରୂପେ ବଲଶେଭିକବାଦ ୧୯୦୩ରୁ ରହି ଆସିଛି, ଏହାର ଅସ୍ତିତ୍ୱର ସମଗ୍ର ଯୁଗର ଇତିହାସ ହିଁ ସନ୍ତୋଷଜନକଭାବେ ବୁଝାଇ ଦେଇପାରିବ । ସର୍ବହରାର ବିଜୟ ପାଇଁ ଆବଶ୍ୟକ ଲୌହ ଶୃଙ୍ଖଳାକୁ ସବୁଠାରୁ କଠିନ ଅବସ୍ଥା ଭିତରେ ଗଢ଼ି ତୋଳିବାକୁ ଓ ବଜାୟ ରଖିବାକୁ ଏହା କାହିଁକି ସମର୍ଥ ହେଲା

ଏ ପ୍ରସଙ୍ଗରେ ସର୍ବ ପ୍ରଥମେ ପ୍ରଶ୍ନ ଉଠେ ; ସର୍ବହରାର ବୈପ୍ଳବିକ ପାର୍ଟିର ଶୃଙ୍ଖଳାକୁ କିପରି ରକ୍ଷା କରାଯାଏ ? ପୁଣି ଏହା କିପରି ପରୀକ୍ଷିତ ହୁଏ ? ଆଉ ଏହା କିପରି ପୁଣି ଶକ୍ତିଶାଳୀ ହୁଏ ? ପ୍ରଥମତଃ, ସର୍ବହରାର ଅଗ୍ରମୁବାହିନୀର ଶ୍ରେଣୀ-ଚେତନା ଦ୍ୱାରା ଏବଂ ବିପ୍ଳବ ପ୍ରତି ଏହାର ଗଭୀର ନିଷ୍ଠା ଦ୍ୱାରା, ଏହାର ଅଧ୍ୟବସାୟ, ଆତ୍ମତ୍ୟାଗ ଓ ବୀରତ୍ୱ ଦ୍ୱାରା, ଦ୍ୱିତୀୟତଃ, ବ୍ୟାପକ ଶ୍ରମଜୀବୀ ଜନତା ସହିତ—ମୁଖ୍ୟତଃ ସର୍ବହରା ଶ୍ରେଣୀ ସହିତ ଆଉ ଅଣସର୍ବହରା ଶ୍ରମଜୀବୀ ଜନସାଧାରଣଙ୍କ ସହିତ ମୁଖ୍ୟତଃ ନିଜକୁ ସଂଶ୍ଳିଷ୍ଟ କରି ପାରିବାର, ସେମାନଙ୍କ ସହିତ ଘନିଷ୍ଠ ହୋଇ ପାରିବାର ଏବଂ କେତେକ ପରିମାଣରେ ସେମାନଙ୍କ ସହିତ ମିଶିଯାଇ ପାରିବାର ସାମର୍ଥ୍ୟ ଦ୍ୱାରା । ତୃତୀୟତଃ, ଏହି ଅଗ୍ରମୁ-ବାହିନୀ କର୍ତ୍ତୃକ ନିଜର ନିର୍ଭୁଲ ରାଜନୈତିକ ନେତୃତ୍ୱକୁ ବଜାୟ ରଖିବା ଦ୍ୱାରା, ଏହାର ରାଜନୈତିକ ରଣନୀତି ଓ ରଣ କୌଶଳର ନିର୍ଭୁଲତା ଦ୍ୱାରା । କିନ୍ତୁ ଜନସାଧାରଣଙ୍କ ବ୍ୟାପକତମ ଅଂଶ ସେମାନଙ୍କ ନିଜର ଅଭିଜ୍ଞତା ଦ୍ୱାରା ଏହାକୁ ନିର୍ଭୁଲ ବୋଲି ହୃଦୟଙ୍ଗମ କରିଥିବା ଦରକାର । ଏହି ସବୁ ସର୍ତ୍ତ ବିନା ଏକ ବୈପ୍ଳବିକ ପାର୍ଟି, ଯେ କି ପ୍ରକୃତରେ ସବୁଠାରୁ ଅଗ୍ରଗାମୀ ଶ୍ରେଣୀର ପାର୍ଟି ହେବାକୁ ସକ୍ଷମ, ଯାହାର ଜୀବନର ଲକ୍ଷ୍ୟ ହେଉଛି ବୁର୍ଜୁଆ ଶ୍ରେଣୀକୁ କ୍ଷମତାଚ୍ୟୁତ କରିବା ଓ ସମଗ୍ର ସମାଜକୁ ରୂପାନ୍ତରିତ କରିବା, ସେଇ ବୈପ୍ଳବିକ ପାର୍ଟିରେ ଶୃଙ୍ଖଳା ପ୍ରତିଷ୍ଠା କରିହେବ ନାହିଁ । ଏହି ସବୁ ସର୍ତ୍ତ ବିନା, ଶୃଙ୍ଖଳା ପ୍ରତିଷ୍ଠା କରିବାର ସମସ୍ତ ଉଦ୍ୟମ ଅନିବାର୍ଯ୍ୟ ଭାବେ ବ୍ୟର୍ଥ ହେବ ଓ ତା ଫଳରେ ବାକ୍-ଚାତୁରୀ ଓ ମୁଖ ବିକୃତି ହିଁ ସାର ହେବ । ଅନ୍ୟ ପକ୍ଷରେ, ଏପରି ଅବସ୍ଥା ହଠାତ୍ ସୃଷ୍ଟି ହୋଇପାରିବ ନାହିଁ । ଏପରି ପରିବେଶ କେବଳ ଅନବରତ ଉଦ୍ୟମ ଓ କଷ୍ଟ-ଉପାର୍ଜିତ ଅଭିଜ୍ଞତା ଦ୍ୱାରା ସୃଷ୍ଟ ହୁଏ । ସଠିକ ବୈପ୍ଳବିକ ତତ୍ତ୍ୱ ଦ୍ୱାରା ସେମାନଙ୍କର ସୃଷ୍ଟି ସୁଗମ ହୁଏ । ଆଉ ଏହି ତତ୍ତ୍ୱ ଏକ ଅନ୍ଧମତବାଦ ନୁହେଁ । ପ୍ରକୃତ ଗଣ ଆନ୍ଦୋଳନ ଓ ପ୍ରକୃତ

ବୈପ୍ଳବିକ ଆନ୍ଦୋଳନର ବାସ୍ତବ କର୍ମତତ୍ପରତା ସହିତ ନିଗୂଢ଼ ସମ୍ପର୍କ ମାଧ୍ୟମରେ କେବଳ ଏହି ତତ୍ତ୍ୱ ତାର ଚୂଡ଼ାନ୍ତରୂପ ଗ୍ରହଣ କରେ ।

୧୯୧୭—୨୦ ରେ, ଅଭୂତପୂର୍ବ କଷ୍ଟଦାୟକ ଅବସ୍ଥା ଭିତରେ ବଲଶେଭିକବାଦ ଯେ ତାର କଠୋରତମ କେନ୍ଦ୍ରୀକରଣତା ଓ ଲୌହ ଶୃଙ୍ଖଳା ଗଢ଼ିବାକୁ ଓ ତାହାକୁ ଜାହିର ରଖିବାକୁ ସମର୍ଥ ହୋଇଥିଲା ତାହା କେବଳ ରୁଷିଆର କେତେଗୁଡ଼ିଏ ଐତିହାସିକ ବୈଶିଷ୍ଟ୍ୟ ହେତୁ ।

ଏକ ପକ୍ଷରେ, ବଲଶେଭିକବାଦ ୧୯୦୩ରେ ଗଢ଼ି ଉଠିଥିଲା କେବଳ ମାର୍କସ୍‌ବାଦୀ ତତ୍ତ୍ୱର ଦୃଢ଼ ଭିତ୍ତି ଉପରେ । ଆଉ ଏହି ତତ୍ତ୍ୱ ହିଁ କେବଳ ଏହି ବୈପ୍ଳବିକ ତତ୍ତ୍ୱର ନିର୍ଭୁଲତା ଉନବିଂଶ ଶତାବ୍ଦ ତମାମ ସବୁ ଦେଶର ଅଭିଜ୍ଞତା ଦ୍ୱାରା କେବଳ ପ୍ରମାଣିତ ହୋଇ ନ ଥିଲା, କିନ୍ତୁ ବିଶେଷ କରି ରୁଷିଆରେ ବୈପ୍ଳବିକ ଚିନ୍ତାର ଭ୍ରାନ୍ତି ଓ ଦୋଦୁଲ୍ୟମାନତା, ଭୁଲ ଓ ହତାଶର ଅଭିଜ୍ଞତା ଦ୍ୱାରା ମଧ୍ୟ ପ୍ରମାଣିତ ହୋଇଥିଲା । ପ୍ରାୟ ଅର୍ଦ୍ଧ ଶତାବ୍ଦୀ ଧରି ମୋଟାମୋଟି ଭାବେ ୪ର୍ଥ ଦଶକରୁ ୯ମ ଦଶକ ମଧ୍ୟରେ—ରୁଷିଆରେ ଅଗ୍ରଗାମୀ ଚିନ୍ତାଶୀଳ ବ୍ୟକ୍ତିମାନେ ନାହିଁ ନଥିବା ବର୍ବର ଓ ପ୍ରତିକ୍ରିୟାଶୀଳ ଜାର ଶାସନ ଦ୍ୱାରା ଅତ୍ୟାଚାରିତ ହୋଇ ଏକ ସଠିକ ବୈପ୍ଳବିକ ତତ୍ତ୍ୱ ପାଇଁ ଆକୁଳଭାବେ ଖୋଜି ବୁଲୁଥିଲେ । ଆଉ ସେମାନେ ୟୁରୋପ ଓ ଆମେରିକାରେ ଏହି କ୍ଷେତ୍ରରେ ପ୍ରତ୍ୟେକଟି "ଶେଷ ବାଣୀ" କୁ ଆଶ୍ଚର୍ଯ୍ୟଜନକ ଶ୍ରମ ଓ ଅଧ୍ୟବସାୟ ସହିତ ଅନୁସରଣ କରୁଥିଲେ । ବାସ୍ତବ ଦୁଃଖ କଷ୍ଟ ମଧ୍ୟରେ, ଅର୍ଦ୍ଧଶତାବ୍ଦୀ ଧରି ଅଭୂତପୂର୍ବ ଯାତନା ଓ ଆତ୍ମବଳିଦାନ ଭିତରେ, ଅଭୂତପୂର୍ବ ବୈପ୍ଳବିକ ବୀରତ୍ୱ, ବିସ୍ମୟକର ଶକ୍ତି, ନିଷ୍ଠାପର ଅନୁସନ୍ଧାନ, ଅଧ୍ୟୟନ, ବାସ୍ତବ ପରୀକ୍ଷା, ନିରାଶା, ୟୁରୋପୀୟ ଅଭିଜ୍ଞତା ସହ ନିଜ ଅଭିଜ୍ଞତାର ତୁଳନା ଓ ସତ୍ୟାସତ୍ୟ ବିଚାର କରିଆରେ ହିଁ ରୁଷିଆ ଏକମାତ୍ର ସଠିକ ବୈପ୍ଳବିକ ତତ୍ତ୍ୱ, ମାର୍କସ୍‌ବାଦକୁ ଲାଭ କଲା, ଜାର ଶାସନ ଦ୍ୱାରା ନିପୀଡ଼ିତ ହୋଇ ବହୁ ଲୋକ

ଦେଶତ୍ୟାଗୀ ହେବାକୁ ବାଧ୍ୟ ହେବା ଫଳରେ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ବୈପ୍ଳବିକ ରୁଷିଆ ଆନ୍ତର୍ଜାତିକ ସମ୍ପର୍କରେ ଏଭଳି ସମ୍ପଦ ଏବଂ ବୈପ୍ଳବିକ ଆନ୍ଦୋଳନର ବିଶ୍ୱରୂପ ଓ ବିଶ୍ୱ ତତ୍ତ୍ୱ ସମ୍ପର୍କରେ ଏଭଳି ମୂଲ୍ୟବାନ ତଥ୍ୟ ଅର୍ଜନ କରି ପାରିଲା, ଯାହା ପୃଥିବୀରେ ଅନ୍ୟ କୌଣସି ଦେଶ ପାରିଲେ ନାହିଁ ।

ଅନ୍ୟ ପକ୍ଷରେ, ଏଇ ଇସ୍ପାତ ତାତ୍ତ୍ୱିକ ଭିତ୍ତି ଉପରେ ଠିଆ ହୋଇ, ବଲଶେଭିକବାଦ ବାସ୍ତବ ଇତିହାସର ୧୫ ବର୍ଷ ( ୧୯୦୩—୧୭ ) ଅତିକ୍ରମ କଲା, ଯାହାର ଅଭିଜ୍ଞତା ସମ୍ପଦ ପୃଥିବୀରେ ବିରଳ । କାରଣ ଏଇ ୧୫ ବର୍ଷ ଭିତରେ ଅନ୍ୟ କୌଣସି ଦେଶ ଏହି ବୈପ୍ଳବିକ ଅଭିଜ୍ଞତାର, ଆନ୍ଦୋଳନର ବିଭିନ୍ନ ଆଧାର ଏହି ଦ୍ରୁତ ଓ ବିବିଧ ରୂପର ପାଖ ବି ମାଡ଼ି ନ ଥିଲେ । ଯଥା ବୈଧ ଓ ଅବୈଧ, ଶାନ୍ତିପୂର୍ଣ୍ଣ ଓ ହିଂସାପୂର୍ଣ୍ଣ, ଗୋପନ ବା ପ୍ରକାଶ୍ୟ, ଗୋପନ ପାଠଚକ୍ର ଓ ଗଣଆନ୍ଦୋଳନ, ବୈଧାନିକ ପନ୍ଥା ଓ ସନ୍ତ୍ରାସବାଦ । ଅନ୍ୟ କୌଣସି ଦେଶରେ ଏତେ କମ ସମୟ ମଧ୍ୟରେ ଆଧୁନିକ ସମାଜର ସମସ୍ତ ଶ୍ରେଣୀର ସଂଗ୍ରାମର ରୂପ, ତରିକା ଓ ପଦ୍ଧତିର ଏଭଳି ସଫଳ କେନ୍ଦ୍ରୀଭୂତ ହୋଇ ନ ଥିଲା । ତା ଛଡ଼ା, ଦେଶର ପଶ୍ଚାତପଦତା ଓ ଜାରଶାହୀ ଶୃଙ୍ଖଳର ତୀବ୍ରତା ହେତୁ ଏହିଭଳି ଏକ ସଂଗ୍ରାମ ଅନ୍ୟାନ୍ୟ ସାଧାରଣ କ୍ଷିପ୍ରତାସହ ଗଢ଼ି ଉଠିଲା ଏବଂ ସେହି ସଂଗ୍ରାମ ଅତି ଆନ୍ତରିକରେ ଓ ଫଳପ୍ରଦ ଭାବେ ଆମେରିକା ଓ ୟୁରୋପର ରାଜନୈତିକ ଅଭିଜ୍ଞତାର ପ୍ରକୃଷ୍ଟ "ଶେଷବାଣୀ"କୁ ଗ୍ରହଣ କରିନେଲା ।

[ ୨ୟ ପରିଚ୍ଛେଦ ]

# ବଲଶେଭିକବାଦର ଇତିହାସରେ ପ୍ରଧାନ ପର୍ଯ୍ୟାୟଗୁଡ଼ିକ

ବିପ୍ଳବର ଆୟୋଜନ ପର୍ବ (୧୯୦୩–୦୫)—ଆସନ୍ନ ଏକ ବିରାଟ ଝଡ଼ର ସୂଚନା ସର୍ବତ୍ର ଅନୁଭୂତ ହୁଏ । ସବୁ ଶ୍ରେଣୀର ଲୋକେ ଏକ ଆଲୋଡ଼ନ ଓ ପ୍ରସ୍ତୁତ ଅବସ୍ଥାରେ ଥାଆନ୍ତି । ଦେଶ ବାହାରେ, ରାଜନୈତିକ ନିର୍ବାସିତଙ୍କ ସଂବାଦପତ୍ର ବିପ୍ଳବର ସମସ୍ତ ମୌଳିକ ସମସ୍ୟାର ତାତ୍ତ୍ୱିକ ଦିଗ ଗୁଡ଼ିକ ଉପରେ ଆଲୋଚନା ଚଳାଇଥାନ୍ତି । ତିନୋଟି ମୁଖ୍ୟ ଶ୍ରେଣୀର, ତିନୋଟି ପ୍ରଧାନ ରାଜନୈତିକ ଚିନ୍ତାଧାରାର ଯଥା ଉଦାରପନ୍ଥୀ ବୁର୍ଜୁଆ, ପେଟି ବୁର୍ଜୁଆ ଗଣତାନ୍ତ୍ରିକ ("ସୋସିଆଲ ଡେମୋକ୍ରାଟିକ" ଓ ସୋସିଆଲରିଭଲ୍ୟୁସନାରି" ମାର୍କାତଳେ ଲୁକ୍କାୟିତ) ଓ ସର୍ବହରା-ବିପ୍ଳବୀ ଚିନ୍ତାଧାରାର ପ୍ରତିନିଧିମାନେ କାର୍ଯ୍ୟକ୍ରମଗତ ଓ କୌଶଳଗତ ପ୍ରଶ୍ନ ନେଇ ଏକ ତୀବ୍ର ଲଢ଼େଇ ଜରିଆରେ ଆସନ୍ନ ପ୍ରକାଶ୍ୟ ଶ୍ରେଣୀ ସଂଗ୍ରାମ ବିଷୟ ଆଲୋଚନା ଓ ପ୍ରସ୍ତୁତିରେ ଲାଗିଥାଆନ୍ତି । ଏଇ ଯେଉଁ ସବୁ ସମସ୍ୟା ଉପରେ ଜନସାଧାରଣ ଏକ ସଶସ୍ତ୍ର ସଂଗ୍ରାମ ୧୯୦୫–୦୭ ଓ ୧୯୧୭–୨୦ରେ ଚଳାଇଲେ ତତ୍କାଳୀନ ସମ୍ବାଦପତ୍ରରେ ସେଗୁଡ଼ିକର ଭ୍ରୂଣରୂପ ପଢ଼ାଯାଇ ପାରେ (ଓ ପଢ଼ିବା ଉଚିତ) । ଏଇ ତିନୋଟି ମୁଖ୍ୟଧାରା ମଧ୍ୟରେ, ଅବଶ୍ୟ ବହୁତ ଗୁଡ଼ାଏ ଅନ୍ତର୍ବର୍ତ୍ତୀକାଳୀନ, ଯୁଗାନ୍ତରକାଳୀନ ଓ ଅନିର୍ଦ୍ଦିଷ୍ଟ ରୂପ ରହିଥିଲା । ବରଂ, ଅଧିକ ଠିକ ହେବ କହିଲେ, ସମ୍ବାଦପତ୍ର, ଦଳ, ଉପଦଳ ଓ ଗୋଷ୍ଠୀମାନଙ୍କର ସଂଗ୍ରାମରେ

ଯେଉଁ ଗୁଡ଼ିକ ପ୍ରକୃତରେ ଶ୍ରେଣୀଗତ ଧାରା ସେଇ ରାଜନୈତିକ ଓ ଆଦର୍ଶଗତ ଧାରା ଗୁଡ଼ିକ ଜମାଟ ବାନ୍ଧୁଥିଲା ; ଆସନ୍ନ ସଂଗ୍ରାମ ପାଇଁ ସବୁ ଶ୍ରେଣୀ ଆବଶ୍ୟକୀୟ ରାଜନୈତିକ ଓ ଆଦର୍ଶଗତ ଅସ୍ତ୍ରରେ ସଜ୍ଜିତ ହେଉଥିଲେ ।

ବିପ୍ଲବର କାଳ ( ୧୯୦୫-୦୭ )—ସବୁ ଶ୍ରେଣୀ ଖୋଲା-ଖୋଲି ପଦାକୁ ବାହାରି ପଡ଼ିଲେ । କାର୍ଯ୍ୟକ୍ରମ ଓ କୌଶଳ ସମ୍ପର୍କୀୟ ସକଳ ମତ ଜନସାଧାରଣଙ୍କ ସଂଗ୍ରାମ ଭିତରେ ପରୀକ୍ଷିତ ହେଲା । ବ୍ୟାପକତା ଓ ତୀବ୍ରତା ଦୃଷ୍ଟିରୁ ବିଶ୍ୱରେ ଅଦ୍ୱିତୀୟ ଏକ ବିରାଟ ଧର୍ମଘଟ ସଂଗ୍ରାମ ଆରମ୍ଭ ହୋଇଗଲା । ଅର୍ଥନୈତିକ ଧର୍ମଘଟ ରାଜନୈତିକ ଧର୍ମଘଟରେ ପ୍ରରକୁ ଉଠିଗଲା ଏବଂ ରାଜନୈତିକ ଧର୍ମଘଟ ସଶସ୍ତ୍ର ବିଦ୍ରୋହରେ ପରିଣତ ହେଲା । ନେତା ହିସାବରେ ସର୍ବହରା ଓ ଅନୁଗାମୀ ହିସାବରେ ଦୋଦୁଲ୍ୟମାନ, ଅସ୍ଥିର କୃଷୀକୂଳ ଏହି ଉଭୟଙ୍କର ପାରସ୍ପରିକ ସମ୍ପର୍କ ସଂଗ୍ରାମ ଭିତରେ ପରୀକ୍ଷିତ ହୋଇଗଲା । ତା ପରେ ସଂଗ୍ରାମର ସ୍ୱତଃସ୍ଫୂର୍ତ୍ତ ବିକାଶ ଭିତର ଦେଇ ସଂଗଠନର ସୋଭିଏଟ୍ ରୂପ ଜନ୍ମଲାଭ କଲା । ସୋଭିଏଟ୍‌ର ତାତ୍ପର୍ଯ୍ୟ ଉପରେ ସେଇ ସମୟର ବାଦାନୁବାଦ ୧୯୧୭-୨୦ର ବିରାଟ ସଂଗ୍ରାମର ପୂର୍ବାଭାସ । ପର୍ଯ୍ୟାୟକ୍ରମେ ପାର୍ଲାମେଣ୍ଟାରୀ ଓ ଅଣପାର୍ଲା-ମେଣ୍ଟାରୀ ସଂଗ୍ରାମର ରୂପ, ପାର୍ଲାମେଣ୍ଟକୁ ବର୍ଜନ କରିବାର କୌଶଳ ଓ ପାର୍ଲାମେଣ୍ଟରେ ଭାଗନେବାର କୌଶଳ, ସଂଗ୍ରାମର ବୈଧାନିକ ଓ ଅବୈଧାନିକ ପଦ୍ଧତି ଏବଂ ସେଇ ପ୍ରକାର ସେମାନଙ୍କ ଆନ୍ତଃସମ୍ପର୍କ ଓ ସଂଯୋଗ - ଏଇ ସବୁ ବିଷୟ ସ୍ୱତନ୍ତ୍ରଭାବେ ପରିସ୍ଫୁଟ ହୋଇ ଉଠିଲା ବିଷୟ ବସ୍ତୁର ଆଶ୍ଚର୍ଯ୍ୟଜନକ ସମୃଦ୍ଧି ଭିତରେ । ଜନଗଣ ଓ ନେତାମାନଙ୍କୁ, ଶ୍ରେଣୀ ଓ ଦଳମାନଙ୍କୁ— ରାଷ୍ଟ୍ର ବିଜ୍ଞାନର ମୂଳନୀତି ଶିକ୍ଷାଦେବା ଦୃଷ୍ଟିରୁ ବିଚାର କଲେ, ଏଇ ସମୟର ଏକମାସ ହେଉଛି "ଶାନ୍ତିପୂର୍ଣ୍ଣ" "କନ୍‌ସ୍ଟିଟ୍ୟୁସନାଲିଜମ୍" ବିକାଶର ଗୋଟିଏ ସମଗ୍ର ବର୍ଷ ସହିତ ସମାନ । ୧୯୦୫ର ଶେଷ "ପୂର୍ବାଭିନୟ" ବିନା, ୧୯୧୭ରେ ଅକ୍ଟୋବର ବିପ୍ଲବର ବିଜୟ ଅସମ୍ଭବ ହୋଇଥାନ୍ତା !

ପ୍ରତିକ୍ରିୟାର ଯୁଗ ( ୧୯୦୭–୧୦ )—ଜାରସାହିର ବିଜୟ ହେଲା । ସମସ୍ତ ବିପ୍ଳବୀ ଓ ବିରୋଧୀ ଦଳ ପରାଜିତ । କ୍ରାନ୍ତି ବଦଳରେ ଅବସାଦ, ହତୋତ୍ସାହ, ଦଳଭଙ୍ଗ, ଅନ୍ତଃବିରୋଧ, ଦଳତ୍ୟାଗ, ଅଶ୍ଳୀଳ ଚର୍ଚ୍ଚା ଦେଖାଗଲା । ଦାର୍ଶନିକ ଭାବବାଦ ଅତଏବ ଅଧିକରୁ ଅଧିକ ସ୍ଥଳନ ଦେଖାଦେଲା; ଅଟଳ ସ୍ୱବାଦ ପ୍ରତିବିପ୍ଳବୀ ମନୋଭାବର ଆବରଣ ହୋଇ ଛିଡ଼ାହେଲା । କିନ୍ତୁ ତ ସାଙ୍ଗେ ସାଙ୍ଗେ ଏହି ବିରାଟ ପରାଜୟ ବିପ୍ଳବୀ ପାର୍ଟି ଓ ବିପ୍ଳବୀ ଶ୍ରେଣୀମାନଙ୍କୁ ଏକ ପ୍ରକୃତ ଓ ଅତି ମୂଲ୍ୟବାନ ଶିକ୍ଷା ମଧ୍ୟ ଦେଲା । ଐତିହାସିକ ଦ୍ୱନ୍ଦ୍ୱରେ ଶିକ୍ଷା ହେଲା, ରାଜନୈତିକ ସଂଗ୍ରାମକୁ ବୁଝିବାରେ ଓ ତାକୁ ପରିଚାଳନା କରିବାର ଦକ୍ଷତା ଓ କୌଶଳ ଅର୍ଜନ କରିବାରେ ଶିକ୍ଷା ଦେଲା । ଦୁର୍ଦ୍ଦିନରେ ଜଣେ ତାର ପ୍ରକୃତ ବନ୍ଧୁକୁ ଚିହ୍ନି ପାରେ । ପରାଜିତ ସୈନ୍ୟବାହିନୀ ସୁଶିକ୍ଷା ଲାଭ କରେ ।

ବିଜୟୀ ଜାରତନ୍ତ୍ର ବୃଦ୍ଧିସ୍ୱାର୍ଥେ ପ୍ରାକ-ବୁର୍ଜୁଆ, ପିତୃ ପ୍ରଧାନ ଜୀବନ-ଯାତ୍ରାର ଅବଶେଷକୁ ଧ୍ୱଂସର ପଥରେ ଆଗେଇ ନେବାକୁ ବାଧ୍ୟ ହେଲା । ବୁର୍ଜୁଆ ରାସ୍ତାରେ ଦେଶର ବିକାଶ ଉଲ୍ଲେଖ ଯୋଗ୍ୟ ଦ୍ରୁତ ଗତିରେ ଆଗେଇ ଚାଲିଲା । ଶ୍ରେଣୀ ବହିର୍ଭୂକ୍ତ ଓ ଶ୍ରେଣୀ ଊର୍ଦ୍ଧ୍ୱ ମୋହ, ପୁଞ୍ଜିବାଦକୁ ଏଡ଼େଇ ଯିବାର ସମ୍ଭାବନା ସମ୍ପର୍କୀୟ ମୋହ ସବୁ ଶୂନ୍ୟରେ ମିଳେଇ ଗଲା । ଶ୍ରେଣୀ ସଂଗ୍ରାମ ପୁରାପୁରି ଏକ ନୂତନ ଓ ସ୍ପଷ୍ଟତର ରୂପରେ ପ୍ରକାଶ ପାଇଲା ।

ବିପ୍ଳବୀ ଦଳମାନଙ୍କୁ ସେମାନଙ୍କର ଶିକ୍ଷା ସମ୍ପୂର୍ଣ୍ଣ କରିବାକୁ ହେବ ସେମାନେ ଆକ୍ରମଣ କରିବାକୁ ଶିକ୍ଷା କରି ସାରିଲେଣି । ବର୍ତ୍ତମାନ ସେମାନଙ୍କୁ ବୁଝିବାକୁ ହେବ ଯେ ଏହି ଜ୍ଞାନର ପରିପୂରକ ଭାବେ ପଛଘୁଞ୍ଚା କିପରି ଦେବାକୁ ହୁଏ ତାହା ମଧ୍ୟ ଶିକ୍ଷା କରିବା ଦରକାର । ସେମାନଙ୍କୁ ବୁଝିବାକୁ ହେବ ଯେ କିପରି ଭାବରେ ଆକ୍ରମଣ କରିବାକୁ ହେବ ଓ କିପରି ସୁସଂଗତ ଭାବେ ପଛଘୁଞ୍ଚା ଦେବାକୁ ହେବ— ଏ ଉଭୟ ବିଦ୍ୟା ଆୟତ୍ତାଧୀନ ନ ହେଲେ ଜୟଲାଭ ଅସମ୍ଭବ –ଏବଂ

ବିପ୍ଳବୀ ଶ୍ରେଣୀକୁ ଏ କଥା ଶିଖିବାକୁ ହୁଏ ନିଜର ଉକ୍ତ ଅଭିଜ୍ଞତା ଭିତର ଦେଇ । ପରାଜିତ ସମସ୍ତ ବିରୋଧୀ ଓ ବିପ୍ଳବୀ ପାର୍ଟିମାନଙ୍କ ମଧ୍ୟରେ ବଲ୍‌ଶେଭିକ୍‌ମାନେ ହିଁ ସର୍ବାଧିକ ସୁଶୃଙ୍ଖଳିତ ଭାବେ ପଛ ଘୁଞ୍ଚା ଦେଇ ପାରିଥିଲେ—ନିଜ "ସୈନ୍ୟବାହିନୀ"ର ସାମାନ୍ୟତମ କ୍ଷତିକରି, ନିଜ ବାହିନୀର କେନ୍ଦ୍ରକୁ ଅତି ଉତ୍ତମ ଭାବେ ସୁରକ୍ଷିତ କରି, (ଗଭୀରତା ଓ ଅପ୍ରତିକାର୍ଯ୍ୟତା ଦୃଷ୍ଟିରୁ) ସବୁଠାରୁ କମ୍ ବିଭେଦଗ୍ରସ୍ତ ହୋଇ ଯଥାସମ୍ଭବ କମ୍ ହତୋତ୍ସାହ ହୋଇ ଏବଂ ବ୍ୟାପକତମ ମାତ୍ରାରେ ଓ ସର୍ବାଧିକ ନିର୍ଭୁଲ ଓ ଦୃଢ଼ ଭାବେ ପୁଣି ଥରେ କାର୍ଯ୍ୟାରମ୍ଭ କରିବାର ସର୍ବୋତ୍କୃଷ୍ଟ ଅବସ୍ଥାରେ ନିଜକୁ ରଖି ସେମାନେ ପଛଘୁଞ୍ଚା ଦେଇ ପାରିଥିଲେ । ଯେଉଁ ବାକ୍ୟବାଗୀଶମାନେ ବୁଝିବାକୁ ଅସ୍ୱୀକାର କରୁଥିଲେ ଯେ ପଛଘୁଞ୍ଚା ଦେବାକୁ ହେବ, କିପରି ପଛଘୁଞ୍ଚା ଦେବାକୁ ହେବ ବୁଝିବାକୁ ହେବ ଏବଂ ସର୍ବାଧିକ ପ୍ରତିକ୍ରିୟାଶୀଳ ପାର୍ଲାମେଣ୍ଟ ଭିତରେ, ସର୍ବାଧିକ ପ୍ରତିକ୍ରିୟାଶୀଳ ଟ୍ରେଡ୍ ୟୁନିୟନ ଭିତରେ, ସମବାୟ ସମିତି ଭିତରେ, ବୀମା ସମିତି ଓ ତଦନୁରୂପ ସଂଗଠନ ଭିତରେ କିପରି ବୈଜ୍ଞାନିକ ଭାବେ କାମ କରାଯିବ ତାହା ଶିଖିବା ଅତ୍ୟାବଶ୍ୟକ, ସେଇମାନଙ୍କୁ ନିର୍ମମ ଭାବେ ପଦାରେ ପକାଇ ଦେବା ଓ ବହିଷ୍କାର କରିବା ଦ୍ୱାରା କେବଳ ବଲ୍‌ଶେଭିକ୍‌ମାନେ ସଫଳ କାମ ହୋଇ ପାରିଥିଲେ ।

ପୁନରୁତ୍‌ଥାନର ପର୍ବ (୧୯୧୦–୧୪)—ପ୍ରଥମେ ପୁନରୁଜ୍ଜୀବନ ଆସିଲା ଅବିଶ୍ୱାସ୍ୟ ମନ୍ଥର ଗତିରେ; ତାପରେ ୧୯୧୨ର ଲେନା ଘଟଣାବଳୀ ପରେ ତାର ଗତି କିଛି ପରିମାଣରେ ଦ୍ରୁତତର ହେଲା । ବଲ୍‌ଶେଭିକ୍‌ମାନେ ଅଭୂତପୂର୍ବ ବାଧାବିଘ୍ନକୁ ଅତିକ୍ରମକରି ନିଜର ଅଗ୍ରଗତିର ପଥରୁ ମେନଶେଭିକ୍‌ମାନଙ୍କୁ ଦୂର କରିଦେଲେ । ଶ୍ରମିକଶ୍ରେଣୀ ଆନ୍ଦୋଳନ ଭିତରେ ମେନ୍‌ଶେଭିକ୍‌ମାନଙ୍କର ଭୂମିକା ଥିଲା ବୁର୍ଜୁଆଶ୍ରେଣୀର ଅନୁଚର ରୂପେ କାର୍ଯ୍ୟ କରିବା ଆଉ ୧୯୦୫ ପରେ ବୁର୍ଜୁଆମାନେ ଏ କଥା ଭଲ ଭାବେ ବୁଝି ପାରିଥିଲେ ଏବଂ ତେଣୁ ସେମାନେ ବଲ୍‌ଶେଭିକ୍‌ମାନଙ୍କ ବିରୁଦ୍ଧରେ ଏହି ମେନ୍‌ଶେଭିକ୍‌ମାନଙ୍କୁ ହଜାରେ ଉପାୟରେ ସାହାଯ୍ୟ

କରୁଥିଲେ । କିନ୍ତୁ ଏ କାର୍ଯ୍ୟରେ ବଲ୍‌ଶେଭିକ୍‌ମାନେ କଦାପି ସଫଳ ହୋଇପାରି ନ ଥାନ୍ତେ ଯଦି ସେମାନେ ବେଆଇନ କାର୍ଯ୍ୟ ସହିତ "ବୈଧ ସମ୍ଭାବନାଗୁଡ଼ିକୁ" ଏକତ୍ର ବାଧ୍ୟତାମୂଳକ ଭାବେ ଉପଯୋଗ କରିବାର ନିର୍ଭୁଲ କୌଶଳକୁ ଅନୁସରଣ କରି ନ ଥାନ୍ତେ । ବଲ୍‌ଶେଭିକ୍‌ମାନେ ଚରମ ପ୍ରତିକ୍ରିୟାଶୀଳ ଡୁମା ସଭାରେ ସମସ୍ତ ଶ୍ରମିକ ଆସନ ଦଖଲ କରିନେଲେ ।

ପ୍ରଥମ ସାମ୍ରାଜ୍ୟବାଦୀ ବିଶ୍ୱ ଯୁଦ୍ଧ (୧୯୧୪-୧୭)—ଚରମ ପ୍ରତିକ୍ରିୟାଶୀଳ "ପାର୍ଲାମେଣ୍ଟ" ସହିତ ଆଇନସଙ୍ଗତ ଗଣତାନ୍ତ୍ରିକତା ବିପ୍ଳବୀ ଶ୍ରମିକଶ୍ରେଣୀର ପାର୍ଟି, ବଲ୍‌ଶେଭିକ୍‌ମାନଙ୍କର ବହୁ ଉପକାରରେ ଆସିଲା । ବଲ୍‌ଶେଭିକ୍ ଡେପୁଟି (ସଭ୍ୟ)ମାନେ ସାଇବେରିଆକୁ ନିର୍ବାସିତ ହେଲେ । ବିଦେଶରେ ଏହି ରାଜନୈତିକ ନିର୍ବାସିତ ବ୍ୟକ୍ତିମାନଙ୍କର ସମ୍ବାଦପତ୍ରରେ ପୂର୍ଣ୍ଣ ଅଭିବ୍ୟକ୍ତି ପାଇଲା ସାମାଜିକ ସାମ୍ରାଜ୍ୟବାଦ, ସାମାଜିକ ଉଗ୍ର ଜାତୀୟତାବାଦ, ସାମାଜିକ-ଦେଶପ୍ରୀତି, ଅସଙ୍ଗତ ଓ ସୁସଙ୍ଗତ ଆନ୍ତର୍ଜାତିକତାବାଦ ଓ ଶାନ୍ତିବାଦ ଆଉ ତା ସଙ୍ଗେ ସଙ୍ଗେ ଶାନ୍ତିବାଦୀ ମୋହଜାଲର ବୈପ୍ଳବିକ ଖଣ୍ଡନ ମଧ୍ୟ । ଦ୍ୱିତୀୟ ଆନ୍ତର୍ଜାତିକର ନିର୍ବୋଧ ଓ ବୃଦ୍ଧାଗଣ, ଯେଉଁମାନେ ଋଷୀୟ ସମାଜବାଦୀ ଆନ୍ଦୋଳନରେ "ଉପଦଳ"ର ପ୍ରାଚୁର୍ଯ୍ୟ ଓ ତିକ୍ତ ପାରସ୍ପରିକ ଲଢ଼େଇ ଦେଖି ଔଦ୍ଧତ୍ୟ ଓ ଅବଜ୍ଞାରେ ନାସିକା କୁଞ୍ଚନ କରୁଥିଲେ ସେମାନେ ଯେତେବେଳେ ସବୁ ଉନ୍ନତର ଦେଶରେ ସେମାନଙ୍କର ବହୁ ଘୋଷିତ "ବୈଧତା"ରୁ ଯୁଦ୍ଧ ଦ୍ୱାରା ବଞ୍ଚିତ ହୋଇଗଲେ, ସେତେବେଳେ ସ୍ୱିଜରଲାଣ୍ଡ ଓ ଅନ୍ୟ କେତୋଟି ଦେଶରେ ରୁଷ୍ ବିପ୍ଳବୀମାନେ ଯେପରି ଅବାଧ (ଅବୈଧ) ମତାମତ ବିନିମୟ କରୁଥିଲେ, ସେପରି ଅବାଧ (ଅବୈଧ) ନିର୍ଭୁଲ ମତାମତ ସୃଷ୍ଟି କରୁଥିଲେ ତାର ସାମାନ୍ୟ ତମ ଅଂଶ ବି ଏମାନେ କରି ପାରିଲେ ନାହିଁ । ଠିକ୍ ଏହି କାରଣରୁ ସବୁ ଦେଶର ବିଘୋଷିତ ସାମାଜିକ ଦେଶପ୍ରେମୀମାନେ, ଏଣ୍ଡାଜ

'ଜାଷ୍ଟ୍ ଆୟୁଁ '' ପତ୍ରମାନଙ୍କ ମଧ୍ୟ ଶ୍ରମିକଶ୍ରେଣୀ ପ୍ରତି ନିକୃଷ୍ଟତମ ବିଶ୍ୱାସଘାତକ ରୂପେ ପ୍ରମାଣିତ ହେଲେ । ସେଇଥିପାଇଁ ପ୍ରଧାନ କାରଣ ଯୋଗୁ ୧୯୧୭ ସେ ମସିହାରେ ବଲଶେଭିକ୍‌ମାନେ କ୍ଷମତାଲାଭ କରିବାକୁ ସମର୍ଥ ହେଲେ ତାହା ମଧ୍ୟରୁ ଅନ୍ୟତମ କାରଣ ହେଉଛି ଯେ ସେମାନେ ୧୯୧୪ ପରଠାରୁ ସମାଜବାଦୀ—ଉଗ୍ରଜାତୀୟତା ଓ "ରାଷ୍ଟ୍ରକୁ ବାଦର" ( ଫ୍ରାନ୍ସରେ ରେନୋଡେଲ୍, ଜର୍ମାନୀରେ ସ୍ୱାଧୀନ ଲେବର ପାର୍ଟିର ନେତାଗଣ ଓ ଫେବିଆନ୍‌ମାନେ ଇଂଲଣ୍ଡରେ ଇତ୍ୟାଦି ) ମାନଙ୍କର ନିକୃଷ୍ଟତମ ନୀଚତା, ଧୂର୍ତ୍ତ ପ୍ରକୃତି ଓ ହୀନ ଭାବକୁ ନିର୍ମମ ଭାବରେ ପଦାରେ ପକାଇ ଦେଇଥିଲେ । ଫଳରେ ଜନସାଧାରଣ ନିଜର ଅଭିଜ୍ଞତା ଭିତରେ ବଲଶେଭିକ୍‌ମତର ନିର୍ଭୁଲତା ସମ୍ପର୍କରେ କ୍ରମାଧିକ ଭାବରେ ଆସ୍ଥାବାନ ହୋଇ ଉଠିଲେ ।

ରୁଷିଆରେ ଦ୍ୱିତୀୟ ବିପ୍ଳବ ( ଫେବ୍ରୁଆରୀରୁ ଅକ୍ଟୋବର, ୧୯୧୭ ) ଜାରତନ୍ତ୍ରର ଅବିଶ୍ୱାସ୍ୟ ଘୃଣ୍ୟତା ଓ ଅକର୍ମଣ୍ୟତା ( ଅତି ଯନ୍ତ୍ରଣା ଦାୟକ ଯୁଦ୍ଧର ଆଘାତ ଓ କ୍ଳେଶର ସାହାଯ୍ୟରେ ) ଜାରତନ୍ତ୍ର ବିରୁଦ୍ଧରେ ଏକ ଅବିଶ୍ୱାସ୍ୟ ଧରଣର ଧ୍ୱଂସାତ୍ମକ ଶକ୍ତି ସୃଷ୍ଟି କରିଥିଲା । ମାତ୍ର କେତେ ଦିନ ଭିତରେ ରୁଷିଆ ରୂପାନ୍ତରିତ ହେଲା ଗୋଟିଏ ଗଣତାନ୍ତ୍ରିକ ବୁର୍ଜୁଆ ପ୍ରଜାତନ୍ତ୍ରରେ, ଦୁନିଆର ଯେକୌଣସି ଦେଶଠାରୁ ବେଶି ମୁକ୍ତ ଗୋଟିଏ ରାଷ୍ଟ୍ରରେ—ଅବଶ୍ୟ ଯୁଦ୍ଧ ଅବସ୍ଥା ମଧ୍ୟରେ । ସର୍ବାଧିକ "ଖାଣ୍ଟି ପାର୍ଲାମେଣ୍ଟାରୀ" ପ୍ରଜାତନ୍ତ୍ରରେ ଯେଉଁଭଳି ହୁଏ ଠିକ୍ ସେହିଭଳି ବିରୋଧୀ ଓ ବିପ୍ଳବୀ ପାର୍ଟି ଗୁଡ଼ିକର ନେତାମାନେ ଗୋଟିଏ ସରକାର ସ୍ଥାପନ କରିବାକୁ ଆରମ୍ଭ କଲେ ଏବଂ ଯେଉଁମାନେ ପାର୍ଲାମେଣ୍ଟରେ ବିରୋଧୀ ଦଳର ନେତୃତ୍ୱ କରୁଥିଲେ, ଏପରି କି ଏକ ଚରମ ପ୍ରତି-କ୍ରିୟାଶୀଳ ପାର୍ଲାମେଣ୍ଟ ହେଉ ନା କାହିଁକି, ସେଇ ବିରୋଧୀ ଦଳର ନେତାପଦ ବିପ୍ଳବ ସମୟରେ ସେମାନଙ୍କର ପରବର୍ତ୍ତୀ ଭୂମିକାରେ ସେମାନଙ୍କୁ ସାହାଯ୍ୟ କଲା ।

ମାତ୍ର ଅଳ୍ପ କେତୋଟି ମାସ ଭିତରେ ମେନଶେଭିକ ଓ "ସୋସାଲିଷ୍ଟ ରିଭଲ୍ୟୁସନାରିମାନେ" ଦ୍ୱିତୀୟ ଆନ୍ତର୍ଜାତିକର ୟୁରୋପୀୟ ବୀରପୁଙ୍ଗବ ମାନଙ୍କର, ମନ୍ତ୍ରୀତ୍ୱକାମୀ ଓ ଅନ୍ୟାନ୍ୟ ସୁବିଧାବାଦୀ ଅପଦାର୍ଥଙ୍କର ସମସ୍ତ ପଦ୍ଧତି ଓ ଚଳଣି, ଯୁକ୍ତି ଓ କୁତର୍କକୁ ପୁରାପୁରି ଆୟତ୍ତ କରିନେଲେ । ଆଜି ଆମ୍ଭେମାନେ ଶିଡ଼ମ୍ୟାନ ଓ ନୋଜ୍‌କେ, କାଉଟ୍‌ସ୍କି ଓ ହିଲଫାରଡ଼ିଂ, ରେନାର ଓ ଅଷ୍ଟରଲିଜ୍, ଅଟୋ । ବାଓ୍ୟାର ଓ ଫ୍ରିଜ୍ ଆଡ଼ଲର, ଭୁରାଟି ଓ ଲଙ୍ଗେ, ଇଂଲଣ୍ଡର ସ୍ୱାଧୀନ ଶ୍ରମିକ ପାର୍ଟିର ନେତୃଗଣ ଅଥବା ଫେବିଆନମାନଙ୍କ ସମ୍ବନ୍ଧରେ ଯାହା କିଛି ପଢ଼ୁ, ତାର ସବୁ କଥା ଆମର ମନେ ହୁଏ (ବାସ୍ତବିକ ତାହା ହିଁ ) ଏକ କ୍ଳାନ୍ତିମୟ ପୁନରାବୃତ୍ତି, ପୁରୁଣା ଓ ସୁପରିଚିତ ଘୋଷଣାର ପୁନରୁକ୍ତିମାତ୍ର । ମେନଶେଭିକମାନଙ୍କ କ୍ଷେତ୍ରରେ ଆମେ ଏଇ ସବୁ କଥା ପୂର୍ବରୁ ଦେଖି ଆସିଛୁ । ଇତିହାସ ଏହିପରି ଭାବେ, ଏକ ପଶ୍ଚାତ୍‌ପଦ ଦେଶର ସୁବିଧାବାଦୀମାନଙ୍କୁ ବହୁ ଅଗ୍ରସର ଦେଶର ସୁବିଧାବାଦୀମାନଙ୍କର ପୂର୍ବସୂରୀରେ ପରିଣତ କରି ଦେଇଛି । ଏହା ଇତିହାସର ଏକ ଉପହାସ ବ୍ୟତୀତ ଆଉ କ'ଣ ହୋଇପାରେ !

ଦ୍ୱିତୀୟ ଆନ୍ତର୍ଜାତିକର ବୀରଗଣ ସମସ୍ତେ ଯଦି ଦେଉଳିଆ ହୋଇ ଯାଇଥାନ୍ତି ଓ ସୋଭିଏଟ୍ ସଂସ୍ଥା ଓ ସୋଭିଏଟ୍ ଶକ୍ତିର ତାତ୍ପର୍ଯ୍ୟ ଓ ଭୂମିକା ବ୍ୟାପାରରେ ଯଦି ସେମାନେ ସେମାନଙ୍କର ମର୍ଯ୍ୟାଦା ହରାଇ ବସିଥାନ୍ତି; ସେହିଁ ତିନୋଟି ଅତି ଗୁରୁତ୍ୱପୂର୍ଣ୍ଣ ପାର୍ଟି ବର୍ତ୍ତମାନ ଦ୍ୱିତୀୟ ଆନ୍ତର୍ଜାତିକରୁ ବାହାରି ଆସିଛନ୍ତି( ଅର୍ଥାତ ଜର୍ମାନ ଇଣ୍ଡିପେଣ୍ଡେଣ୍ଟ ସୋସାଲ ଡେମୋକ୍ରାଟିକ ପାର୍ଟି, ଫରାସୀ ଲଙ୍ଗେପନ୍ଥୀମାନେ ଏବଂ ବ୍ରିଟିଶ ଇଣ୍ଡିପେଣ୍ଡେଣ୍ଟ ଲେବର ପାର୍ଟି ) ସେମାନଙ୍କର ନେତାମାନେ ଯଦି ଏଇ ପ୍ରଶ୍ନ ଉପରେ ନିଜକୁ ସମ୍ପୂର୍ଣ୍ଣ କରି ଅତି "ଉଲ୍ଲେଖଯୋଗ୍ୟ ଭାବେ" ସମ୍ମାନ ହରାଇ ବସିଥାନ୍ତି, ସେମାନେ ସମସ୍ତେ ଯଦି ପେଟିବୁର୍ଜୁଆ ଗଣତାନ୍ତ୍ରିକ କୁସଂସ୍କାରର ଦାସ ରୂପେ ପରିଣତ ହୋଇଥାନ୍ତି ( ୧୮୪୮ ସାଲରେ ଯେଉଁ ପେଟି ବୁର୍ଜୁଆ-

ମାନେ ନିଜକୁ "ସୋସାଲ୍ ଡେମୋକ୍ରାଟ୍ ବୋଲି ପରିଚୟ ଦେଉଥିଲେ ଠିକ୍ ସେହିମାନଙ୍କ ଅନୁସରଣରେ,—ତାହେଲେ ମେନଶେଭିକଙ୍କ କ୍ଷେତ୍ରରେ ଆମ୍ଭେମାନେ ଠିକ୍ ସେସବୁ କଥା ଦେଖି ଆସିଛୁ । ଏହା ଇତିହାସର ଏକ ପରିହାସ : ୧୯୦୫ରେ ରୁଷିଆରେ ସୋଭିଏତ୍‌ର ଜନ୍ମ ହେଲା; ୧୯୧୭ର ଫେବୃଆରୀ ଠାରୁ ଅକ୍ଟୋବର ପର୍ଯ୍ୟନ୍ତ ସୋଭିଏତ୍ ସଂସ୍ଥାଗୁଡ଼ିକ ମେନଶେଭିକମାନଙ୍କ ଦ୍ୱାରା ଭୁଲବାଟରେ ପରିଚାଳିତ ହେଲା, ଆଉ ସୋଭିଏତ୍‌ର ଭୂମିକା ଓ ତାତ୍ପର୍ଯ୍ୟ ବୁଝି ନ ପାରି ସେମାନେ ଦେଉଳିଆ ହୋଇପଡ଼ିଲେ ଏବଂ ବର୍ତ୍ତମାନ ସୋଭିଏତ୍ ଶକ୍ତିର ଭାବଧାରା ସାରା ଦୁନିଆରେ ଜାଗି ଉଠିଲାଣି ଓ ସମସ୍ତ ଦେଶର ସର୍ବହରାଙ୍କ ମଧ୍ୟରେ ଅସାମାନ୍ୟ ଦ୍ରୁତଗତିରେ ପ୍ରସାରିତ ହେଲାଣି । ଦ୍ୱିତୀୟ ଆନ୍ତର୍ଜାତିକର ପ୍ରବୀଣ ବୀରପୁରୁଷଗଣ ମଧ୍ୟ ବର୍ତ୍ତମାନ ଆମର ମେନଶେଭିକମାନଙ୍କ ଭଳି ଦେଉଳିଆ ହୋଇ ପଡ଼ୁଛନ୍ତି, କାରଣ ସେମାନେ ମଧ୍ୟ ସୋଭିଏତ୍‌ର ଭୂମିକା ଓ ତାତ୍ପର୍ଯ୍ୟ ବୁଝିବାକୁ ଅକ୍ଷମ । ଅଭିଜ୍ଞତାରୁ ପ୍ରମାଣିତ ହୋଇଛି ଯେ, ସର୍ବହରା ବିପ୍ଳବର କେତୋଟି ମୂଳ ପ୍ରଶ୍ନର କ୍ଷେତ୍ରରେ ରୁଷିଆକୁ ଯେଉଁ ସବୁ ଅଭିଜ୍ଞତା ଭିତର ଦେଇ ଗତି କରିବାକୁ ପଡ଼ିଛି ପୃଥିବୀର ସବୁ ଦେଶକୁ ଅନିବାର୍ଯ୍ୟ ଭାବେ ସେହି ଅଭିଜ୍ଞତା ଭିତର ଦେଇ ଗତି କରିବାକୁ ହେବ ।

ଆଜିକାଲି ୟୁରୋପ ଓ ଆମେରିକାରେ ମଝିରେ ମଝିରେ ଯେଉଁ ସବୁ ମତାମତର ସମ୍ମୁଖୀନ ହେବାକୁ ପଡ଼େ ଠିକ୍ ତାର ବିପରୀତରେ ବଲଶେଭିକମାନେ ଅତି ସତର୍କଭାବେ ପାର୍ଲାମେଣ୍ଟାରୀ (ବସ୍ତୁତଃ) ବୁର୍ଜୁଆ ଗଣତନ୍ତ୍ର ଏବଂ ମେନଶେଭିକମାନଙ୍କ ବିରୁଦ୍ଧରେ ସେମାନଙ୍କର ବିଜୟୀ ସଂଗ୍ରାମ ଆରମ୍ଭ କରିଥିଲେ । ସେଥିପାଇଁ ସେମାନେ ଯେଉଁ ପ୍ରସ୍ତୁତି କରିଥିଲେ ତାହା କୌଣସିମତେ ସହଜ ନଥିଲା । ଉଲ୍ଲିଖିତ ପର୍ଯ୍ୟାୟର ଆରମ୍ଭରେ ଆମ୍ଭେମାନେ ସରକାରକୁ ପାଦଚ୍ୟୁତ କରିବାର ଆହ୍ୱାନ ଦେଇ ନ ଥିଲୁ । ବରଂ ଆମ୍ଭେମାନେ ବୁଝେଇ କହୁଥିଲୁ ଯେ ସୋଭିଏତ୍ ଗୁଡ଼ିକର ଗଠନ

ପ୍ରଣାଳୀ ଓ ମନୋଭାବରେ ପ୍ରଥମେ ପରିବର୍ତ୍ତିତ ନହେବା ପର୍ଯ୍ୟନ୍ତ ସରକାରକୁ ଗଣତନ୍ତ୍ରୀକୃତ କରିବା ଅସମ୍ଭବ । ବୁର୍ଜୁଆ ପାର୍ଲାମେଣ୍ଟ ଅର୍ଥାତ୍ ସାମ୍ବିଧାନିକ ସଭାକୁ ବର୍ଜନ କରିବାର ଘୋଷଣା ଆମେ କରିନଥିଲୁ ; ବରଂ କହୁଥିଲୁ (ଆମ ପାର୍ଟିର ଏପ୍ରିଲ ୧୯୧୭ ସମ୍ମିଳନୀ ପରଠାରୁ ପାର୍ଟି ନାମରେ ଆନୁଷ୍ଠାନିକ ଭାବେ କହୁବାକୁ ଆରମ୍ଭ କରିଥିଲୁ ) ଯେ ସାଂବିଧାନିକ ସଭା ସମ୍ବଳିତ ଏକ ବୁର୍ଜୁଆ ପ୍ରଜାତନ୍ତ୍ର, ସାଂବିଧାନିକ ସଭା ବର୍ଜିତ ବୁର୍ଜୁଆ ପ୍ରଜାତନ୍ତ୍ର ଅପେକ୍ଷା ଶ୍ରେୟସ୍କର, କିନ୍ତୁ "ଶ୍ରମିକ" "କୃଷକର" ପ୍ରଜାତନ୍ତ୍ର, ଏକ ସୋଭିଏତ୍ ପ୍ରଜାତନ୍ତ୍ର, ବୁର୍ଜୁଆ ଗଣତାନ୍ତ୍ରିକ ପାର୍ଲାମେଣ୍ଟାରୀ ପ୍ରଜାତନ୍ତ୍ର ଠାରୁ ଭଲ । ଏପରି ଏକ ସତର୍କ, ସମ୍ୟକ, ସଜାଗ, ସୁଦୀର୍ଘ ପ୍ରସ୍ତୁତିବ୍ୟତୀତ ୧୯୧୭ ଅକ୍ଟୋବରରେ ଆମ୍ଭେମାନେ ଜୟଲାଭ କରିପାରି ନଥାନ୍ତୁ କି ସେହି ବିଜୟକୁ ବଞ୍ଚାଇ ରଖିପାରି ନଥାନ୍ତୁ ।

[ ୪ର୍ଥ ପରିଚ୍ଛେଦ ]

## ଶ୍ରମିକ ଆନ୍ଦୋଳନ ଭିତରେ କେଉଁ ଶତ୍ରୁମାନଙ୍କ ବିରୁଦ୍ଧରେ ସଂଗ୍ରାମ କରି ବଲଶେଭିକବାଦ ବଢ଼ି ଉଠିଲା ଏବଂ ଶକ୍ତିଶାଳୀ ଏବଂ ଇସ୍ପାତ ଭଳି କଠିନ ହେଲା ?

ପ୍ରଥମତଃ ଓ ପ୍ରଧାନତଃ, ସୁବିଧାବାଦ ବିରୁଦ୍ଧରେ ଯେଉଁ ସୁବିଧାବାଦ କି ୧୯୧୪ରେ ସ୍ପଷ୍ଟଭାବେ ସାମାଜିକ-ଉଗ୍ରଜାତୀୟତାବାଦର ରୂପ ଧାରଣ କଲା ଏବଂ ଶ୍ରମିକ ଶ୍ରେଣୀ ବିରୁଦ୍ଧରେ ସ୍ପଷ୍ଟଭାବେ ବୁର୍ଜୁଆ ଶ୍ରେଣୀର ପକ୍ଷ ନେଲା । ସ୍ୱଭାବତଃ, ଶ୍ରମିକ ଆନ୍ଦୋଳନ ଭିତରେ ଏଇଟା ହିଁ ହେଲା ବଲଶେଭିକବାଦର ପ୍ରଧାନ ଶତ୍ରୁ । ଆନ୍ତର୍ଜାତିକ କ୍ଷେତ୍ରରେ ମଧ୍ୟ ଏହା ହିଁ ହେଲା ପ୍ରଧାନ ଶତ୍ରୁ । ଏହି ଶତ୍ରୁ ପ୍ରତି ସବୁଠାରୁ ବେଶି ଦୃଷ୍ଟି ବଲଶେଭିକବାଦ ଦେଇଛି ଓ ଆଜି ବି ଦେଉଛି । ବିଦେଶରେ ମଧ୍ୟ ବଲଶେଭିକ କର୍ମତତ୍ପରତାର ଏଇ ଦିଗଟା ଆଜି ବେଶ ସୁବିଦିତ ।

ଶ୍ରମିକ ଆନ୍ଦୋଳନ ଭିତରେ ବଲଶେଭିକବାଦର ଅନ୍ୟ ଶତ୍ରୁ ବିଷୟରେ ଅବଶ୍ୟ ଆଉ କିଛି ଭିନ୍ନ କଥା କହିବାର ଅଛି । ପେଟି-ବୁର୍ଜୁଆ ବିପ୍ଳବ-ବାଦ, ଯେଉଁଥିରେ ନୈରାଜ୍ୟବାଦର ଗନ୍ଧ ରହିଛି, ସିଏ ନୈରାଜ୍ୟବାଦ ନିକଟରେ, ଋଣୀ ଏବଂ ସର୍ବହରାର ଏକ ଅବିଚଳ ଶ୍ରେଣୀ ସଂଗ୍ରାମ ପରିଚାଳନା କରିବା ଲାଗି ସମସ୍ତ ଅପରିହାର୍ଯ୍ୟ ଉପାଦାନ ଯାହାର ଅଭାବ ସେହି-

ପେଟିବୁର୍ଜ୍ୱା ବିପ୍ଳବବାଦ ବିରୁଦ୍ଧରେ ସଂଘର୍ଷ ଧରି ସଂଗ୍ରାମ ଭିତରେ ଯେ ବଲ୍‌ଶେଭିକ୍‌ବାଦ ବଢ଼ି ଥିଲା, ଗଢ଼ି ଉଠିଥିଲା ଓ ଇସ୍ପାତ ଭଳି କଠିନ ହୋଇ ଉଠିଲା—ଏ ବିଷୟଟି ବିଦେଶରେ ଆଜି ବି ଯଥେଷ୍ଟ ଭାବେ ଜ୍ଞାତ ନୁହେଁ। କ୍ଷୁଦ୍ର କ୍ଷୁଦ୍ର ମାଲିକ, କ୍ଷୁଦ୍ର କ୍ଷୁଦ୍ର ପ୍ରଭୁ (ଅନେକ ୟୁରୋପୀୟ ଦେଶରେ ଏହି ସାମାଜିକ ସ୍ତରର ଲୋକେ ଅତି ବ୍ୟାପକ ଓ ବହୁଳ ଭାବରେ ଦେଖାଯାନ୍ତି) ଯେଉଁମାନେ ପୁଞ୍ଜିବାଦ ଅଧୀନରେ ସର୍ବଦା ନିପୀଡ଼ିତ, ଯାହାର ଜୀବନାବସ୍ଥାରେ ଅନେକ ସମୟରେ ଅବିଶ୍ୱାସ୍ୟ ଦ୍ରୁତ ଓ ତୀବ୍ର ଗତିରେ ଅବନତି ଘଟି ସେମାନଙ୍କୁ ତଳିତଳାନ୍ତ କରିଦିଏ, ସେମାନେ ଚରମ ବିପ୍ଳବ ଦିଗରେ ସହଜରେ ଆଗେଇ ଯାଆନ୍ତି। କିନ୍ତୁ ସେମାନଙ୍କ ଠାରେ ଅଧ୍ୟବସାୟ, ସଂଗଠନ, ଶୃଙ୍ଖଳା ଓ ଅଟଳତାର ଅଭାବ ପରିଲକ୍ଷିତ ହୁଏ। ଏଇସତ୍ୟ ତତ୍ତ୍ୱଗତଭାବେ ମାର୍କ୍ସବାଦୀମାନଙ୍କ ପାଖରେ ସୁପ୍ରତିଷ୍ଠିତ ଏବଂ ସମସ୍ତ ୟୁରୋପୀୟ ବିପ୍ଳବ ଓ ବିପ୍ଳବାତ୍ମକ ଆନ୍ଦୋଳନର ଅଭିଜ୍ଞତା ଏହାକୁ ପୁରାପୁରି ପ୍ରତିପାଦନ କରି ଆସିଛି। ପୁଞ୍ଜିବାଦର ବିଭୀଷିକା ଜନିତ ପେଟିବୁର୍ଜ୍ୱା "ଉନ୍ମତ୍ତତା" ହେଉଛି ଏକ ସାମାଜିକ ସତ୍ୟ, ଯାହା ନୈରାଜ୍ୟବାଦ ପରି, ସମସ୍ତ ପୁଞ୍ଜିବାଦୀ ଦେଶରେ ଏକ ଚରିତ୍ର ଗତ ବ୍ୟାପାର। ଏ ପ୍ରକାର ବିପ୍ଳବବାଦର ଅସ୍ଥିରତା, ତାର ବନ୍ଧ୍ୟାତ୍ୱ, ଆଉ ଆତ୍ମସମର୍ପଣ, ଉଦାସୀନତା, କଳ୍ପନା-ବିଳାସିତା ଏବଂ ଏପରିକି କୌଣସି ନା କୌଣସି ବୁର୍ଜ୍ୱା "ଖିଆଲ" ପ୍ରତି 'ଉନ୍ମତ୍ତ" ମୋହାଚ୍ଛନ୍ନତାରେ ସେହି ବିପ୍ଳବବାଦର ଦ୍ରୁତ ରୂପାନ୍ତର—ଏସବୁ ହେଲା ଅତି ଜଣାଶୁଣା କଥା। ତଥାପି ଏଇ ସତ୍ୟର ତତ୍ତ୍ୱଗତ ସ୍ୱୀକୃତି ଦ୍ୱାରା ବିପ୍ଳବୀପାର୍ଟି ଗୁଡ଼ିକ ପୁରୁଣା ଭୁଲରୁ ନିଜକୁ ମୁକ୍ତ କରି ପାରିବେ ନାହିଁ। ଏସବୁ ଭୁଲ ଅତି ଅପ୍ରତ୍ୟାଶିତ ମୁହୂର୍ତ୍ତରେ ପୁଣି ସଦାସର୍ବଦା ମୁଣ୍ଡଟେକି ଉଠିବ, ହୁଏତ କିଛି କିଛି ନୂଆ ଭାବରେ, ଏ ଯାବତ ଜଣାନଥିବା ପରିଧାନରେ ବା ପରିବେଶରେ, ଏକ ସ୍ୱତନ୍ତ୍ର—ଅଳ୍ପ ବହୁତ ପରିବର୍ତ୍ତିତ ପରିସ୍ଥିତିରେ ମୁଣ୍ଡ ଟେକି ଉଠିବ। ନୈରାଜ୍ୟବାଦ ଅନେକ ସମୟରେ ଶ୍ରମିକ ଆନ୍ଦୋଳନରେ ସୁବିଧାବାଦୀ ପାପର ଶାସ୍ତି ବିଶେଷ ହିସାବରେ ଦେଖା ଦେଇଛି। ଏଇ

ଦୁଇଟି ବିକୃତ ପରସ୍ପରର ପରିପୂରକ । ଯଦିଓ ରୁଷର ଜନସଂଖ୍ୟା ୟୁରୋପୀୟ ଦେଶ ଗୁଡ଼ିକ ତୁଳନାରେ ବେଶି ପେଟିବୁର୍ଜୁଆ ପ୍ରଧାନ, ତଥାପି ରୁଷିଆରେ ଉଭୟ ବିପ୍ଳବ ସମୟରେ (୧୯୦୫ ଓ ୧୯୧୭ ) ଓ ବିପ୍ଳବର ପ୍ରସ୍ତୁତ ପର୍ଯ୍ୟାୟରେ ନୈରାଜ୍ୟବାଦର ପ୍ରଭାବ ଆପେକ୍ଷିକ ଭାବେ ନ୍ୟୂନ ହୋଇଥିଲା— ଏଇ ଘଟଣା ନିଃସନ୍ଦେହ ଭାବେ କେତେକାଂଶରେ ବଲଶେଭିକବାଦର ବାହାଦୁରି ଯୋଗୁ ଘଟିଥିଲା, ଯେଉଁ ବଲଶେଭିକବାଦ ସଦାସର୍ବଦା ସୁବିଧାବାଦ ବିରୁଦ୍ଧରେ ନିର୍ମମ ଓ ଆପୋଷହୀନ ସଂଗ୍ରାମ ଚଳାଇ ଆସିଛି । ମୁଁ "କେତେକାଂଶରେ" ବୋଲି କହୁଛି ଏଇଥିପାଇଁ ଯେ ରୁଷିଆରେ ନୈରାଜ୍ୟବାଦର ପ୍ରଭାବ ହ୍ରାସ କରିବା ଦିଗରେ ଆହୁରି ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଛି ଗୋଟିଏ ଘଟଣା—ଅତୀତରେ ( ଊନବିଂଶ ଶତାବ୍ଦୀର ସପ୍ତମ ଦଶକରେ ) ନୈରାଜ୍ୟବାଦ ଅସାଧାରଣ ସମୃଦ୍ଧିରେ ବିକଶିତ ହେବାକୁ ଏବଂ ବିପ୍ଳବୀଶ୍ରେଣୀର ପଥ ପ୍ରଦର୍ଶକ ମତ ହିସାବରେ ନିଜର ଚୂଡ଼ାନ୍ତ ଅଯୌକ୍ତିକତା ଓ ଅଯୋଗ୍ୟତାକୁ ପ୍ରମାଣ କରିବାପାଇଁ ସୁଯୋଗ ପାଇଥିଲା ।

୧୯୦୩ ମସିହାରେ ବଲଶେଭିକବାଦ ତାର ଆଦ୍ୟ ମୂହୂର୍ତ୍ତରୁ, ପେଟିବୁର୍ଜୁଆ, ଅର୍ଦ୍ଧ—ନୈରାଜ୍ୟବାଦୀ (ଅଥବା ପଲ୍ଲବଗ୍ରାହୀ ନୈରାଜ୍ୟ-ବାଦୀ) ବିପ୍ଳବୀବାଦ ବିରୁଦ୍ଧରେ ନିର୍ମମ ସଂଗ୍ରାମର ପରମ୍ପରା ବହନ କରିଥିଲା । ଏହି ପରମ୍ପରା ସର୍ବଦା ବିପ୍ଳବୀ ସୋସାଲ-ଡେମୋକ୍ରାସି ଭିତରେ ଅବସ୍ଥିତ ଥିଲା, ଏବଂ ବିଶେଷଭାବେ ପ୍ରବଳ ହୋଇ ଉଠିଲା ୧୯୦୦-୦୩ ରେ, ଯେତେବେଳେ ରୁଷିଆରେ ବିପ୍ଳବୀ ସର୍ବହରା ଶ୍ରେଣୀର ଗଣ ପାର୍ଟିର ଭିତ୍ତି ସ୍ଥାପିତ ହେଲା । ଯେଉଁ ପାର୍ଟି ଅନ୍ୟ ପାର୍ଟିମାନଙ୍କ ଅପେକ୍ଷା ବେଶି ପରିମାଣରେ ପେଟି-ବୁର୍ଜୁଆ ବିପ୍ଳବବାଦର ଝୁଙ୍କ ପ୍ରକାଶ କରୁଥିଲା, ଯଥା—"ସୋସାଲିଷ୍ଟ ରିଭଲ୍ୟୁସନାରୀ ପାର୍ଟି", ତା ବିରୁଦ୍ଧରେ ବଲଶେଭିକବାଦ ସଂଗ୍ରାମର ପନ୍ଥା ଗ୍ରହଣ କଲା ଓ ସଂଗ୍ରାମ ଚଳାଇ ନେଲା । ତିନୋଟି ପ୍ରଧାନ ବିଷୟକୁ କେନ୍ଦ୍ର କରି ଏହି ସଂଗ୍ରାମ

ପରସ୍କୃତ ହେଲା । ପ୍ରଥମତଃ, ଏଇ ସୋସାଲିଷ୍ଟ ରିଭଲ୍ୟୁସନାରି ପାର୍ଟି ମାର୍କସବାଦ ବର୍ଜନ କରି କୌଣସି ରାଜନୈତିକ କ୍ରିୟାନୁଷ୍ଠାନ ପୂର୍ବରୁ ଶ୍ରେଣୀ ଶକ୍ତି ଗୁଡ଼ିକର ଓ ସେମାନଙ୍କର ପାରସ୍ପରିକ ସମ୍ପର୍କକୁ ଅତି ବାସ୍ତବଭାବେ କଳନା କରିବାର ପ୍ରୟୋଜନୀୟତା ହୃଦୟଙ୍ଗମ କରିବାକୁ ଅସ୍ୱୀକାର କଲା । ( ଅଥବା, ସଠିକଭାବେ କହିବାକୁ ଗଲେ ଅସମର୍ଥ ହେଲା ) ଦ୍ୱିତୀୟତଃ, ଏଇ ପାର୍ଟି ନିଜକୁ ବିଶେଷ ଦ “ବିପ୍ଳବୀ” ବା “ବାମପନ୍ଥୀ” ବୋଲି ବିଚାରିଲା, କାରଣ ବ୍ୟକ୍ତିଗ ସନ୍ତ୍ରାସବାଦ ଓ ହତ୍ୟାକୁ ଏହା ସ୍ୱୀକାର କରୁଥିଲା, ଯାହାକୁ କି ଆମ୍ଭେ ମାର୍କସବାଦୀମାନେ ଦୃଢ଼ଭାବେ ବର୍ଜନ କରିଦେଲୁ । ଅବଶ୍ୟ, ଆମ୍ଭେମାନେ ଉପଯୋଗିତା ଦୃଷ୍ଟିରୁ, ବ୍ୟକ୍ତିଗତ ସନ୍ତ୍ରାସକୁ ପ୍ରତ୍ୟାଖ୍ୟାନ କରିଥିଲୁ, ଅଥଚ ଯେଉଁ ସବୁ ଲୋକେ ମହାନ ଫରାସୀ ବିପ୍ଳବର ସନ୍ତ୍ରାସବାଦୀ କାର୍ଯ୍ୟକୁ “ନୀତି ଦୃଷ୍ଟିରୁ” ଅଥବା ସାଧାରଣ ଭାବେ, ସାରା ଦୁନିଆର ଧନୀକ ଶ୍ରେଣୀ ଦ୍ୱାରା ଅବରୁଦ୍ଧ ଏକ ବିପ୍ଳବୀ ବିଜୟୀ ପାର୍ଟିର ଅନୁସୃତ ସନ୍ତ୍ରାସବାଦକୁ ନିନ୍ଦା କରୁଥିଲେ ସେମାନଙ୍କୁ ୧୯୦୦-୦୩ ସାଲରେ ପ୍ଲେଖାନୋଭ ମଧ୍ୟ ବିଦ୍ରୁପ ଓ ଘୃଣାରେ ଜର୍ଜରିତ କରି ଦେଉଥିଲେ । ସେତେବେଳେ ପ୍ଲେଖାନୋଭ ଜଣେ ମାର୍କସବାଦୀ ଓ ବିପ୍ଳବୀ ଥିଲେ । ତୃତୀୟତଃ, “ସୋସାଲିଷ୍ଟ ରିଭଲ୍ୟୁସନାରି”ମାନେ ଜର୍ମାନ ସୋସିଆଲ ଡେମୋକ୍ରାଟିକ ପାର୍ଟିର ଆପେକ୍ଷିକ ଭାବେ ସୁବିଧାବାଦୀ ପାପଗୁଡ଼ିକ ପ୍ରତି ଅବଜ୍ଞା ପ୍ରକାଶ କରିବା ଚରମ “ବାମପନ୍ଥୀ” ବୋଲି ବିଚାରୁ ଥିଲେ । ଅଥଚ ନିଜେ ସେଇ ପାର୍ଟିର ଘୋର ସୁବିଧାବାଦୀମାନଙ୍କୁ ଅନୁସରଣ କରୁଥିଲେ—ଉଦାହରଣ ସ୍ୱରୂପ, ଯେପରି କୃଷି ସମ୍ବନ୍ଧୀୟ କିମ୍ବା ବେହରା ଅଧିନାୟକତ୍ୱ ପ୍ରଶ୍ନ ଉପରେ ।

ଇତିହାସ ଆଜି ତାର ବିରାଟ ବିଶ୍ୱବ୍ୟାପୀ ଐତିହାସିକ ମାନଦଣ୍ଡରେ ଆମର ସଦାସର୍ବଦା ପ୍ରକାଶିତ ମତକୁ ସମର୍ଥନ କରୁଛି ଯେ କିପ୍ଲଭ ଲର ବିପ୍ଳବୀ ଶ୍ରେଣୀର ଯାହା ପ୍ରୟୋଜନ ବିପ୍ଳବ ଜର୍ମାନ ସୋସାଲ

ଡେମୋକ୍ରାଟିକ ଗୋଟାଏ ପାର୍ଟି ହିସାବରେ ତାର ନିକଟତମ ଥିଲା । ( ମନେ ରଖିବା ଉଚିତ ଯେ ୧୯୦୦-୦୩ ସାଲ ପର୍ଯ୍ୟନ୍ତ ପ୍ଲେଖାନୋଭ ପାର୍ଟିରୁ ବେର୍ଣ୍ଣଷ୍ଟାଇନଙ୍କୁ ବହିଷ୍କାର କରିବାକୁ ଦାବୀ କରିଥିଲେ, ଆଉ ସେହି ଐତିହ୍ୟ ସର୍ବଦା ବହନ କରି ବଲ୍‌ଶେଭିକ-ମାନେ ୧୯୧୩ ସାଲରେ ଲେଜିଏନ୍‌ଙ୍କ ଚରମ ନୀଚତା, ହୀନତା ଓ ବିଶ୍ୱାସଘାତକତାକୁ ପଦାରେ ପକାଇ ଦେଇଥିଲେ ) । ଯୁଦ୍ଧକାଳୀନ ଏବଂ ଯୁଦ୍ଧୋତ୍ତର ପ୍ରଥମ ପର୍ଯ୍ୟାୟରେ ଲକ୍ଷ୍ୟାକର ସକଳ ବ୍ୟର୍ଥତା ଓ ସଙ୍କଟପରେ ବି ଆଜି, ୧୯୨୦ରେ ପରିଷ୍କାର ଦେଖାଯାଉଛି ଯେ, ସବୁ ପାଶ୍ଚାତ୍ୟ ପାର୍ଟିର ତୁଳନାରେ ଜର୍ମାନୀର ବିପ୍ଳବୀ ସୋସାଲ ଡେମୋକ୍ରାସି ଶ୍ରେଷ୍ଠ ନେତାମାନଙ୍କୁ ଜନ୍ମ ଦେଇଛି, ଅନ୍ୟମାନଙ୍କ ଅପେକ୍ଷା ବେଶି ଦ୍ରୁତ ବେଗରେ ପୁନର୍ଜୀବନ ଲଭ କରିଛି, ଆରୋଗ୍ୟ ଲଭ କରିଛି, ନୂତନ ଶକ୍ତି ଅର୍ଜନ କରିଛି । ସ୍ପାର୍ଟାସିଷ୍ଟ ପାର୍ଟି ଆଉ "ଜର୍ମାନୀର ଇଣ୍ଡିପେଣ୍ଡେଣ୍ଟ ସୋସାଲ ଡେମୋକ୍ରାଟିକ ପାର୍ଟି"ର ବାମପନ୍ଥୀ ଓ ଶ୍ରମିକଶ୍ରେଣୀ ଶାଖା ଉଭୟ କ୍ଷେତ୍ରରେ ଏହା ପରିଲକ୍ଷିତ ହୁଏ । ଏମାନେ କାଉଟସ୍କି, ହିଲ ଫାରଡିଂ; ଲେଡେବୁର ଓ କ୍ରିସ୍‌ପିଏନ ଆଦିଙ୍କର ସୁବିଧାବାଦ ଓ ମେରୁଦଣ୍ଡହୀନତା ବିରୁଦ୍ଧରେ ନିରବଚ୍ଛିନ୍ନ ଲଢ଼େଇ ଚଳେଇ ଯାଉଛନ୍ତି । ଆଜି ଯଦି ଆମ୍ଭେମାନେ ଗୋଟାଏ ସମ୍ପୂର୍ଣ୍ଣ ଓ ସମାପ୍ତ ଐତିହାସିକ ଯୁଗ ଯଥା ପ୍ୟାରିକମ୍ୟୁନଠାରୁ ପ୍ରଥମ ସମାଜବାଦୀ ସୋଭିଏତ୍ ପ୍ରଜାତନ୍ତ୍ର ପ୍ରତି ଦୃଷ୍ଟି ନିକ୍ଷେପ କରୁ ତେବେ ଦେଖି ପାରିବା ଯେ ନୈରାଜ୍ୟବାଦ ପ୍ରତି ମାର୍କସ୍‌ବାଦର ଦୃଷ୍ଟିଭଙ୍ଗୀ କ'ଣ, ତାହା ଅତି ନିର୍ଭୁଲ ଭାବେ ପରିସ୍ଫୁଟ ହୋଇ ଉଠିଛି । ଅବଶେଷରେ ମାର୍କସ୍‌ବାଦ ସଠିକ ବୋଲି ପ୍ରମାଣିତ ହୋଇଛି । ଯଦିଓ ଅଧିକ ସଂଖ୍ୟକ ସମାଜବାଦୀ ପାର୍ଟିମାନଙ୍କ ମଧ୍ୟରେ ରାଷ୍ଟ୍ର ତତ୍ତ୍ୱ ସମ୍ପର୍କରେ ସୁବିଧାବାଦୀ ମତ ପ୍ରଚଳିତ ରହିଛି ବୋଲି ନୈରାଜ୍ୟବାଦୀମାନେ ଠିକ୍ ଭାବେ ଦର୍ଶାଉଥିଲେ, ତଥାପି କହିବାକୁ ହେବ ଯେ, ପ୍ରଥମତଃ ଏହି ସୁବିଧାବାଦ ମାର୍କସଙ୍କ ରାଷ୍ଟ୍ରତତ୍ତ୍ୱକୁ ବିକୃତ କରିବାରେ, ଏପରିକି ଇଚ୍ଛାକୃତ ଭାବେ ଚପେଇ ରଖିବାରେ ନିହିତ ରହିଥିଲା ( ମୋର ରାଷ୍ଟ୍ର ଓ ବିପ୍ଳବ ପୁସ୍ତକରେ ମୁଁ ଦେଖେଇ

ଦେଇଛୁ ଯେ ୧୮୭୫ ଠାରୁ ୧୯୧୧ ଏଇ ଛତିଶ ବର୍ଷ ଧରି ବେବେଲ ଏଙ୍ଗେଲସ୍ଙ୍କର ଚିଠିଟିକୁ ଗୋପନ ରଖିଥିଲେ—ଯେଉଁ ଚିଠିରେ ସେ ଗ୍ରନ୍ଥ ସମ୍ପର୍କରେ ପ୍ରଚଳିତ ସୋସାଲ୍ ଡେମୋକ୍ରାଟିକ ସୁବିଧାବାଦୀ ଧାରଣାଗୁଡ଼ିକର ମୁ । ଖୋଲି ଦେଇଥିଲେ ଅତି କଳ୍ପନା, ତୀକ୍ଷ୍ଣ, ନିର୍ମମ ଓ ପରିଷ୍କାର ଭାବରେ ; ଏବଂ ଦ୍ୱିତୀୟତଃ-ୟୁରୋପ ଓ ଆମେରିକାର ସମାଜବାଦୀ ପାର୍ଟି-ମାନଙ୍କ ମଧ୍ୟରେ ଯେଉଁମାନେ ଅପେକ୍ଷାକୃତ ଅଧିକ ମାର୍କସୀୟ ମତବାଦର ପକ୍ଷପାତୀ ଥିଲେ ସେମାନେ ହିଁ ଦ୍ରୁତ ଭାବେ ଓ ଦୃଢ଼ଭାବେ ଏଇ ସୁବିଧାବାଦୀ ମତାମତକୁ ଖଣ୍ଡନ କରି, ଏବଂ ସୋଭିଏତ୍ ଶକ୍ତି ଓ ବୁର୍ଜୁଆ ପାର୍ଲିମେଣ୍ଟାରୀ ଗଣତନ୍ତ୍ର ତୁଳନାରେ ତାର ଶ୍ରେଷ୍ଠତ୍ୱକୁ ସ୍ୱୀକାର କରିବା କାର୍ଯ୍ୟରେ ଲାଗି ପଡ଼ିଲେ ।

ନିଜର ପାର୍ଟି ମଧ୍ୟରେ "ବାମପନ୍ଥୀ" ବଲ୍‌ଶେଭିକମାନଙ୍କ ବିପକ୍ଷରେ ବଲଶେଭିକ-ବାଦ ଯେଉଁ ସଂଗ୍ରାମ ଚଳାଇଥିଲା ତାହା ଦୁଇଥର ବିଶେଷ ବ୍ୟାପକ ରୂପ ଧାରଣ କରିଥିଲା : ୧୯୦୮ ମସିହାରେ ଚରମ ପ୍ରତିକ୍ରିୟାଶୀଳ ଆଇନର ସଙ୍କୀର୍ଣ୍ଣତା ମଧ୍ୟରେ ସର୍ବାଧିକ ପ୍ରତିକ୍ରିୟାଶୀଳ "ପାର୍ଲିମେଣ୍ଟ" ଏବଂ ନ୍ୟାୟସଙ୍ଗତ ଶ୍ରମିକ ସମିତି ଗୁଡ଼ିକରେ ଅଂଶ ଗ୍ରହଣ କରିବା ଉଚିତ କି ନୁହେଁ ଏଇ ପ୍ରଶ୍ନ ଉପରେ; ଏବଂ ପୁଣି ୧୯୧୮ ରେ (ବ୍ରେଷ୍ଟ-ଲିଟୋଭସ୍କ ଚୁକ୍ତି) କୌଣସି ପ୍ରକାରର "ଆପୋଷ" ଗ୍ରହଣୀୟ କି ନୁହେଁ ଏହି ପ୍ରଶ୍ନ ଉପରେ ।

୧୯୦୮ ମସିହାରେ ସର୍ବାଧିକ ପ୍ରତିକ୍ରିୟାଶୀଳ "ପାର୍ଲିମେଣ୍ଟ"ରେ ଯୋଗଦାନର ପ୍ରୟୋଜନୀୟତା ଉପଲବ୍ଧି କରିବାକୁ ଦୃଢ଼ଭାବେ ଅସ୍ୱୀକାର କରିବା ହେତୁ ଆମ ପାର୍ଟିରୁ "ବାମପନ୍ଥୀ" ବଲଶେଭିକ ମାନଙ୍କୁ ବହିଷ୍କାର କରି ଦିଆ ଯାଇଥିଲା । ଏଇ "ବାମପନ୍ଥୀ"ମାନେ—ଯେଉଁମାନଙ୍କ ଭିତରେ ଥିଲେ ବହୁ ଚମତ୍କାର ବିପ୍ଳବୀ, ଯେଉଁମାନେ ପରେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହେବାର ଗୌରବ ସୁନାମର ସହ

ଅର୍ଜନ କରିଥିଲେ ( ଏବଂ ଏବେ ବି କରୁଛନ୍ତି ) ସେମାନେ ୧୯୦୫ରେ ବର୍ଜନ ଆନ୍ଦୋଳନର ଅଭିଜ୍ଞତାକୁ ଭିତ୍ତି କରି ଏହି ପନ୍ଥା ଧରିଥିଲେ । ୧୯୦୫ ଅଗଷ୍ଟ ମାସରେ ଜାର୍ ଯେତେବେଳେ ଏକ ପରାମର୍ଶଦାତା "ପାର୍ଲାମେଣ୍ଟ" ଆହ୍ୱାନ କଲେ, ସେତେବେଳେ ବଲଶେଭିକ୍‌ମାନେ— ସମସ୍ତ ବିରୋଧୀ ଦଳ ଓ ମେନ୍‌ଶେଭିକ୍‌ମାନଙ୍କ ବିରୋଧିତା ସତ୍ତ୍ୱେ—'ପାର୍ଲାମେଣ୍ଟ" ବର୍ଜନ ପାଇଁ ଆହ୍ୱାନ ଜଣାଇଲେ ଏବଂ ଏହି ସଭା ବାସ୍ତବରେ ୧୯୦୫ ଅକ୍ଟୋବର ବିପ୍ଳବର ପ୍ଲାବନରେ ଭାସିଗଲା । ସେହି ସମୟରେ ଏହି ବର୍ଜନ ପନ୍ଥା ଠିକ୍ ବୋଲି ପ୍ରମାଣିତ ହୋଇଥିଲା । ତାର କାରଣ ଏହା ନୁହେଁ ଯେ ପ୍ରତିକ୍ରିୟାଶୀଳ ପାର୍ଲାମେଣ୍ଟରେ ଯୋଗ ନ ଦେବା ସାଧାରଣତଃ ଠିକ୍, ତାର କାରଣ ହେଲା ବାସ୍ତବ ଅବସ୍ଥାକୁ ଆମେ ଠିକ୍ ଧରି ପାରିଥିଲୁ ଯାହା ଗଣ-ଧର୍ମଘଟଗୁଡ଼ିକୁ ଦ୍ରୁତ ଭାବେ ରାଜନୈତିକ ଧର୍ମଘଟ ଆଡ଼କୁ ଆଉ ତା ପରେ ବିପ୍ଳବୀ ଧର୍ମଘଟ ଆଡ଼କୁ ଏବଂ ଶେଷରେ ସଶସ୍ତ୍ର ଅଭ୍ୟୁତ୍ଥାନ ଆଡ଼କୁ ଆଗେଇ ନେଉଥିଲା । ତା ଛଡ଼ା ପ୍ରଥମ ପ୍ରତିନିଧି ସଭାର ଆହ୍ୱାନ ଦାୟିତ୍ୱ ଜାର୍ ହାତରେ ଛାଡ଼ି ଦିଆଯିବ ନା ପୁରୁଣା ଶାସନ କବଳରୁ ଏହି ଦାୟିତ୍ୱକୁ କାଢ଼ି ନେବାକୁ ହେବ, ଏହି ପ୍ରଶ୍ନକୁ କେନ୍ଦ୍ରକରି ସେତେବେଳେ ସଂଗ୍ରାମ ଚାଲିଥିଲା । କିନ୍ତୁ ବାସ୍ତବ ଅବସ୍ଥାଟା ଯେତେବେଳେ ଠିକ ଅନୁରୂପ ଧରଣର ହୋଇନାହିଁ କି ହେବାର କୌଣସି ସମ୍ଭାବନା ରହିଲା ନାହିଁ ଏବଂ ସେହିପରି ଅନୁରୂପ ଧାରା ଓ ଘଟଣାବଳୀର ଦ୍ରୁତ ଗତିର ପୁନରାବୃତ୍ତି ହେବାର କୌଣସି ନିଶ୍ଚୟତା ରହିଲା ନାହିଁ ସେତେବେଳେ ଏହି ବର୍ଜନ ଆନ୍ଦୋଳନର ନିର୍ଭୁଲତା ଲୋପ ପାଇଗଲା ।

୧୯୦୫ ମସିହାରେ ବଲ୍‌ଶେଭିକ୍‌ମାନଙ୍କର "ପାର୍ଲାମେଣ୍ଟ" ବର୍ଜନ ଆନ୍ଦୋଳନ ବିପ୍ଳବୀ ଶ୍ରମିକଶ୍ରେଣୀକୁ ଅତି ମୂଲ୍ୟବାନ ରାଜନୈତିକ ଅଭିଜ୍ଞତାରେ ସମୃଦ୍ଧ କରିଦେଲା ଏବଂ ଦେଖାଇଦେଲା ଯେ ଆଇନସମ୍ମତ ଓ ବେଆଇନ, ପାର୍ଲାମେଣ୍ଟାରୀ ଓ ପାର୍ଲାମେଣ୍ଟାରୀବହିର୍ଭୂତ ସଂଗ୍ରାମର ବିଭିନ୍ନ ରୂପକୁ ଏକତ୍ରୀତ କରିବା ଭିତରେ ପାର୍ଲାମେଣ୍ଟାରୀ ପଦ୍ଧତିକୁ ପ୍ରତ୍ୟାଖ୍ୟାନ

କରିବା ବେଳେ ବେଳେ ଆବଶ୍ୟକ ଓ ଏପରି କି ଅନିବାର୍ଯ୍ୟ ହୋଇ-
ଉଠେ । କିନ୍ତୁ ଭିନ୍ନ ଅବସ୍ଥା ଏବଂ ଭିନ୍ନ ପରିସ୍ଥିତିରେ ଏହି ଅଭିଜ୍ଞତାର
ଅନ୍ଧ ଅନୁକରଣ ଓ ନିର୍ବିଚାର ପ୍ରୟୋଗ ନିଶ୍ଚୟ ଏକ ସାଂଘାତିକ ଭୁଲ । ୧୯୦୬
ମସିହାରେ ବଲ୍‌ଶେଭିକ୍‌ମାନଙ୍କର "ଡୁମା" ବର୍ଜନ ଅବଶ୍ୟ ଭୁଲ ହୋଇଥିଲା—
ଯଦିଓ ସେ ଭୁଲ ସାମାନ୍ୟ ଓ ସହଜରେ ସଂଶୋଧନୀୟ ଥିଲା * । ୧୯୦୭,
୧୯୦୮ ଓ ପରବର୍ତ୍ତୀ ବର୍ଷଗୁଡ଼ିକରେ ଡୁମା ବର୍ଜନ ଏକ ଗୁରୁତର ଭୁଲ
ହୋଇଥାନ୍ତା ଯାହାର ସଂଶୋଧନ ସହଜ ହୋଇ ନ ଥାନ୍ତା, କାରଣ
ଗୋଟାଏ ଦିଗରେ ବିପ୍ଳବୀ ଜୁଆରର ଦ୍ରୁତ ବୃଦ୍ଧି ଏବଂ ସଶସ୍ତ୍ର ଅଭ୍ୟୁତ୍ଥାନରେ
ତାର ରୂପାନ୍ତର ସେତେବେଳେ ଆଶା କରାଯାଇ ନ ଥିଲା, ଆଉ ଅନ୍ୟ
ଦିଗରେ ବୁର୍ଜୁଆ ରାଜତନ୍ତ୍ରର ପୁନର୍ଗଠନର ଅନୁଗାମୀ ସମସ୍ତ ଐତିହାସିକ
ପରିସ୍ଥିତିରେ ବୈଧ ଓ ଅବୈଧ ପ୍ରଚେଷ୍ଟାର ସମ୍ମିଶ୍ରଣ ଦରକାର ହୋଇଥିଲା ।
ଆଜି ଯେତେବେଳେ ଆମ୍ଭେମାନେ ଏହି ପରିସମାପ୍ତ ଐତିହାସିକ ଯୁଗ ଆଡ଼କୁ
ଫେରି ଦେଖୁ, ପରବର୍ତ୍ତୀ ଯୁଗଗୁଡ଼ିକ ସହିତ ଯାହାର ସଂଯୋଗ ସମ୍ପୂର୍ଣ୍ଣ
ପ୍ରକାଶ ପାଇଛି, ସେତେବେଳେ ବିଶେଷ ସ୍ପଷ୍ଟ ଭାବେ ବୁଝିପାରୁ ଯେ
୧୯୦୮-୧୪ରେ ବଲ୍‌ଶେଭିକ୍‌ମାନେ ଶ୍ରମିକଶ୍ରେଣୀର ବିପ୍ଳବୀ ପାର୍ଟିର
ଦୃଢ଼ ସଂଗଠନକୁ (ଶକ୍ତିଶାଳୀ, ବିକଶିତ ଓ ନବ ବଳୀୟାନ କରିବା ତ
ଦୂରର କଥା) ରକ୍ଷା କରିବାକୁ ବି ଅକ୍ଷମ ହୋଇଥାନ୍ତେ ଯଦି ସେମାନେ
କଠୋର ସଂଗ୍ରାମ ଦ୍ୱାରା ଏଇ ମତକୁ ସାବ୍ୟସ୍ତ କରି ନ ଥାନ୍ତେ ଯେ ସଂଗ୍ରାମର
ଆଇନ ସଙ୍ଗତ ଓ ଆଇନ-ବହିର୍ଗତ ରୂପଗୁଡ଼ିକୁ ଏକତ୍ରିତ କରିବା

---

* ବ୍ୟକ୍ତି ବିଶେଷ କ୍ଷେତ୍ରରେ ଯାହା ପ୍ରଯୁଜ୍ୟ, ରାଜନୀତି ଓ ପାର୍ଟି
କ୍ଷେତ୍ରରେ ମଧ୍ୟ ପ୍ରୟୋଜନୀୟ ଅଦଳ ବଦଳ କରି—ତାର ପ୍ରୟୋଗ ସମ୍ଭବ ।
ଯେ ଭୁଲ କରେ ନାହିଁ ସେ ବିଜ୍ଞ ନୁହେ । ସେଭଳି ଲୋକ ନାହାନ୍ତି,
ମିଳିବା ସମ୍ଭବ ନୁହେଁ । ସେ କେବଳ ପ୍ରାଜ୍ଞ ଯେ ଗୁରୁତର ଭୁଲ କରେ
ନାହିଁ ଏବଂ ଭୁଲକୁ କିପରି ସହଜରେ ଓ ଚଞ୍ଚଳ ସଂଶୋଧନ କରିବାକୁ ହୁଏ
ତାହା ଜାଣେ ।

ଅପରିହାର୍ଯ୍ୟ, ଚରମ ପ୍ରତିକ୍ରିୟାଶୀଳ ପାର୍ଲାମେଣ୍ଟ ପର୍ଯ୍ୟନ୍ତ ଓ ପ୍ରତିକ୍ରିୟାଶୀଳ ଆଇନ ଦ୍ୱାରା ଶୃଙ୍ଖଳିତ ଅନ୍ୟାନ୍ୟ ପ୍ରତିଷ୍ଠାନରେ ମଧ୍ୟ) ସାହାଯ୍ୟ ଦାନ ସହିତ ଇତ୍ୟାଦି) ଅଂଶ ଗ୍ରହଣ କରିବା ଏକାନ୍ତ ଅପରିହାର୍ଯ୍ୟ ।

୧୯୧୮ରେ ଦଳ ଭାଙ୍ଗିବା ପର୍ଯ୍ୟନ୍ତ ଅବସ୍ଥା ଗଲା ନାହିଁ । ସେତେବେଳେ "ବାମପନ୍ଥୀ" କମ୍ୟୁନିଷ୍ଟମାନେ ଆମ ପାର୍ଟି ଭିତରେ ଗୋଟିଏ ଅଲଗା ଗୋଷ୍ଠୀ ବା "ଉପଦଳ" ମାତ୍ର ଗଢ଼ିଥିଲେ ଏବଂ ତାହା ମଧ୍ୟ ବେଶି ଦିନ ପାଇଁ ନୁହେଁ । ସେହି ବର୍ଷ ୧୯୧୮ ମସିହାରେ, "ବାମପନ୍ଥୀ କମ୍ୟୁନିଜମ"ର ସବୁଠାରୁ ବିଶିଷ୍ଟ ପ୍ରତିନିଧିଗଣ, ଉଦାହରଣ ସ୍ୱରୂପ, କମରେଡ୍ ରାଡ଼େକ୍ ଓ ବୁଖାରିନ୍ ପ୍ରକାଶ୍ୟରେ ସେମାନଙ୍କ ଭୁଲ ସ୍ୱୀକାର କଲେ । ସେମାନଙ୍କର ପ୍ରଥମେ ମନେ ହୋଇଥିଲା ଯେ ବ୍ରେଷ୍ଟ-ଲିଟଭସ୍କ ସନ୍ଧି ହେଉଛି ସାମ୍ରାଜ୍ୟବାଦ ସହିତ ଏକ ଆପୋଷ ବୁଝାମଣା, ଯାହା ନୀତିଗତ ଭାବେ ଗ୍ରହଣୀୟ ନୁହେଁ ଓ ବିପ୍ଳବୀ ଶ୍ରମିକଶ୍ରେଣୀର ପାର୍ଟି ପକ୍ଷରେ କ୍ଷତିକାରକ । ଏହି ସନ୍ଧି ସାମ୍ରାଜ୍ୟବାଦୀମାନଙ୍କ ସଙ୍ଗେ ନିଶ୍ଚୟ ଆପୋଷ, କିନ୍ତୁ ସେହି ଅବସ୍ଥାରେ ଏହି ଆପୋଷ ଥିଲା ଅନିବାର୍ଯ୍ୟ ।

ଆଜି ଯେତେବେଳେ ବ୍ରେଷ୍ଟ-ଲିଟଭସ୍କ ଚୁକ୍ତି ସମ୍ପାଦନରେ ଆମର କୌଶଳ ସମ୍ପର୍କରେ ବିଦ୍ରୂପ ସମାଲୋଚନା ଶୁଣିବାକୁ ମୁଁ ପାଏ, ଯେପରି "ସୋସିଅଲିଷ୍ଟ ରେଭଲ୍ୟୁସନାରୀମାନେ" କରିଥାନ୍ତି, ଅଥବା ମୋ ସହିତ କଥାବାର୍ତ୍ତାରେ କମରେଡ୍ ଲାନସ୍‌ବରିଙ୍କ କଥା ଶୁଣେ – "ଆମ୍ଭମାନଙ୍କ ବ୍ରିଟିଶ ଟ୍ରେଡ୍‌ୟୁନିଅନ ନେତାମାନେ କହନ୍ତି ଯେ ବଲଶେଭିକ୍‌ମାନଙ୍କ ପକ୍ଷରେ ଆପୋଷ ଯଦି ସମର୍ଥନ ଯୋଗ୍ୟ ହୁଏ ତେବେ ଆମ୍ଭମାନଙ୍କ ଆପୋଷକୁ ବି ସମର୍ଥନ କରିବାକୁ ହେବ"—ସେତେବେଳେ ମୁଁ ସାଧାରଣତଃ ଉତ୍ତର ଦିଏ ପ୍ରଥମେ ଗୋଟିଏ ସରଳ ଓ "ଜନପ୍ରିୟ" ଦୃଷ୍ଟାନ୍ତ ଦେଇ :—

କଳ୍ପନା କର ଯେ ତମର ମଟର ଗାଡ଼ିଟି ସଶସ୍ତ୍ର ଡକାୟତଦଳ ଦ୍ୱାରା ଆକ୍ରାନ୍ତ ହୋଇଛି । ତମେ ତମର ଟଙ୍କା, ପାସପୋର୍ଟ, ପିସ୍ତଲ ଓ ଗାଡ଼ିଟି

ତାଙ୍କ ହାତରେ ଦେଲ । ତା ବଦଳରେ ତମେ ଦସ୍ୟୁମାନଙ୍କର ଆକ୍ରମଣାତ୍ମକ ସାହଚର୍ଯ୍ୟରୁ ରକ୍ଷା ପାଇଲ । ନିଃସନ୍ଦେହ ଭାବେ ଏହା ନେହାତ ଗୋଟାଏ ଆପୋଷ । "ଆଦାନ ପ୍ରଦାନ" ବିଷୟ (ଟଙ୍କା, ଅସ୍ତ୍ର, ଗାଡ଼ି ତମକୁ "ମୁଁ ଦେଲି," ଶାନ୍ତିରେ ବୁଲିଯିବାର ସୁଯୋଗଟି "ତୁମେ ମତେ ଦିଅ") । ଏପରି ଏକ ବୁଦ୍ଧି ସମ୍ପନ୍ନ ଲୋକ ପାଇବା କଷ୍ଟକର ଯେ କହିବ ଏ ପ୍ରକାର ଆପୋଷ "ନୀତିଗତ ଭାବେ ଅସମର୍ଥନୀୟ", ଯେ ଜୋର ଦେଇ କହିପାରିବ ଏଠାରେ ଆପୋଷକାରୀ ହେଲା ଦସ୍ୟୁମାନଙ୍କର ଏକ ସହଯୋଗୀ । (ଯଦିଓ ଦୁର୍ବୃତ୍ତମାନେ ସେହି ମଟର ଓ ପିସ୍ତଲ ଅନ୍ୟ ଡକାୟତି କାର୍ଯ୍ୟରେ ଲଗାଇ ପାରନ୍ତି) ଜର୍ମାନ ସାମ୍ରାଜ୍ୟବାଦର ଡକାୟତମାନଙ୍କ ସହିତ ଆମ୍ଭମାନଙ୍କର ଆପୋଷ ଥିଲା ଏହି ପ୍ରକାରର ।

କିନ୍ତୁ ଯେତେବେଳେ ରୁଷିଆରେ ମେନଶେଭିକ ଓ ସୋସିଆଲିଷ୍ଟ ବିପ୍ଳବୀମାନେ (ଶଭ୍ଲ୍ୟସନାଗ୍ରମାନେ) ଜର୍ମାନୀରେ ଶିଡ଼ମ୍ୟାନଙ୍କ ଅନୁଚର ( ବହୁ ପରିମାଣରେ କାଉଟସ୍କି ପନ୍ଥୀମାନେ), ଅଷ୍ଟ୍ରିଆରେ ଅଟୋ । ବାଉଆର ଏବଂ ଫ୍ରିଡ଼ରିଖ ଆଡ଼ଲର୍ ( ରେନର ଓ କମ୍ପାନି କଥା ନ କହିଲେ ଭଲ) ଫ୍ରାନ୍ସରେ ରେନଡ଼େଲ ଓ ଲଙ୍ଗେ କମ୍ପାନୀ, ଇଂଲଣ୍ଡରେ ଫେବିୟାନ ଅଥବା "ସ୍ୱାଧୀନ" ଗୋଷ୍ଠୀ ଓ ଲେବର ଦଳ—ନିଜ ଦେଶର ବିପ୍ଳବୀ ଶ୍ରମିକମାନଙ୍କ ବିରୁଦ୍ଧରେ ୧୯୧୪—୧୮ ବା ୧୯୧୮—୨୦ ମସିହାରେ କେତେବେଳେ ନିଜ ଦେଶର ବୁର୍ଜୁଆ ଦସ୍ୟୁଦଳ ଓ ଆଉ କେତେବେଳେ "ମିତ୍ରପକ୍ଷୀୟ" ବୁର୍ଜୁଆ ଦସ୍ୟୁଦଳ ସାଙ୍ଗରେ ଆପୋଷ କରି ବସନ୍ତି, ସେତେବେଳେ ଏହି ସବୁ ଭଦ୍ରମହୋଦୟଗଣ ନିଶ୍ଚୟ ଡକାୟତିରେ ସହଯୋଗିତା କରିଥିଲେ ବୋଲି ଧରିନେବାକୁ ହେବ ।

ଏଠାରେ ସିଦ୍ଧାନ୍ତଟି ଖୁବ୍ ସ୍ପଷ୍ଟ : "ନୀତିଗତ ଭାବେ" ଆପୋଷ ପ୍ରତ୍ୟାଖ୍ୟାନ କରିବା, ସାଧାରଣ ନିୟମ ହିସାବରେ ଯେ କୌଣସି ପ୍ରକାରର ଆପୋଷର ସମ୍ଭାବନାକୁ ଅଗ୍ରାହ୍ୟ କରିବା ଶିଶୁସୁଲଭ ଚପଳତା ଛଡ଼ା ଆଉ କିଛି ନୁହେଁ, ଏହାକୁ କୌଣସି ଗୁରୁତ୍ୱ ଦେବା କଷ୍ଟକର । ବିପ୍ଳବୀ ଶ୍ରମିକ

ଶ୍ରେଣୀର ନାମରେ ନିଜକୁ ବିଜ୍ଞାପିତ କରିବାକୁ ଇଚ୍ଛୁକ ଯେ କୌଣସି ନେତାଙ୍କୁ ଜାଣିବାକୁ ହେବ ଯେ, କିପରି ଠିକ ସେହି ବାସ୍ତବ ଘଟଣା ଗୁଡ଼ିକୁ ବାଛି ନେବାକୁ ହେବ ଯେଉଁଠାରେ ଆପୋଷ ଅସମର୍ଥନୀୟ, ଯେଉଁଠାରେ ଆପୋଷ ସୁବିଧାବାଦ ଓ ବିଶ୍ୱାସଘାତକତାର ଅଭିବ୍ୟକ୍ତି ମାତ୍ର । ଏ ଉପାୟରେ ସେହିସବୁ ନିର୍ଦ୍ଦିଷ୍ଟ ଆପୋଷ ବିରୁଦ୍ଧରେ ସମାଲୋଚନାର ସମସ୍ତ ଶକ୍ତି, ନିର୍ମମଭାବେ ମୁଖା ଖୋଲିଦେବାର ସମସ୍ତ ତୀକ୍ଷ୍ଣତା ଓ କ୍ଷମାହୀନ ସଂଗ୍ରାମ ଚଳାଇବାକୁ ହେବ ତାହା ଜାଣିବାକୁ ପଡ଼ିବ । ଆଉ "ସାଧାରଣ ଆପୋଷ" ସମ୍ପର୍କରେ ଯୁକ୍ତିର ଜାଲ ବୁଣି ଯେଉଁସବୁ ଅତି ଅଭିଜ୍ଞ ଓ ତଥାକଥିତ "କର୍ମତତ୍ପର" ସୋସାଲିଷ୍ଟ ଓ ପାର୍ଲାମେଣ୍ଟାରୀ ମିଶନାରୀମାନେ ନିଜର ପ୍ରବୃତ୍ତିକୁ ଏଡ଼ାଇଦେବାକୁ ବା ସେଥିରୁ ଖସିଯିବାକୁ ଚାହାଁନ୍ତି ସେମାନଙ୍କୁ ତାହା କରିବା ପାଇଁ କଦାପି ସୁଯୋଗ ଦେବାକୁ ହେବ ନାହିଁ । ଯେଉଁ ବିଶ୍ୱାସଘାତକତା ସେମାନେ କରିଛନ୍ତି, ଯେପରି ଆପୋଷରେ ସେମାନେ ପ୍ରବୃତ୍ତ ହୋଇଛନ୍ତି, ଯାହାକି ପ୍ରକୃତରେ ହେଉଛି ନିକୃଷ୍ଟତମ ସୁବିଧାବାଦ, ବିଶ୍ୱାସଘାତକତା ଓ ବେଇମାନୀ ନାମ ଦେଇ ବିଶ୍ୱାସଘାତକତାର ଅପରାଧରୁ ମୁକୁଳି ଯିବା ପାଇଁ ବ୍ରିଟିଶ ଟ୍ରେଡ୍ ୟୁନିୟନ ଗୁଡ଼ିକର ତଥାକଥିତ "ନେତୃବୃନ୍ଦ" ନେତା ଓ ସାଙ୍ଗକୁ ଫେବିଆନ ସମିତି ଓ "ଇଣ୍ଡିପେଣ୍ଡେଣ୍ଟ" ଲେବର ପାର୍ଟିର ନେତୃବୃନ୍ଦ ଠିକ୍ ଏଇ ଉପାୟ ଅବଲମ୍ବନ କରୁଛନ୍ତି ।

ବିଭିନ୍ନ ରକମର ଆପୋଷ ରହିଛି । ପ୍ରତିଟି ଆପୋଷ ବା ପ୍ରତ୍ୟେକ ଧରଣ ଆପୋଷର ଯଥାଯଥ ପରିସ୍ଥିତି ଓ ନିର୍ଦ୍ଦିଷ୍ଟ ଅବସ୍ଥାକୁ ବିଶ୍ଳେଷଣ କରିବାର କ୍ଷମତା ରହିବା ଦରକାର । ଯେଉଁ ଲୋକ ଦସ୍ୟୁମାନଙ୍କୁ ଟଙ୍କା ବା ବନ୍ଧୁକ ଦିଏ, ଯାହାଫଳରେ ସେମାନେ କମ କ୍ଷତି ସାଧନ କରନ୍ତି, ଯାହାଫଳରେ ସେମାନଙ୍କୁ ଧରିବା ଓ ଦଣ୍ଡ ବିଧାନ କରିବା ସହଜ ହୁଏ, ଏବଂ ଯେଉଁ ଲୋକ ଦସ୍ୟୁମାନଙ୍କୁ ଟଙ୍କା ଓ ଅସ୍ତ୍ର ଦେଇ ଲୁଣ୍ଠିତ ଧନରେ ଭାଗ ନେଉଛି— ଏ ଦୁଇଟାକୁ ଅଲଗା ଅଲଗା କରି ଦେଖି ଶିଖିବା ଦରକାର । ଏହି ପିଲାଳିଆ

ସରଳ ଦୃଷ୍ଟାନ୍ତ ଭଳି ରାଜନୀତିରେ ସବୁବେଳେ ଏପରି ନିର୍ଦ୍ଧାରଣ ସହଜ ହୁଏ ନାହିଁ । କିନ୍ତୁ ଯେଉଁ ବ୍ୟକ୍ତି ଶ୍ରମିକମାନଙ୍କ ପାଇଁ ଏପରି ବ୍ୟବସ୍ଥାପତ୍ର ଉଦ୍‌ଭାବନ କରିବାରେ ଉଦ୍ୟତ ଯାହା ଦ୍ୱାରା ଜୀବନର ସବୁ ସମସ୍ୟାକୁ ପୂର୍ବକଳ୍ପିତ ବ୍ୟବସ୍ଥା ଦ୍ୱାରା ସମାଧାନ କରି ହୋଇପାରିବ, ଯିଏ ପ୍ରତିଶ୍ରୁତି ଦିଏ ଯେ ତାଙ୍କର ଶ୍ରମିକ ଶ୍ରେଣୀର ରାଜନୀତିକୁ କଦାପି କଠିନ ବା ଜଟିଳ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିବ ନାହିଁ, ସେ ବ୍ୟକ୍ତି କେବଳ ଜଣେ ଭଣ୍ଡବୈଦ୍ୟ ।

କଦର୍ଥ କରିବାର ଅବକାଶ ଯେପରି ନରହେ ସେଥିଲାଗି ମୁଁ ଆପୋଷର ବାସ୍ତବ ଅବସ୍ଥାର ବିଶ୍ଳେଷଣ ସମ୍ପର୍କରେ କେତୋଟି ମୌଳିକ ସର୍ତ୍ତର ରୂପରେଖ ଅତି ସଂକ୍ଷେପରେ ହେଲେ ବି, ଅଙ୍କନ କରିବାର ଚେଷ୍ଟା କରିବି ।

ବ୍ରେଷ୍ଟ-ଲିଟଭସ୍କ ସନ୍ଧିପତ୍ର ସ୍ୱାକ୍ଷର କରି ଜର୍ମାନୀ ସାମ୍ରାଜ୍ୟବାଦୀଙ୍କ ସହିତ ଯେଉଁ ପାର୍ଟି ଆପୋଷ କରିଥିଲା, ସେଇ ପାର୍ଟି ୧୯୧୪ ମସିହା ଶେଷଠାରୁ ତାହାର ଆନ୍ତର୍ଜାତିକତାବାଦକୁ କାର୍ଯ୍ୟକ୍ଷେତ୍ରରେ ପ୍ରୟୋଗକରି ଆସୁଥିଲା । ଜାର ରାଜତନ୍ତ୍ରକୁ ପରାସ୍ତ କରିବା ଲାଗି ଓ ସାମ୍ରାଜ୍ୟବାଦୀ ଦୁଇ ଦସ୍ୟୁଙ୍କ ମଧ୍ୟରେ ଯୁଦ୍ଧରେ "ପିତୃଭୂମିର ରକ୍ଷା" କଥାକୁ ନିନ୍ଦା କରିବାକୁ ପ୍ରକାଶ୍ୟରେ ଡାକ ଦେବାକୁ ପାର୍ଟି ଭୟ କରି ନ ଥିଲା । ଏଇ ପାର୍ଟିର ଆଇନସଭାର ପ୍ରତିନିଧି ଗଣ ବୁର୍ଜୁଆ ସରକାରର ମନ୍ତ୍ରିତ୍ୱ ଗାଦି ବଦଳରେ ସାଇବେରିଆ ଯିବା ରାସ୍ତାକୁ ବାଛି ନେଇଥିଲେ । ଯେଉଁ ବିପ୍ଳବ ଜାରତନ୍ତ୍ରକୁ ଉଚ୍ଛେଦ କରି ଗଣତାନ୍ତ୍ରିକ ପ୍ରଜାତନ୍ତ୍ର ପ୍ରତିଷ୍ଠା କଲା, ସେହି ବିପ୍ଳବ ଏହି ପାର୍ଟିକୁ ଏକ ନୂତନ ଅଗ୍ନିପରୀକ୍ଷାର ସମ୍ମୁଖୀନ କରାଇଦେଲା :- ପାର୍ଟି ସେତେବେଳେ "ନିଜର" ସାମ୍ରାଜ୍ୟବାଦୀମାନଙ୍କ ସଙ୍ଗେ କୌଣସି ରାଜିନାମା ନକରି, ସେମାନଙ୍କର ଉଚ୍ଛେଦ ଆନ୍ଦୋଳନରେ ଲାଗି ପଡ଼ିଲା ଓ ତାହାକୁ କାର୍ଯ୍ୟକାରୀ କଲା । ରାଷ୍ଟ୍ରୀୟ କ୍ଷମତା ହାତକୁ ନେଇ, ଏଇପାର୍ଟି ଜମିଦାର ବା ପୁଞ୍ଜିପତି ସମ୍ପତ୍ତିର ଚିହ୍ନମାତ୍ର ରଖିଲା ନାହିଁ । ସାମ୍ରାଜ୍ୟ-ବାଦୀଙ୍କ ଗୁପ୍ତ ଚୁକ୍ତିଗୁଡ଼ିକୁ ପ୍ରକାଶ କରି ଓ ତାକୁ ଅସ୍ୱୀକାର କରି, ଏଇ

ପାର୍ଟି ସମଗ୍ର ଜାତି ପାଖରେ ଶାନ୍ତି ପ୍ରସ୍ତାବ ବାଢ଼ିଥିଲା ଏବଂ ବ୍ରିଟିଶ ଓ ଫରାସୀ ସାମ୍ରାଜ୍ୟବାଦୀମାନେ ଶାନ୍ତି ପ୍ରସ୍ତାବକୁ ବ୍ୟର୍ଥ କରି ଦେବା ପରେ, ଜର୍ମାନୀ ଓ ଅନ୍ୟାନ୍ୟଦେଶରେ ବିପ୍ଳବକୁ ତ୍ୱରାନ୍ୱିତ କରିବା ଲାଗି ବଲଶେଭିକମାନେ ମଣିଷର ସାଧ୍ୟ ସବୁ କିଛି କରିବା ପରେ, ଏହି ପାର୍ଟି ବ୍ରେଷ୍ଟ-ଲିଟଭସ୍କ ଦସ୍ୟୁମାନଙ୍କ ଜୋର୍-ଜବରଦସ୍ତି ଆଗରେ ନତସ୍ୱୀକାର କରିଥିଲା। ଏପରି ଏକ ଅବସ୍ଥାରେ, ଏପରି ଏକ ପାର୍ଟି ଏପରି ଆପୋଷ ଯେ କଲା ସେଥିରେ ଭୁଲ କିଛି ନାହିଁ, ସେ କଥା ପ୍ରତ୍ୟେକ ଦିନ ପ୍ରତ୍ୟେକଙ୍କ ପାଖରେ ସ୍ପଷ୍ଟତର ଓ ଅଧିକ ପ୍ରତୀୟମାନ ହୋଇ ଉଠୁଛି।

ଅନ୍ୟ ଦିଗରେ, ଯୁରୋପରେ ମେନଶେଭିକ ଓ ସୋସିଆଲିଷ୍ଟ-ରିଭଲ୍ୟୁସନାରୀମାନେ (୧୯୧୪-୨୦ରେ ସାରାଦୁନିଆରେ ଦ୍ୱିତୀୟ ଆନ୍ତର୍ଜାତିକର ସବୁ ନେତାମାନଙ୍କ ଭଳି) ବିଶ୍ୱାସଘାତକତା କରି ସେମାନଙ୍କର ଯାତ୍ରା ଆରମ୍ଭ କଲେ, ପ୍ରତ୍ୟକ୍ଷ ଅବା ପରୋକ୍ଷରେ "ପିତୃଭୂମିର ସୁରକ୍ଷା" ନାମରେ ସେମାନେ ସେମାନଙ୍କର ନିଜର ଲୁଣ୍ଠନକାରୀ, ବୁର୍ଜୁଆମାନଙ୍କୁ ରକ୍ଷା କଲେ। ସେମାନଙ୍କ ନିଜ ଦେଶର ବୁର୍ଜୁଆ ଶ୍ରେଣୀ ସହିତ ମିଳିତ ହୋଇ, ନିଜର ବୁର୍ଜୁଆମାନଙ୍କ ସହିତ ହାତ ମିଳେଇ ନିଜ ଦେଶର ବିପ୍ଳବୀ ଶ୍ରମିକ ଶ୍ରେଣୀ ବିପକ୍ଷରେ ଲଢ଼ାଇ ଚଳାଇ ସେମାନେ ବିଶ୍ୱାସଘାତକତାର ରାସ୍ତାରେ ଆଗେଇ ଗଲେ। ପ୍ରଥମେ ରୁଷିଆରେ କେରେନସ୍କି ଓ କ୍ୟାଡେଟମାନଙ୍କ ସହିତ, ପରେ କୋଲ୍‌ଚକ୍ ଓ ଡେନିକିନ୍‌ଙ୍କ ସହିତ ସେମାନଙ୍କର ମିଳନ, (ବିଦେଶରେ ସେମାନଙ୍କର ଜ୍ଞାତିକୁଟୁମ୍ବ ସେଠାକାର ବୁର୍ଜୁଆମାନଙ୍କ ସଙ୍ଗରେ ମେଣ୍ଟକଲାପରି) ଶ୍ରମିକମାନଙ୍କ ବିରୁଦ୍ଧରେ ବୁର୍ଜୁଆମାନଙ୍କ ସହିତ ଯୋଗଦାନ ଛଡ଼ା ଆଉ କିଛି ନୁହେଁ।

ମୂଳରୁ ଶେଷଯାଏ ସାମ୍ରାଜ୍ୟବାଦୀ ଦସ୍ୟୁମାନଙ୍କ ସହିତ ସେମାନଙ୍କର ଏହି ଆପୋଷର ଅସଲ କଥା ହେଲା ସାମ୍ରାଜ୍ୟବାଦୀ ଦସ୍ୟୁବୃତ୍ତିର ସହଯୋଗୀ ହୋଇ ରହିବା।

[ ୫ମ ପରିଚ୍ଛେଦ ]

# ଜର୍ମାନୀରେ "ବାମପନ୍ଥୀ" କମ୍ୟୁନିଜମ : ନେତୃବୃନ୍ଦ-ପାର୍ଟି-ଶ୍ରେଣୀ-ଜନଗଣ

ଯେଉଁ ଜର୍ମାନ କମ୍ୟୁନିଷ୍ଟଙ୍କ କଥା ବର୍ତ୍ତମାନ ଆମକୁ ଆଲୋଚନା କରିବାକୁ ହେବ ସେମାନେ ନିଜକୁ "ବାମପନ୍ଥୀ" ବୋଲି କହନ୍ତି ନାହିଁ କିନ୍ତୁ, ମୁଁ ଯେତେଦୂର ଜାଣେ ସେମାନେ ନିଜକୁ "ନୀତିଗତ ଭାବେ ବିରୋଧୀ ପକ୍ଷ" ବୋଲି କହନ୍ତି। ପରବର୍ତ୍ତୀ ବକ୍ତବ୍ୟରୁ ଦେଖାଯିବ ଯେ "ବାମପନ୍ଥୀର ଶିଶୁସୁଲଭ ବିଶୃଙ୍ଖଳା"ର ସମସ୍ତ ଲକ୍ଷଣ ସେମାନଙ୍କଠାରେ ବିଦ୍ୟମାନ।

ଏହି ବିରୋଧୀ ଦୃଷ୍ଟିଭଙ୍ଗୀରୁ ଲିଖିତ ଓ "ଫ୍ରାଙ୍କଫର୍ଟ ଅନ ମେନର ସ୍ଥାନୀୟ ଗ୍ରୁପ" ଦ୍ୱାରା ପ୍ରକାଶିତ, ଜର୍ମାନୀ କମ୍ୟୁନିଷ୍ଟ ପାର୍ଟିରେ ବିଭେଦ (ସ୍ପାର୍ଟାକସ୍ ଲିଗ) ଶୀର୍ଷକ ପୁସ୍ତିକାଟି ଏହି ବିରୋଧୀ ମତାମତର ସାରାଂଶକୁ ଅତି ବଳିଷ୍ଠ, ପ୍ରାଞ୍ଜଳ, ପରିଷ୍କାର ଓ ସଂକ୍ଷିପ୍ତ ଭାବେ ଲିପିବଦ୍ଧ କରିଛି। ମତାମତର ସାରାଂଶକୁ ବୁଝିବାରେ ସାମାନ୍ୟ କେତୋଟି ଉଦ୍ଧୃତାଂଶ ପାଠକଙ୍କ ପକ୍ଷରେ ଯଥେଷ୍ଟ ହେବ।

"କମ୍ୟୁନିଷ୍ଟ ପାର୍ଟି ହେଉଛି ସବୁଠାରୁ ଦୃଢ଼ସଙ୍କଳ୍ପ ଶ୍ରେଣୀ ସଂଗ୍ରାମର ପାର୍ଟି...................।

"......... ରାଜନୈତିକ ଭାବେ, (ପୁଞ୍ଜିବାଦ ଓ ସମାଜବାଦ ମଝିରେ) ମଧ୍ୟବର୍ତ୍ତୀ ରୂପାନ୍ତର ସମୟ ହେଉଛି ସର୍ବହରାର ଏକନାୟକତ୍ୱର ପର୍ଯ୍ୟାୟ............"।

"ପ୍ରଶ୍ନ ଉଠେ : ଏହି ଅଧିନାୟକତ୍ୱର ବାହନ କଏ ହେବ; କମ୍ୟୁନିଷ୍ଟ ପାର୍ଟି ନା ଶ୍ରମିକ ଶ୍ରେଣୀ ?......ନୀତିଗତ ଭାବେ ଆମେ କାହା ପାଇଁ ଚେଷ୍ଟା କରିବା—ପାର୍ଟିର ଅଧିନାୟକତ୍ୱ ପାଇଁ ନା ଶ୍ରମିକ ଶ୍ରେଣୀର ଅଧିନାୟକତ୍ୱ ପାଇଁ ?

( ଉପରେ ରେଖାଙ୍କିତ ସବୁ ଶବ୍ଦ ମୂଳ ଲେଖାରେ ବିଦ୍ୟମାନ ) ।

ଅଧିକନ୍ତୁ, ପୁସ୍ତିକାର ଲେଖକ ଜର୍ମାନ କମ୍ୟୁନିଷ୍ଟ ପାର୍ଟିର "ସ୍ୱି. ସ୍ୱି." ମାନଙ୍କରେ ଅଭିଯୋଗ ବାଢ଼ିଛନ୍ତି ଯେ, ସେମାନେ କୁଆଡ଼େ ଇଣ୍ଡିପେଣ୍ଡେଣ୍ଟ ସୋସାଲ ଡେମୋକ୍ରାଟିକ ପାର୍ଟି ସହିତ ମେଣ୍ଟ ଗଢ଼ିବାକୁ ଚେଷ୍ଟା କରୁଛନ୍ତି, ଏବଂ ପାର୍ଲିମେଣ୍ଟାରି ପଦ୍ଧତି ସମେତ ସଂଗ୍ରାମର ସବୁପ୍ରକାର ରାଜନୈତିକ ରୂପକୁ ନୀତିଗତ ଦୃଷ୍ଟିରୁ ସ୍ୱୀକାର କରିବାର ପ୍ରଶ୍ନ" ଉତ୍‌ଥାପନ କରୁଛନ୍ତି ଆଉ ଏହା ପଛରେ ସେମାନଙ୍କର ଏକମାତ୍ର ଉଦ୍ଦେଶ୍ୟ ହେଉଛି "ଏହି ଇଣ୍ଡିପେଣ୍ଡେଣ୍ଟ" ମାନଙ୍କ ସହିତ ମେଣ୍ଟ ଗଢ଼ିବା ଲାଗି ସେମାନଙ୍କର ପ୍ରକୃତ ଓ ଅସଲ ପ୍ରୟାସକୁ ପ୍ରଚ୍ଛନ୍ନ କରି ରଖିବା । ତାପରେ ପୁସ୍ତିକାରେ ଲେଖା ଅଛି :

"ବିରୋଧୀ ପକ୍ଷ ଅନ୍ୟ ରାସ୍ତା ବାଛି ନେଇଛନ୍ତି । ସେମାନଙ୍କ ମତରେ କମ୍ୟୁନିଷ୍ଟ ପାର୍ଟିର ଶାସନ ଓ ପାର୍ଟିର ଅଧିନାୟକତ୍ୱ କେବଳ ରଣ କୌଶଳର ପ୍ରଶ୍ନ । ଯାହା ହେଉନା କାହିଁକି, କମ୍ୟୁନିଷ୍ଟ ପାର୍ଟିର ଶାସନ ହେଉଛି ସବୁପ୍ରକାର ପାର୍ଟି ଶାସନର ଚୂଡ଼ାନ୍ତ ରୂପ । ନୀତିଗତ ଦୃଷ୍ଟିରୁ, ଶ୍ରମିକ ଶ୍ରେଣୀର ଏକନାୟକତ୍ୱ ପାଇଁ ଆମ୍ଭମାନଙ୍କୁ ଚେଷ୍ଟା କରିବାକୁ ପଡ଼ିବ । ପାର୍ଟିର ସମସ୍ତ କାର୍ଯ୍ୟକ୍ରମ, ତାର ସଙ୍ଗଠନ, ସଂଗ୍ରାମର ସବୁ ରୂପ, ତାର ରଣନୀତି ଓ ରଣକୌଶଳ ସବୁ କାର୍ଯ୍ୟ ଏହି ଲକ୍ଷ୍ୟ ହାସଲ ପାଇଁ ଉଦ୍ଦିଷ୍ଟ ହେବ । ସେହି ଅନୁସାରେ, ଅନ୍ୟ ଦଳମାନଙ୍କ ସଙ୍ଗେ ସମସ୍ତ ଆପୋଷ, ଇତସ୍ତତଃ ଓ ରାଜନୀତି

ସଗରୁ ଅକାମୀ ହୋଇ ପଡ଼ିଥିବା ସମସ୍ତ ପ୍ରକାର ପାର୍ଲମେଣ୍ଟାରୀ ସଂଗ୍ରାମ ପଦ୍ଧତିର ପୁନଃପ୍ରତିଷ୍ଠାର ପ୍ରତ୍ୟାବର୍ତ୍ତନର ସମସ୍ତ ପ୍ରୟାସ ସମସ୍ତ କାଇଦା ଓ ସାଲିସ ପ୍ରତ୍ୟେକ ନୀତିକୁ ଦୃଢ଼ତାର ସହିତ ଆମକୁ ପ୍ରତ୍ୟାଖ୍ୟାନ କରିବାକୁ ହେବ ।.........ବୈପ୍ଳବିକ ସଂଗ୍ରାମର ଶ୍ରମିକ-ଶ୍ରେଣୀ ପଦ୍ଧତି ଉପରେ ବିଶେଷ ଭାବେ ଜୋର ଦେବାକୁ ହେବ କମ୍ୟୁନିଷ୍ଟ ପାର୍ଟି ନେତୃତ୍ୱରେ ପରିଚାଳିତ ବିପ୍ଳବୀ ସଂଗ୍ରାମରେ ଯେଉଁ ବ୍ୟାପକତମ ଗୋଷ୍ଠୀ ଓ ସ୍ତର ଯୋଗଦେବେ ସେମାନଙ୍କୁ ଦଳ ଭିତରକୁ ଟାଣି ଆଣିବା ଲାଗି ବିସ୍ତୃତତମ ଭିତ୍ତି ଉପରେ ଓ ବିଶାଳତମ ପରିଧି ସହିତ ସଂଗଠନର ନୂତନ ନୂତନ ରୂପ ସୃଷ୍ଟି କରିବାକୁ ହେବ । କାରଖାନା ସଂଗଠନ ଉପରେ ପ୍ରତିଷ୍ଠିତ ଶ୍ରମିକ ୟୁନିଅନ ସମସ୍ତ ବିପ୍ଳବୀ ଉପାଦାନର ସମାବେଶ କେନ୍ଦ୍ର ହେବ । "ଟ୍ରେଡ଼ ୟୁନିଅନ ତ୍ୟାଗ କର" ଏଇ ସ୍ଲୋଗାନକୁ ଅନୁସରଣ କରୁଥିବା ଯେତେ ଶ୍ରମିକ ସେମାନଙ୍କୁ ଏହାର ଭିତରକୁ ଆଣିବାକୁ ହେବ, ସଂଗ୍ରାମୀ ଶ୍ରମିକମାନଙ୍କୁ ବ୍ୟାପକତମ ଯୁଦ୍ଧ କାଇଦାରେ ସଂଗଠିତ କରିବାକୁ ହେବ । ଶ୍ରେଣୀ ସଂଗ୍ରାମ, ସୋଭିଏତ୍ ପଦ୍ଧତି ଏବଂ ଏକନାୟକତ୍ୱର ସ୍ୱୀକୃତି ଏହି ସଂଗଠନ ଭିତରେ ସାମିଲ ହେବା ପାଇଁ ଯଥେଷ୍ଟ । ଶ୍ରମିକ ସଂଗଠନର ବାହାରେ ଅବସ୍ଥିତ କମ୍ୟୁନିଷ୍ଟ ପାର୍ଟିର କାମ ହେବ ସଂଗ୍ରାମୀ ଜନତାର ସମସ୍ତ ଭବିଷ୍ୟତ ରାଜନୈତିକ ଶିକ୍ଷା ପ୍ରତି ଦୃଷ୍ଟି ଦେବା ଏବଂ ଲଢ଼େଇ ଭିତରେ ସେମାନଙ୍କର ରାଜନୈତିକ ଦୃଷ୍ଟି କୋଣକୁ ପରିବର୍ତ୍ତନ କରିବା ।"......

"ଫଳରେ, ଦୁଇଟି କମ୍ୟୁନିଷ୍ଟ ପାର୍ଟି ଆଜି ପରସ୍ପର ବିରୁଦ୍ଧରେ ଠିଆ ହୋଇଛନ୍ତି ।

"ଗୋଟିଏ ହେଲା ନେତାମାନଙ୍କ ପାର୍ଟି, ଯାହାର ଚେଷ୍ଟା ଉପରୁ ଲଢ଼ାଇକୁ ସଂଗଠିତ ଓ ଚାଳିତ କରିବା, ଆପୋଷ ଓ ପାର୍ଲମେଣ୍ଟାରୀ ପଦ୍ଧତିର ଆଶ୍ରୟ ନେଇ ଏପରି ଅବସ୍ଥା ସୃଷ୍ଟି କରିବା ଯା'ଫଳରେ

ଏକ ନିର୍ବାଚିତ ସରକାର ଭିତରେ ପ୍ରବେଶ କରିବା ସମ୍ଭବ ହେବ, ଯେଉଁ ସରକାର ହାତରେ ଅଧିନାୟକତ୍ୱ ନ୍ୟସ୍ତ ରହିବ ।

ଅନେକ ହେଲା ଗଣପାର୍ଟି ଯାହା ପ୍ରତ୍ୟାଶା କରେ ତାକୁ ବିପ୍ଳବୀ ଲଢ଼ାଇର ଅଭ୍ୟୁତ୍ଥାନ—ଯିଏ ସଂଗ୍ରାମର ଗୋଟିଏ ମାତ୍ର କାଇଦା ଜାଣେ ଓ ପ୍ରୟୋଗ କରେ, ନିୟମତାନ୍ତ୍ରିକ ବା ସୁବିଧାବାଦୀ ସମସ୍ତ କୌଶଳ ବର୍ଜନ କରି ଏହି କାଇଦାକୁ ସ୍ପଷ୍ଟ ଭାବେ ଲକ୍ଷ୍ୟ ହାସଲ ଦିଗରେ ପରିଚାଳିତ କରେ । ଏକମାତ୍ର କାଇଦା ହେଲା ବିନା ସର୍ତ୍ତରେ ବୁର୍ଜୁଆ ଶ୍ରେଣୀର ଉଚ୍ଛେଦ, ଲକ୍ଷ୍ୟ ହେଲା ସମାଜବାଦର ସଫଳତା କରି ଶ୍ରମିକ ଶ୍ରେଣୀର ଏକନାୟକତ୍ୱ ପ୍ରତିଷ୍ଠା ।............

"..........ସେଠାରେ ନେତାମାନଙ୍କର ଅଧିନାୟକତ୍ୱ, ଆଉ ଏଠାରେ ଜନଗଣଙ୍କ ଅଧିନାୟକତ୍ୱ । ଏହା ହେବ ଆମର ସ୍ଲୋଗାନ" ।

ଜର୍ମାନ କମ୍ୟୁନିଷ୍ଟ ପାର୍ଟି ଭିତରେଥିବା ବିରୋଧୀ ପକ୍ଷ ମତାମତର ଏହା ହେଉଛି ସାରମର୍ମ ।

୧୯୦୩ ପରେ ବଲଶେଭିକବାଦର ବିକାଶରେ ସଚେତନଭାବେ ଅଂଶ ଗ୍ରହଣ କରିଥିବା କିମ୍ବା ସେଇ ବିକାଶଧାରାକୁ ମନ ଦେଇ ଲକ୍ଷ୍ୟ କରିଥିବା ଯେ କୌଣସି ବଲଶେଭିକ ଏଇ ଯୁକ୍ତି ଗୁଡ଼ିକୁ ପଢ଼ିବା ମାତ୍ରେ କହି ଉଠିବ, "କି ପୁରୁଣା, ପରିଚିତ ଜଞ୍ଜାଳ ! କି 'ବାମପନ୍ଥୀ' ଚପଳତା !"

ତେବେ ଏଇ ଯୁକ୍ତି ଗୁଡ଼ିକୁ ଆଉ ଟିକିଏ ଗଭୀର ଭାବରେ ପରୀକ୍ଷା କରିବା ଦରକାର ।

"ପାର୍ଟିର ଅଧିନାୟକତ୍ୱ ନା ଶ୍ରେଣୀର ଅଧିନାୟକତ୍ୱ, ନେତା ମାନଙ୍କ ଅଧିନାୟକତ୍ୱ ( ପାର୍ଟି ) ନା ଜନଗଣଙ୍କ ଅଧିନାୟକତ୍ୱ (ପାର୍ଟି)?"

ଏଇ ପ୍ରଶ୍ନକୁ ଏପରି ଭାବେ ଉପସ୍ଥାପିତ କରିବା ଚରମ ଓ କଳ୍ପନାତୀତ ମାନସିକ ବିଭ୍ରାନ୍ତିର ପରିଚାୟକ । ସମ୍ପୂର୍ଣ୍ଣ ଅସାଧାରଣ କିଛି ଗୋଟାଏ ଉଦ୍‌ଭାବନ କରିବା ଲାଗି ଏଇ ବ୍ୟକ୍ତିମାନେ ସର୍ବଦା ପ୍ରୟାସ କରନ୍ତି ଏବଂ ଚତୁର ହେବାକୁ ଚେଷ୍ଟା କରି ସେମାନେ ସବୁବେଳେ ହାସ୍ୟାସ୍ପଦ ହୁଅନ୍ତି । ସମସ୍ତେ ଜାଣନ୍ତି ଯେ ଜନସାଧାରଣ ନାନା ଶ୍ରେଣୀରେ ବିଭକ୍ତ; ସାମାଜିକ ଉତ୍ପାଦନ ବ୍ୟବସ୍ଥାରେ ଭିନ୍ନଭିନ୍ନ ଶ୍ରେଣୀର ସ୍ଥିତି ଜନିତ ପାର୍ଥକ୍ୟର ନିର୍ଭରରେ ସାଧାରଣଭାବେ ବିପୁଳ ସଂଖ୍ୟାଗରିଷ୍ଠ ଜନସାଧାରଣଙ୍କୁ ଯଦି ସାମାଜିକ ଉତ୍ପାଦନରେ ନିର୍ଦ୍ଦିଷ୍ଟ ସ୍ଥିତି ସଂପନ୍ନ ଗୋଷ୍ଠୀମାନଙ୍କ ସହିତ ବିରୁଦ୍ଧାତ୍ମକ ତୁଳନା କରାଯାଏ, ତାହାହେଲେ କେବଳ ଜନସାଧାରଣଙ୍କ ସହିତ ଶ୍ରେଣୀମାନଙ୍କର ବିରୁଦ୍ଧାତ୍ମକ ତୁଳନା କରାଯାଇପାରେ । ସାଧାରଣତଃ, ଅଧିକାଂଶ କ୍ଷେତ୍ରରେ, ଅନ୍ତତଃ ଆଧୁନିକ ସଭ୍ୟଦେଶରେ, ଶ୍ରେଣୀଗୁଡ଼ିକର ନେତୃତ୍ୱ ରାଜନୈତିକ ଦଳମାନେ ଦିଅନ୍ତି; ସାଧାରଣ ନିୟମ ଅନୁସାରେ ରାଜନୈତିକ ଦଳମାନଙ୍କୁ କମ ବେଶି ସ୍ଥାୟୀଗୋଷ୍ଠୀମାନେ ପରିଚାଳିତ କରନ୍ତି । ସର୍ବାଧିକ କର୍ତ୍ତୃତ୍ୱଶାଳୀ, ପ୍ରଭାବଶାଳୀ ଓ ଅଭିଜ୍ଞ ସଭ୍ୟମାନଙ୍କୁ ନେଇ ଏହି ଗୋଷ୍ଠୀଗଠିତ ଓ ସେହିପରି ଲୋକେ ହିଁ ସର୍ବାଧିକ ଦାୟିତ୍ୱପୂର୍ଣ୍ଣ ପଦକୁ ନିର୍ବାଚିତ ହୁଅନ୍ତି, ଓ ସେମାନଙ୍କୁ ନେତା କୁହାଯାଏ । ଏହା ସବୁ ହେଲା ପ୍ରାଥମିକ କଥା । ଏହା ସବୁ ହେଲା ସହଜ ଓ ପରିଷ୍କାର । କିନ୍ତୁ ଏହା ସ୍ଥାନରେ ଅସଂଲଗ୍ନ ପ୍ରଳାପ ବା କାହିଁକି ? କାହିଁକି ବା ବାକ୍ୟଚାତୁରୀର ନୂତନ ମାୟା ଜାଲ ? ଗୋଟିଏ ଦିଗରେ ଏଇ ଲୋକମାନେ କଠିନ ଅବସ୍ଥା ଭିତରେ ପଡ଼ି ଯାହା ମନେ ହୁଏ, ବିଭ୍ରାନ୍ତ ହୋଇ ପଡ଼ିଛନ୍ତି, ଯେତେବେଳେ ଆଇନ-ସ୍ୱୀକୃତ ଅବସ୍ଥାରୁ ହଠାତ୍ ପାର୍ଟିକୁ ଆସିବାକୁ ପଡ଼ୁଛି ବେଆଇନ ଅବସ୍ଥିତି ଭିତରକୁ ଆନ୍ଧ ତାଫଳରେ ନେତା, ପାର୍ଟି ଓ ଶ୍ରେଣୀର ଅଭ୍ୟସ୍ତ ସ୍ୱାଭାବିକ ଓ ସହଜ ସଂପର୍କ ବିପର୍ଯ୍ୟସ୍ତ ହୋଇଛି । ଅନ୍ୟାନ୍ୟ ୟୁରୋପୀୟ ଦେଶଗୁଡ଼ିକ ପରି ଜର୍ମାନୀରେ, ଜନଗଣ ଆଇନସଙ୍ଗତ ଅବସ୍ଥା ସହିତ ଅତି-ମାତ୍ରାରେ ଅଭ୍ୟସ୍ତ ହୋଇପଡ଼ିଥିଲେ । ଆଉ ମଧ୍ୟ ନିୟମିତ ପାର୍ଟି କଂଗ୍ରେସରେ "ନେତାମାନଙ୍କ"ର ଅବାଧ ନୀତିସଙ୍ଗତ ନିର୍ବାଚନ ଏବଂ ପାର୍ଲାମେଣ୍ଟାରି

ନିର୍ବାଚନ, ଜନସଭା, ସମ୍ବାଦପତ୍ର, ଟ୍ରେଡ୍‌ୟୁନିଅନ ଓ ଅନ୍ୟାନ୍ୟ ପ୍ରତିଷ୍ଠାନର ମନୋଭାବ ଇତ୍ୟାଦି ଜରିଆରେ ପାର୍ଟି ଗୁଡ଼ିକର ଶ୍ରେଣୀ ବନ୍ୟାସକୁ ପରୀକ୍ଷା କରିବାର ଅତି ସୁବିଧାଜନକ ପଦ୍ଧତି ସହିତ ମଧ୍ୟ ଅଭ୍ୟସ୍ତ ହୋଇ ପଡ଼ିଥିଲେ। କିନ୍ତୁ ବିପ୍ଳବର ଝଡ଼ସମ ବିକାଶ ଓ ଗୃହଯୁଦ୍ଧର ପରିଣତି ଫଳରେ, ଯେତେବେଳେ ଆଗବେଳର ଅଭ୍ୟସ୍ତ ପଦ୍ଧତି ବଦଳରେ ବୈଧତାରୁ ଅବୈଧ ଅବସ୍ଥାକୁ ଦ୍ରୁତ ବେଗରେ ଗତିକରିବାକୁ ପଡ଼ିଲା, ଯେତେବେଳେ ଦୁଇ ଅବସ୍ଥାର ସମିଶ୍ରଣ ଆଉ "ଅସୁବିଧାଜନକ", "ଅଗଣତାନ୍ତ୍ରିକ" ଉପାୟରେ "ନେତୃ ଗୋଷ୍ଠୀର" ନିର୍ବାଚନ, ଗଠନ ଓ ସଂରକ୍ଷଣ ପ୍ରୟୋଜନ ହେଲା,—ସେତେବେଳେ ଅନେକଙ୍କ ମୁଣ୍ଡ ଘୂରିଗଲା. ଅସ୍ୱାଭାବିକ ବେପରୁଆ କଥା ସେମାନେ ଭାବି ବସିଲେ। ବୈଧତାର ପରମ୍ପରା ଓ ପରିବେଶ ଯେଉଁଠି ବିଶେଷ ସୁବିଧାଜନକ ଓ ସ୍ଥାୟୀ ସେଇପରି ଏକ ଶ୍ରେଷ୍ଠ ଦେଶରେ ଜନ୍ମଲାଭ କରିବାର ଦୁର୍ଭାଗ୍ୟ ଯୋଗୁଁ ହୁଏତ ଡଚ କମ୍ୟୁନିଷ୍ଟ ପାର୍ଟିର କେତେକ ସଭ୍ୟ ଯେଉଁମାନେ କି ବୈଧ ଅବସ୍ଥାରୁ ଅବୈଧ ଅବସ୍ଥାକୁ କିପରି ପରିବର୍ତ୍ତନ ଘଟିଯାଏ ତାହା କେବେ ଦେଖି ନାହାନ୍ତି, ସେମାନେ ବିଭ୍ରାନ୍ତ ହୋଇ ପଡିଲେ। ନିଜର ବୁଦ୍ଧି ହରାଇ ବସିଲେ ଓ ଏଇସବୁ ଉଦ୍ଭଟ ଉଦ୍‌ଭାବନାରେ ସହାୟକ ହେଲେ।

ଅନ୍ୟ ଦିଗରେ ଏ କ୍ଷେତ୍ରରେ ଆଜିକାର ଦୁଇଟି "ସୌଖୀନ" ଶବ୍ଦ —"ଜନଗଣ" ଓ "ନେତୃବୃନ୍ଦ"ର ଅତି ବିଚାରହୀନ ଓ ଅସଂଲଗ୍ନ ବ୍ୟବହାର ଆମେ ଦେଖିବାକୁ ପାଉ। ଏଇ ବ୍ୟକ୍ତିମାନେ "ନେତୃବୃନ୍ଦ"ଙ୍କ ବିରୁଦ୍ଧରେ ହୋଇଥିବା ବହୁ ସମାଲୋଚନାକୁ ଶୁଣି ଆସିଛନ୍ତି ଓ ତାକୁ ମୁଖସ୍ଥ କରି ରଖିଛନ୍ତି ଯେଉଁଥିରେ "ଜନଗଣଙ୍କେ" ସହିତ "ନେତୃବୃନ୍ଦଙ୍କର" ବିରୁଦ୍ଧାତ୍ମକ ତୁଳନା କରାଯାଇଥାଏ। କିନ୍ତୁ ବ୍ୟାପାରଟିକୁ ଭଲରୂପେ ଭାବି ଦେଖିବାକୁ ଓ ଏସବୁ କଥାର ତାତ୍ପର୍ଯ୍ୟ ପରିଷ୍କାର ବୁଝିବାକୁ ସେମାନେ ଅକ୍ଷମ।

ସାମ୍ରାଜ୍ୟବାଦୀ ଯୁଦ୍ଧଶେଷରେ ଓ ପରେ ପ୍ରତ୍ୟେକ ଦେଶରେ "ନେତୃବୃନ୍ଦ" ଓ "ଜନଗଣ"ଙ୍କ ମଧ୍ୟରେ ପାର୍ଥକ୍ୟ ବିଶେଷ ସ୍ପଷ୍ଟଭାବେ ପରିସ୍ଫୁଟ ହୋଇ ଉଠିଲା । ମାର୍କ୍ସ୍ ଓ ଏଙ୍ଗେଲସ୍ ୧୮୫୨ ଓ ୧୮[illegible] ମଧ୍ୟରେ ଇଂଲଣ୍ଡର ଦୃଷ୍ଟାନ୍ତ ଦେଇ ବହୁବାର ଏହି ଘଟଣାର ପ୍ରଧାନ କାରଣ ବୁଝାଇ ଥିଲେ । ସେହି ଦେଶର ଏକଚ୍ଛତ୍ରିଆ ଅବସ୍ଥାନ "ଜନତା' ଠାରୁ ଅର୍ଦ୍ଧ ପେଟିବୁର୍ଜୁଆ ଓ ସୁବିଧାବାଦୀ "ଅଭିଜାତ ଶ୍ରମିକଶ୍ରେଣୀକୁ" ପୃଥକ କରି ରଖିଥିଲା । ଏହି "ଅଭିଜାତ ଶ୍ରମିକଗୋଷ୍ଠୀର" ନେତାଗଣ ସଦା ସର୍ବଦା ବୁର୍ଜୁଆ ଦଳରେ ଯାଇ ଯୋଗଦେଉଥିଲେ ଏବଂ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ତାର ବେତନ ଭୋଗୀ ହୋଇ ରହୁଥିଲେ । ଏହି ଦଳ ଲୋକମାନଙ୍କୁ ଖୋଲା ଖୋଲି ବିଶ୍ୱାସଘାତକ ବୋଲି ଚିହ୍ନା ପକାଇଦେବା ହେତୁ ମାର୍କ୍ସ୍ ସେମାନଙ୍କର ଘୃଣାର ପାତ୍ର ହେବାର ସମ୍ମାନ ଅର୍ଜନ କରିଥିଲେ । ଆଧୁନିକ ( ବିଂଶ ଶତାବ୍ଦୀର ) ସାମ୍ରାଜ୍ୟବାଦ ସାମାନ୍ୟ କେତେକ ଅଗ୍ରସର ଦେଶମାନଙ୍କ ଲାଗି ଗୋଟିଏ ଏକଚ୍ଛତ୍ରିଆ, ସୁବିଧାଜନକ ଅବସ୍ଥା ସୃଷ୍ଟି କରିଥିଲେ ଏବଂ ଦ୍ୱିତୀୟ ଆନ୍ତର୍ଜାତିକ ମଧ୍ୟରେ ଏଥିରୁ ଉଦ୍ଭବ ହୋଇଥିଲେ ସର୍ବତ୍ର ଏକ ପ୍ରକାର ବିଶ୍ୱାସଘାତକ, ସୁବିଧାବାଦୀ ସମାଜବାଦୀ ମାର୍କା ଉଗ୍ର-ଜାତୀୟତାବାଦୀ ନେତୃବର୍ଗ—ଯେଉଁମାନେ ଅଭିଜାତ ଶ୍ରମିକ ଗୋଷ୍ଠୀ ମଧ୍ୟରୁ ସେମାନଙ୍କର ନିଜସ୍ୱ ଅଂଶର ଓ ନିଜର ବୃତ୍ତିର ସ୍ୱାର୍ଥ ସାଧନ କରୁଥିଲେ । ଏହା ଫଳରେ ସୁବିଧାବାଦୀ ପାର୍ଟିଗୁଡିକ "ଜନଗଣ"ଙ୍କଠାରୁ ଅର୍ଥାତ୍, ଶ୍ରମଜୀବୀ ଜନସାଧାରଣଙ୍କ ବ୍ୟାପକତମ ଅଂଶଠାରୁ, ଅଧିକାଂଶଙ୍କ ଠାରୁ, ସ୍ୱଳ୍ପବେତନ ଭୋଗୀ ଶ୍ରମିକଙ୍କ ଠାରୁ ବିଚ୍ଛିନ୍ନ ହୋଇ ପଡୁଥିଲେ । ଏହି ଶତ୍ରୁମାନଙ୍କ ବିରୁଦ୍ଧରେ ଲଢେଇ ନ କରି, ସୁବିଧାବାଦୀ ସମାଜବାଦୀମାର୍କା ବିଶ୍ୱାସଘାତକଙ୍କର ମୁଖା ନ ଖୋଲି, ବଦନାମ ନ କରି ଏବଂ ସେମାନଙ୍କୁ ବହିଷ୍କାର ନ କରି ବିପ୍ଳବୀ ଶ୍ରମିକଶ୍ରେଣୀର ବିଜୟ ହାସଲ କରିବା ଅସମ୍ଭବ । ଆଉ ଠିକ୍ ସେହିନୀତିକୁ ହିଁ ଅନୁସରଣ କଲା ତୃତୀୟ ଆନ୍ତର୍ଜାତିକ ।

ଏହି ପ୍ରସଙ୍ଗରେ ସାଧାରଣଭାବେ ଜନଗଣରେ ଅଧିନାୟକତ୍ୱ ଓ ନେତୃବୃନ୍ଦଙ୍କର ଅଧିନାୟକତ୍ୱ ମଧ୍ୟରେ ପାର୍ଥକ୍ୟ ସ୍ପଷ୍ଟ

କରିବା ଅତି ହାସ୍ୟାସ୍ପଦ ଅଯୌକ୍ତିକ ଓ ନିର୍ବୋଧ କାର୍ଯ୍ୟ । ଆଜିର ମୌଳିକ ଦଳର କଥା ହେଉଛି ସାଧାରଣ ବ୍ୟାପାରରେ ସାଧାରଣ ଲୋକଙ୍କ ପରି ମତାମତ ପୋଷଣ କରୁଥିବା ସେଇ ପୁରୁଣା ନେତାମାନଙ୍କ ସ୍ଥାନରେ ନୂତନ ନେତାମାନଙ୍କୁ ("ନେତାମାନଙ୍କୁ ଲୋପ କର" ସ୍ଲୋଗାନ ଅନୁସାରେ) ବାସ୍ତବରେ ଠିଆ କରାଯାଏ, ଯେଉଁମାନେ କୃତ୍ରିମ ଓ ନିର୍ବୋଧ କଥା କହନ୍ତି । ଏପରି ନେତାମାନେ ହେଉଛନ୍ତି ଜର୍ମାନୀରେ ଲାଉଫେନବର୍ଗ, ଉଲଫହାଇମ ହର୍ଣ୍ଣର, କାର୍ଲ ଶ୍ରୋଡ଼ର, ଫ୍ରେଡ଼ରିକ ୱେଣ୍ଡେଲ ଓ କାର୍ଲ ଏରଲର * ।

---

* କାର୍ଲ ଏରଲର—"ପାର୍ଟିର ଲୋପସାଧନ"—କମ୍ୟୁନିଷ୍ଟିସ୍ ଆର୍ବେଟାରଶାଇଟୁଙ୍ଗ, ହାମବର୍ଗ, ୭ ଫେବୃଆରୀ, ୧୯୨୦—୩୨ ସଂଖ୍ୟା, "ଶ୍ରମିକଶ୍ରେଣୀ ବୁର୍ଜୁଆ ଗଣତନ୍ତ୍ରକୁ ଧ୍ୱଂସ ନକରି ବୁର୍ଜୁଆ ରାଷ୍ଟ୍ର ଉଚ୍ଛେଦ କରିପାରେ ନା, ଆଉ ପାର୍ଟିଗୁଡ଼ିକୁ ଧ୍ୱଂସ ନକରି ବୁର୍ଜୁଆ ଗଣତନ୍ତ୍ରକୁ ନିର୍ମୂଳ କରାଯାଇ ପାରେ ନା"

ଲାଟିନ ଦେଶଗୁଡ଼ିକର ସିଣ୍ଡିକାଲିଷ୍ଟ ଓ ନୈରାଜ୍ୟବାଦୀମାନଙ୍କ ମଧ୍ୟରେ ଅନେକ ଉର୍ଦ୍ଧମାତ୍ର ବୁଦ୍ଧି ବିଶିଷ୍ଟ ବ୍ୟକ୍ତିଗଣ ଏଇ ଘଟଣାରୁ ଯେ ସନ୍ତୋଷ ଲାଭ କରିବେ ଯେ ଆପଣାକୁ ମାର୍କସବାଦୀ ବିଚାର କରୁଥିବା ସ୍ଥୂଳ ବୁଦ୍ଧି ସମ୍ପନ୍ନ ଜର୍ମାନମାନଙ୍କ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ଅପ୍ରାସଙ୍ଗିକ କଥା ଏତେ ଦୂର ଆଗେଇ ନେଇ ପାରନ୍ତି (ଉପରୋକ୍ତ ପତ୍ରିକାର ପ୍ରବନ୍ଧଗୁଡ଼ିକରେ କେ. ଏରଲର ଓ କେ. ହର୍ଣ୍ଣର ଅତି ସ୍ଥୂଳଭାବେ ଦେଖେଇଛନ୍ତି ଯେ ସେମାନେ ନିଜକୁ ଦୃଢ଼ ମାର୍କସବାଦୀ ମନେ କରନ୍ତି, ଯଦିଓ ଅତି ହାସ୍ୟାସ୍ପଦ ଭାବେ ସେମାନେ ଅଶ୍ରାବ୍ୟ ବାଜେ କଥା କହନ୍ତି ଓ ମାର୍କସ-ବାଦର ଅ, ଆ, କ, ଖ, ବୁଝିବାର ଅକ୍ଷମତା ପ୍ରକାଶ କରି ବସନ୍ତି) । କେବଳ ମାର୍କସବାଦ ଗ୍ରହଣ କଲେ ଭୁଲରୁ ରକ୍ଷା ମିଳେନାହିଁ । ଆମେ ରୁଷୀୟ ଲୋକେ ଏହା ଖୁବ୍ ଭଲଭାବେ ଜାଣୁ, କାହିଁକି ନା ଆମ ଦେଶରେ ମାର୍କସବାଦ ଅନେକ ସମୟରେ ଏକ "ଫେସନ"ରେ ପରିଣତ ହୋଇଛି ।

ପ୍ରଶ୍ନଟିକୁ "ଆଭ୍ୟନ୍ତରୀଣ ଗଣ୍ଡଗୋଳ" କରିବା ଲାଗି ଏବେଳଯରଙ୍କ ଚେଷ୍ଟା, ପୁଣି ଘୋଷଣା କରିବା ଯେ ରାଜନୈତିକ ଦଳମାନେ ସାଧାରଣ ଭାବେ ଅନାବଶ୍ୟକ ଓ "ବୁର୍ଜୁଆ"—ଏସବୁ କଥା ଏପରି ଉଦ୍ଭଟ ଯେ ଏହା ଠାରୁ ଦୂରେଇ ରହିବା ଛଡ଼ା ଅନ୍ୟ ଉପାୟ ନାହିଁ । ଏଥିରୁ ଏହି ସତ୍ୟଟା ଦୃଢ଼ ହୋଇ ଉଠୁଛି ଯେ ଗୋଟିଏ ସାମାନ୍ୟ ଭୁଲକୁ କମ୍ୟୁନିଷ୍ଟମାନଙ୍କର ଭୁଲରେ ସବଦା ପରିଣତ କରାଯାଇ ପରେ ଯଦି ସେହି ଭୁଲକୁ ବାରମ୍ବାର ଅନୁସରଣ କରାଯାଏ, ଯଦି ତାର ଗଭୀର ଯଥାର୍ଥତାକୁ ଲାଗିପଡ଼ି ବାହାର କରାଯାଏ ଏବଂ ଯଦି ତାକୁ ତାର "ଯୁକ୍ତିଯୁକ୍ତ ସିଦ୍ଧାନ୍ତ" ଦିଗରେ ଆଗେଇ ନିଆ ହୁଏ ।

ପାର୍ଟି ନୀତି ଓ ପାର୍ଟି ଶୃଙ୍ଖଳାକୁ ବର୍ଜନ କରିବା ହେଲା ବିରୋଧୀ ଗୋଷ୍ଠୀର ଚରମ ପରିଣତି । ଆଉ ଏଇଟା ହେଲା ବୁର୍ଜୁଆମାନଙ୍କ ସ୍ୱାର୍ଥଲାଗି ସର୍ବହରା ଶ୍ରେଣୀକୁ ସମ୍ପୂର୍ଣ୍ଣ ନିରସ୍ତ୍ର କରିବା ସଙ୍ଗେ ସମାନ, ଏଇଟା ହେଲା ପେଟି-ବୁର୍ଜୁଆ ବିକ୍ଷିପ୍ତ ଚିନ୍ତା, ଅସ୍ଥିରମତି ଏବଂ ନିରବଚ୍ଛିନ୍ନ ଉଦ୍ୟମ, ଐକ୍ୟ ଓ ସଂଗଠିତ କର୍ମଲାଗି ଅକ୍ଷମତାର ନିଦର୍ଶନ, ଯାହାକୁ ପ୍ରଶ୍ରୟ ଦେଲେ ପ୍ରତ୍ୟେକ ସର୍ବହରା ବୈପ୍ଳବିକ ଆନ୍ଦୋଳନ ଅନିବାର୍ଯ୍ୟ ଭାବେ ଧ୍ୱଂସ ପାଇବାକୁ ବାଧ୍ୟ । ସାମ୍ୟବାଦ ଦିଗରୁ ଦେଖିଲେ, ପାର୍ଟି ନୀତି ବର୍ଜନର ଅର୍ଥ ହେଲା (ଜର୍ମାନୀରେ) ପୁଂଜିବାଦ ଭୁଷୁଡ଼ି ପଡ଼ିବାର ପୂର୍ବ ମୁହୂର୍ତ୍ତରୁ ଏକ ଲମ୍ଫରେ ସାମ୍ୟବାଦର ପ୍ରାଥମିକ ବା ମାଧ୍ୟମିକ ନୁହେଁ, ଏକଦମ ଉଚ୍ଚତମ ପର୍ଯ୍ୟାୟରେ ପହଞ୍ଚିବାର ଚେଷ୍ଟା । ରୁଷ ଦେଶରେ ଆମ୍ଭେମାନେ (ବୁର୍ଜୁଆ ଉଚ୍ଛେଦର ପରବର୍ତ୍ତୀ ତୃତୀୟ ବର୍ଷରେ) ପୁଂଜିବାଦରୁ ସମାଜବାଦ ଆଡ଼କୁ, ଅର୍ଥାତ୍ ସାମ୍ୟବାଦର ନିମ୍ନତମ ପର୍ଯ୍ୟାୟ ଆଡ଼କୁ ପ୍ରଥମ ପଦକ୍ଷେପ ଗ୍ରହଣ କରୁଛୁ । ଶ୍ରେଣୀ ସମୂହ ରହିଛନ୍ତି, ଓ ସର୍ବହରା ଶ୍ରେଣୀର କ୍ଷମତା ଦଖଲର ପରବର୍ତ୍ତୀ ବହୁବର୍ଷ ଧରିମଧ୍ୟ ସବୁଠି ସେମାନେ ରହିବେ । ହୁଏତ ଇଂଲଣ୍ଡରେ, ଯେଉଁଠାରେ କୃଷକ ଶ୍ରେଣୀ ନାହିଁ, (କିନ୍ତୁ କ୍ଷୁଦ୍ର ମାଲିକ ଅଛନ୍ତି), ସେଠାରେ ଏହି ସମସ୍ତ

ସଂକ୍ଷିପ୍ତ ହୋଇପାରେ । ଶ୍ରେଣୀ ଉଚ୍ଛେଦ ଅର୍ଥ କେବଳ ଜମିଦାର ଓ ପୁଂଜିପତି ବିତାଡ଼ନ ନୁହେଁ—ଅପେକ୍ଷାକୃତ ସହଜରେ ଆମେ ଏହା କରି ପାରିବୁ—ତାର ଅର୍ଥ ହେଲା ଶ୍ରେଷ୍ଠ ପଣ୍ୟ ଉତ୍ପାଦକମାନଙ୍କର ମଧ୍ୟ ଅବସାନ; ଆଉ ଏମାନଙ୍କୁ ବିତାଡ଼ନ କରିବା, ଧ୍ୱଂସ କରିବା ସମ୍ଭବ ନୁହେଁ; ଏମାନଙ୍କ ସହିତ ଆମକୁ ମିଳିମିଶି ଚଳିବାକୁ ହେବ; ଏମାନଙ୍କୁ ପୁନର୍ଗଠିତ କରିବାକୁ ହେବ ( କରିବା ଅବଶ୍ୟ କର୍ତ୍ତବ୍ୟ ) ଓ ପୁନଃଶିକ୍ଷିତ କରିବାକୁ ହେବ କେବଳ ଲଗାତର, ଧୀର, ସତର୍କ ସାଂଗଠନିକ କାର୍ଯ୍ୟ କରିଥିରେ । ଏମାନେ ସର୍ବହରାଙ୍କୁ ଯେଉଁ ବୁର୍ଜୁଆ ଆବହାଓ୍ୱା ଦେଇ ଘେରିଆଡୁ ଘେରି ରଖିଛନ୍ତି, ସେଇ ଆବାହାଓ୍ୱା ସର୍ବ-ହରାକୁ ଅନ୍ତ୍ରନ୍ତ କରୁଛି ଓ ଦୂଷିତ କରୁଛି, ସର୍ବହରା ବାରମ୍ବାର ଯେଉଁ ବୁର୍ଜୁଆ ମେରୁଦଣ୍ଡହୀନତା, ଅନୈକ୍ୟ, ବ୍ୟକ୍ତିବାଦର ଶିକାର ହେଉଛି ଏବଂ ପର ମୁହୂର୍ତ୍ତରେ ଅତି ଉଲ୍ଲାସ ଓ ଅବସାଦ ଅବସ୍ଥାରେ ପଡ଼ୁଛି । ସର୍ବହରାର ରାଜନୈତିକ ପାର୍ଟି ଭିତରେ ସେଥିଲାଗି ଦରକାର କଠୋରତମ କେନ୍ଦ୍ରୀକରଣ ଓ ଶୃଙ୍ଖଳା । ତାହାହେଲେ ଏସବୁକୁ ପ୍ରତିହତ କରାଯାଇ ପାରିବ, ଏବଂ ସର୍ବହରାର ସଂଗଠନୀ ଭୂମିକାକୁ (ଏଇଟା ତାର ପ୍ରଧାନ ଭୂମିକା) ସଠିକ ଭାବେ ଓ ସାର୍ଥକ ଭାବେ ଜୟ ପଥରେ ପ୍ରୟୋଗ କରାଯାଇ ପାରିବ । ସର୍ବହରାର ଏକଧିନାୟକତ୍ୱ ହେଲା ପୁରୁଣା ସମାଜର ଶକ୍ତି ଓ ଐତିହ୍ୟ ବିରୁଦ୍ଧରେ ନିରନ୍ତର ସଂଗ୍ରାମ—ରକ୍ତାକ୍ତ ବା ରକ୍ତପାତ ବର୍ଜିତ, ହିଂସାତ୍ମକ ବା ଶାନ୍ତିପୂର୍ଣ୍ଣ, ସାମରିକ ବା ଆର୍ଥିକ, ଶିକ୍ଷା ଓ ଶାସନ ସମ୍ବନ୍ଧୀ । ଲକ୍ଷ ଲକ୍ଷ, କୋଟି କୋଟି ଲୋକଙ୍କର ଅଭ୍ୟାସର ଜୋର ଏକ ଭୟାବହ ଶକ୍ତି । ସଂଗ୍ରାମରେ ଶକ୍ତ ଲୌହଦୃଢ଼ ଏକ ପାର୍ଟି ବିନା, ନିର୍ଦ୍ଦିଷ୍ଟ ଶ୍ରେଣୀ ଭିତରେ ଯାହା କିଛି ସତ ତାର ଆସ୍ଥା ଭାଜନ ପାର୍ଟି ବିନା, ଜନତାର ମନୋଭାବ ଲକ୍ଷ୍ୟ କରିବାକୁ ଓ ତାକୁ ପ୍ରଭାବାନ୍ୱିତ କରିବାକୁ ସକ୍ଷମ ଥିବା ପାର୍ଟି ବିନା—ଏଭଳି ଏକ ସଂଗ୍ରାମ ଚଳାଇବା ଅସମ୍ଭବ । ଲକ୍ଷ ଲକ୍ଷ ଶ୍ରେଷ୍ଠ ମାଲିକଙ୍କୁ "ପରାସ୍ତ" କରିବା ତୁଳନାରେ କେନ୍ଦ୍ରୀଭୂତ ବଡବୁର୍ଜୁଆଙ୍କୁ ହରାଇବା ହଜାର ଗୁଣରେ ସହଜ, ଅଥଚ

ଏଇମାନେ, ସେମାନଙ୍କର ସାଧାରଣ, ଦୈନନ୍ଦିନ, ଅଦୃଶ୍ୟ, ଅସ୍ପୃଶ୍ୟ ଧୃଷ୍ଟି ଓ ନୀରନ୍ଧ୍ରୀନ କାର୍ଯ୍ୟକଳାପ କରିଆରେ ଠିକ ସେହି ଫଳାଫଳ ଅଣି ଦିଅନ୍ତି ଯାହା ବୁର୍ଜୁଆମାନଙ୍କ ପ୍ରୟୋଜନରେ ଲାଗେ ଓ ଯାହା ବୁର୍ଜୁଆ-ମାନଙ୍କୁ ପୁନଃପ୍ରତିଷ୍ଠା କରିବାର ପ୍ରବଣତା ସୃଷ୍ଟି କରେ । ଯେ କେହି ସର୍ବହରା ପାର୍ଟିର ଲୌହଦୃଢ଼ ଶୃଙ୍ଖଳାକୁ ସାମାନ୍ୟ ମାତ୍ରାରେ ଦୁର୍ବଳକରେ, ସେ ପ୍ରକୃତରେ ସର୍ବହରା ବିରୁଦ୍ଧରେ ବୁର୍ଜୁଆ ଶ୍ରେଣୀକୁ ସାହାଯ୍ୟ କରେ ।

ନେତା—ପାର୍ଟି—ଶ୍ରେଣୀ — ଜନତାର ପ୍ରଶ୍ନ ସାଙ୍ଗେ ସାଙ୍ଗେ, "ପ୍ରତିକ୍ରିୟାଶୀଳ" ଟ୍ରେଡ୍ ୟୁନିଅନର କଥାଟାକୁ ଆମକୁ ଆଲୋଚନା କରିବାକୁ ହେବ । କିନ୍ତୁ ପ୍ରଥମେ ଆମ ପାର୍ଟିର ଅଭିଜ୍ଞତାର ଭିତ୍ତିରେ କେତୋଟି ଶେଷ ମନ୍ତବ୍ୟ କରିବାର ସୁଯୋଗ ମୁଁ ନେବାକୁ ଚାହେଁ । ଆମ ପାର୍ଟିରେ "ନେତାମାନଙ୍କ ଏକାଧିପତ୍ୟ" ଉପରେ ସଦାସର୍ବଦା ଆକ୍ରମଣ ହୋଇ ଆସିଛି । ମୋର ମନେ ପଡ଼ୁଛି ପ୍ରଥମେ ଏଇ ଆକ୍ରମଣ କଥା ୧୮୯୫ରେ ମୁଁ ଶୁଣିଲି, ଯେତେବେଳେ ଆନୁଷ୍ଠାନିକ ଭାବେ ପାର୍ଟିର ଅସ୍ତିତ୍ୱ ନଥିଲା । କିନ୍ତୁ ସେତେବେଳେ ସେଣ୍ଟ ପିଟରସ୍‌ବର୍ଗରେ ଗୋଟିଏ କେନ୍ଦ୍ରୀୟ ଗ୍ରୁପ୍ ଗଠିତ ହେଉଥିଲା ଯିଏ ଜିଲା ଗ୍ରୁପଗୁଡ଼ିକର ନେତୃତ୍ୱ ନେବ ବୋଲି ସ୍ଥିର ହୋଇଥିଲା । ଆମ ପାର୍ଟିର ନବମ କଂଗ୍ରେସରେ (୧୯୨୦ ଅପ୍ରେଲ) ଗୋଟାଏ ଗ୍ରୁପ ବିରୋଧୀପକ୍ଷ "ନେତାମାନଙ୍କ ଏକାଧିପତ୍ୟ", "କର୍ତ୍ତୃତ୍ୱତନ୍ତ୍ର" ଆଦିର ସମାଲୋଚନା କରୁଥିଲା । ସୁତରାଂ ଜର୍ମାନମାନଙ୍କ "ବାମପନ୍ଥୀ କମ୍ୟୁନିଜମ"ର "ଶିଶୁ ସୁଲଭ ବିଶୃଙ୍ଖଳା"ରେ ଏପରି କିଛି ବିସ୍ମୟକର ନୂତନ, ଉଦ୍ଭାବନ ଜନକ ନ ଥିଲା । ଏହା ଏପରି କିଛି ମାରାତ୍ମକ ବ୍ୟାଧିନୁହେଁ, ବରଂ ଏପରି ଅସୁସ୍ଥତା ପରେ ପରେ ଶରୀର ସାଧାରଣତଃ ବେଶି ଶକ୍ତ ହୁଏ । କିନ୍ତୁ ଆମ କ୍ଷେତ୍ରରେ ଅପର ପକ୍ଷରେ ବୈଧସଙ୍ଗତ ଓ ବୈଧବିରୋଧୀ କାର୍ଯ୍ୟର ଦ୍ରୁତ ଅଦଳବଦଳ ଯୋଗୁଁ ଆମର ସେନାପତି ମଣ୍ଡଳୀକୁ ଯୁଦ୍ଧ ଚାଳକମାନଙ୍କୁ, ଅର୍ଥାତ୍ ନେତାମାନଙ୍କୁ "ଲୁଚେଇ

ରଖିବା'' ବିଶେଷ ଗୋପନୀୟତା ଭିତରେ ସେମାନଙ୍କୁ ଯୋଡ଼େଇ ରଖିବ ଏକାନ୍ତ ପ୍ରୟୋଜନ ହୋଇଥିଲ । ଫଳରେ ମଝିରେ ମଝିରେ ଅତି ବିପଜ୍ଜନକ ଘଟଣାର ଉତ୍ପତ୍ତି ହେଉଥିଲ । ସବୁଠାରୁ ବିପଜ୍ଜନକ ଘଟଣା ଘଟିଥିଲ ୧୯୧୬ରେ । ସେତେବେଳେ ମାଲିନୋଭସ୍କି ନାମକ ଜଣେ ଗୁଇନ୍ଦା ପ୍ରବେଶକ ବଲଶେଭିକ କେନ୍ଦ୍ର କମିଟି ଭିତରେ ପଶିଯାଇଥିଲ । ଆମ୍ଭ-ମାନଙ୍କର ଅସଂଖ୍ୟ ସର୍ବଶ୍ରେଷ୍ଠ ଅନୁରକ୍ତ କମରେଡ଼ମାନଙ୍କୁ ଏଇ ବ୍ୟକ୍ତି ଧରେଇ ଦେଇଥିଲ, ସେମାନଙ୍କୁ ସଶ୍ରମ ଜେଲ୍‌ଦଣ୍ଡ ଦିଆଇ ଦେଇଥିଲ ଓ ଅନେକଙ୍କୁ ମୃତ୍ୟୁ ମୁଖକୁ ଠେଲି ଦେଇଥିଲ । ଆଇନ ସଙ୍ଗତ ଓ ବେଆଇନୀ କାର୍ଯ୍ୟ ମଧ୍ୟରେ ଆମର ଗୋଟାଏ ସଠିକ ଯୋଗସୂତ୍ର ଥିବାଫଳରେ ସେ ଆଉ ବେଶି କିଛି କ୍ଷତିକରି ପାରିନଥିଲ । ପାର୍ଟିର କେନ୍ଦ୍ର କମିଟିର ସଦସ୍ୟ ଓ ଡୁମାରେ ପ୍ରତିନିଧି ହିସେବେ, ମାଲିନୋଭସ୍କି, ଆମର ଆସ୍ଥାଭାଜନ ହେବା ଲାଗି ଆଇନ ସଙ୍ଗତ ଦୈନିକ କାଗଜ ପ୍ରକାଶ କରିବାକୁ ବାଧ୍ୟ ହୋଇଥିଲ । ଜାରତନ୍ତ୍ରର ଅବସ୍ଥା ଭିତରେ ଏଇ ସବୁ କାଗଜ ମେନଶେଭିକମାନଙ୍କୁ ସୁବିଧାବାଦ ବିରୁଦ୍ଧରେ ଲଢ଼ିବାକୁ ବଲଶେଭିକବାଦର ମୂଳନୀତିକୁ ଆବଶ୍ୟକୀୟ ଛଦ୍ମବେଶରେ ପ୍ରଚାର କରିବାକୁ ସମର୍ଥ ହୋଇଥିଲ । ମାଲି-ନୋଭସ୍କି ଗୋଟାଏ ପକ୍ଷରେ ଶ୍ରେଷ୍ଠ ବଲଶେଭିକମାନଙ୍କୁ ଦଳ ଦଳ କରି ସଶ୍ରମ କାରାଦଣ୍ଡ ବା ମୃତ୍ୟୁ ମୁହଁକୁ ପଠାଉ ଥିଲ । ଅଥଚ ଅପର ପକ୍ଷରେ ବୈଧ ପତ୍ର ପତ୍ରିକା ମାଧ୍ୟମରେ ଶତ ସହସ୍ର ନୂତନ ବଲଶେଭିକମାନଙ୍କୁ ଶିକ୍ଷା ଦେବାରେ ସାହାଯ୍ୟ କରିବାକୁ ବାଧ୍ୟ ହେଉଥିଲ । ଯେଉଁ ସବୁ ଜର୍ମାନ କମରେଡ଼ମାନଙ୍କୁ ( ବ୍ରିଟିଶ, ଆମେରିକାନ, ଫରାସୀ ବା ଇଟାଲୀ କମ୍ରେଡ଼ମାନଙ୍କୁ ) ପ୍ରତିକ୍ରିୟାଶୀଳ ଟ୍ରେଡ୍‌ୟୁନିଅନ ମଧ୍ୟରେ ବୈପ୍ଳବିକ କାର୍ଯ୍ୟ କିପରି ପରିଚାଳନା କରିବାକୁ ହୁଏ ତାହା ଶିକ୍ଷା କରିବାକୁ ପଡ଼ୁଛି, ସେମାନେ ଏଇ ଘଟଣା ପ୍ରତି ଗଭୀର ଧ୍ୟାନ ଦେଲେ ଭଲ ହୁଅନ୍ତା । *

---

* ମାଲିନୋଭସ୍କି ଜର୍ମାନୀରେ ଯୁଦ୍ଧବନ୍ଦୀ ଥିଲ । ବଲଶେଭିକ ରୁଷିଆକୁ ଫେରିବା ମାତ୍ରେ ତାର ବିଚାର ହେଲା । ଶ୍ରମିକମାନେ ତାକୁ ଗୁଳିକରି ମାରି

ସବୁଠାରୁ ଅଗ୍ରସର ଦେଶମାନଙ୍କ ସମେତ ଅନେକ ଗୁଡ଼ିଏ ଦେଶରେ, ରୁଷିଆମାନେ ଆଜି ନିଃସନ୍ଦେହ ଭାବେ କମ୍ୟୁନିଷ୍ଟ ପାର୍ଟି ଗୁଡ଼ିକ ଭିତରକୁ ଗୋଇନ୍ଦା ପ୍ରବେଶକ ପଠାଉଛନ୍ତି ଓ ପଠାଇବେ ମଧ୍ୟ । ଏହି ବିପଦ ସଙ୍ଗେ ଲଢ଼ିବାର ଅନ୍ୟତମ ଉପାୟ ହେଲା ଆଇନ ସଙ୍ଗତ ଓ ବେଆଇନୀ କାର୍ଯ୍ୟର ସୁଦକ୍ଷ ସଂଯୋଗ ।

---

ଦେଲେ । ଗୋଟିଏ ଗୋଇନ୍ଦା ପ୍ରବେଶକ ଯେ ଆମ ପାର୍ଟିର କେନ୍ଦ୍ର କମିଟିର ସଭ୍ୟ ହୋଇଥିଲା ଏହି ଭୁଲ ଲାଗି ମେନଶେଭିକମାନେ ଆମକୁ ତୀବ୍ର ନିନ୍ଦା କରନ୍ତି, କିନ୍ତୁ କେରେନସ୍କି ଅମଳରେ ଆମ୍ଭେମାନେ ଯେତେବେଳେ ଡୁମାର ବାଚସ୍ପତି ରୋଜିୟାଙ୍କୋର ଗ୍ରେପ୍ତାର ଓ ବିଚାର ଦାବୀକଲୁ—କାରଣ ଏହି ବ୍ୟକ୍ତି ଯୁଦ୍ଧ ପୂର୍ବରୁ ଜାଣି ଥିଲା ଯେ ମାଲିନୋଭସ୍କି ଗୋଟାଏ ଗୋଇନ୍ଦା ପ୍ରବେଶକ ଥିଲା ଓ ଟ୍ରୁଡୋଭିକ ଓ ଡୁମାର ଶ୍ରମିକମାନଙ୍କୁ ଏ ଖବର ଜଣାଇ ନ ଥିଲା, ସେତେବେଳେ କେରେନସ୍କି ସରକାରଭୁକ୍ତ ମେନଶେଭିକ ବା ସୋସାଲିଷ୍ଟ-ବିପ୍ଳବୀମାନେ କେହି ଆମର ଦାବୀକୁ ସମର୍ଥନ କଲେ ନାହିଁ । ରୋଜିୟାଙ୍କୋକୁ ଛାଡ଼ି ଦିଆଗଲା, ଆଉ ସେ ବିନା ବାଧାରେ ଡେନିକିନଙ୍କ ସହିତ ଯୋଗଦେଇ ଚାଲିଗଲା ।

[ ୬ଷ୍ଠ ପରିଚ୍ଛେଦ ]

# ପ୍ରତିକ୍ରିୟାଶୀଳ ଟ୍ରେଡ଼୍ ୟୁନିଅନ ଭିତରେ ବିପ୍ଳବୀମାନେ କାମ କରିବା ଉଚିତ କି ?

ଜର୍ମାନ "ବାମପନ୍ଥୀ"ମାନେ ବିଚାର କରନ୍ତି ଯେ ଯେତେଦୂର ସେମାନେ ସଂପୃକ୍ତ ଏଇ ପ୍ରଶ୍ନର ଏକମାତ୍ର ଉତ୍ତର ହେଉଛି ଏକ ସର୍ତ୍ତହୀନ ନାସ୍ତିବାଣୀ ! ସେମାନଙ୍କ ମତରେ, "ପ୍ରତିକ୍ରିୟାଶୀଳ" "ପ୍ରତିବିପ୍ଳବୀ" ଟ୍ରେଡ଼ୟୁନିଅନ ବିରୁଦ୍ଧରେ ଗାଳିଗୁଲଜ ଓ କ୍ରୁଦ୍ଧ ଚିତ୍କାର ( ବିଶେଷ "କଠିନତା" ଓ ବିଶେଷ ନିର୍ବୋଧ ଢଙ୍ଗରେ କେ. ହର୍ଣ୍ଣରଙ୍କ ଯେପରି କହିଥାଆନ୍ତି ) କରିବା ହେଲା ଶ୍ରେଷ୍ଠ "ପ୍ରମାଣ" ଯେ ଲେଜିୟନ ମାର୍କା ପ୍ରତିବିପ୍ଳବୀ, ଆପୋଷକାମୀ ସାମାଜିକ-ଉଗ୍ରଜାତୀୟତାବାଦୀ କାମଲ ଟ୍ରେଡ଼ୟୁନିଅନ ଗୁଡ଼ିକରେ କାର୍ଯ୍ୟ କରିବା ବିପ୍ଳବୀ ଓ କମ୍ୟୁନିଷ୍ଟମାନଙ୍କ ପକ୍ଷରେ ଅନାବଶ୍ୟକ, ଏପରିକି ଅସାମଂଜସ୍ୟ ମଧ୍ୟ ।

କିନ୍ତୁ ଜର୍ମାନ "ବାମପନ୍ଥୀ"ମାନେ ଏଇ ରଣକୌଶଳ ସଂପର୍କରେ ଯେତେଦୂର ଭାବେ ସ୍ଥିରନିଶ୍ଚିତ ହୁଅନ୍ତୁ ନା କାହିଁକି, ବସ୍ତୁତଃ ଏଇ ରଣ-କୌଶଳ ଗୁଡ଼ିକ ହେଲା ମୌଳିକ ଭାବେ ଭ୍ରାନ୍ତିମୂଳକ, ଏବଂ ଶୂନ୍ୟଗର୍ଭ ବାଗାଡ଼ମ୍ବର ବ୍ୟତୀତ ଆଉ କିଛି ନୁହେଁ ।

କଥାଟାକୁ ଆହୁରି ପରିଷ୍କାର କରିବାକୁ ହେଲେ ଆମର ନିଜର ଅଭିଜ୍ଞତାରୁ ମୁଁ ଆରମ୍ଭ କରିବି । ଅବଶ୍ୟ ଏହି ପୁସ୍ତିକାର ସାଧାରଣ ପରି-କଳ୍ପନା ସଙ୍ଗେ ତାହାର ପୂରା ମେଳ ରହିବ । କାରଣ ଏହି ପୁସ୍ତିକାର ଉଦ୍ଦେଶ୍ୟ ହେଲା ବଲଶେଭିକବାଦର ଇତିହାସ ଓ ଆଜିକାର କର୍ମ କୌଶଳ

ଭିତରେ ଯାହା କିଛି ସାଧାରଣ ଭାବେ ପ୍ରଯୁଜ୍ୟ, ବ୍ୟାପକ ଅର୍ଥରେ ଆବଶ୍ୟକ ଓ ସାଧାରଣ ଭାବେ କରଣୀୟ ତାକୁ ପଶ୍ଚିମ ୟୁରୋପ କ୍ଷେତ୍ରରେ ପ୍ରୟୋଗ କରିବା ।

ନେତା-ପାର୍ଟି-ଶ୍ରେଣୀ-ଜନତା ମଧ୍ୟରେ ପାରସ୍ପରିକ ସମ୍ପର୍କ ଓ ଟ୍ରେଡୟୁନିଅନ ସଙ୍ଗେ ସୋଭିଏତ ଓ ତାର ପାର୍ଟିର ଅଧିନାୟକତ୍ୱର ସମ୍ପର୍କ ରୁଷିଆରେ ନିର୍ଦ୍ଦିଷ୍ଟଭାବେ ବର୍ତ୍ତମାନ ନିମ୍ନମତେ ବିଦ୍ୟମାନ, ତାହା ହେଉଛି; ସୋଭିଏତ୍ ଗୁଡିକରେ ସଂଗଠିତ ସୋଭିଏତ ଦ୍ୱାରା ଅଧିନାୟକତ୍ୱ କାର୍ଯ୍ୟକାରୀ ହେଉଛି; (ବଲଶେଭିକ ) କମ୍ୟୁନିଷ୍ଟପାର୍ଟି ସୋଭିଏତ ଶ୍ରେଣୀକୁ ନେତୃତ୍ୱ ଦେଉଛି । ଶେଷ ପାର୍ଟିକଂଗ୍ରେସ ( ଅପ୍ରେଲ ୧୯୨୦ ) ହିସାବ ଅନୁଯାୟୀ ପାର୍ଟି ସଭ୍ୟସଂଖ୍ୟା ହେଲା ୬୧୧, ୦୦୦ । ଅକ୍ଟୋବର ବିପ୍ଳବର ପୂର୍ବେ ଓ ପରେ ସଭ୍ୟ ସଂଖ୍ୟା ଯଥେଷ୍ଟ ଭାବେ ହ୍ରାସ ବୃଦ୍ଧି ପାଇଥିଲା । ପୂର୍ବେ ଏପରିକି ୧୯୧୮ ଓ ୧୯୧୯ରେ ସଭ୍ୟ ସଂଖ୍ୟା ଖୁବ କମ ଥିଲା, ପାର୍ଟି ସଭ୍ୟ ସଂଖ୍ୟାର ଅତ୍ୟଧିକ ବୃଦ୍ଧିକୁ ଆମ୍ଭେମାନେ ଭୟକରୁଥିଲୁ କାରଣ ବ୍ୟକ୍ତିଗତ ଉନ୍ନତିକାମୀ ଓ ବାଗାଡ଼ମ୍ବରକାରୀ ଯେଉଁ ସବୁ ଲୋକଙ୍କୁ କେବଳ ଗୁଳିକରି ମାରିବା କଥା ସେମାନେ ଶାସକ ସହିତ ସଂଶ୍ଳିଷ୍ଟ ହୋଇ ରହିବା ପାଇଁ ଅନିବାର୍ଯ୍ୟ ଭାବେ ସର୍ବଦା ଚେଷ୍ଟା କରନ୍ତି । ଶେଷଥର ଆମେ ଯେତେବେଳେ ପାର୍ଟିର ଦ୍ୱାରକୁ ଅବାରିତ ରଖିଲୁ—କେବଳ ଶ୍ରମିକ ଓ କୃଷକମାନଙ୍କ ପାଇଁ—ତାହାହେଲା ୧୯୧୯ର ଶୀତକାଳ । ଯେତେବେଳେ ୟୁଦେନଚ୍ ପେଟ୍ରୋଗ୍ରାଡ଼ର କେତେ ମାଇଲ ମଧ୍ୟରେ ଆଉ ଡେ଼ନକିନ ଯେତେବେଳେ ଓରେଲରେ ( ମସ୍କୋଠାରୁ ପ୍ରାୟ ୩୫୦ ଭର୍ଷ୍ଟ ଦୂରରେ ) —ଅର୍ଥାତ୍ ସୋଭିଏତ୍ ପ୍ରଜାତନ୍ତ୍ର ଯେତେବେଳେ ଅସହାୟ ଓ ମାରାତ୍ମକ ବିପଦରେ ପଡ଼ିଥିଲା, ଏବଂ ଯେତେବେଳେ ଦୁଃସାହସୀ, ଭାଗ୍ୟାନ୍ୱେଷୀ ବ୍ୟକ୍ତିଗତ ଉନ୍ନତିକାମୀ, ବାଗାଡ଼ମ୍ବରକାରୀ ପ୍ରତାରକ ଏବଂ ଅବିଶ୍ୱାସୀ ବ୍ୟକ୍ତିଗଣଙ୍କ ପକ୍ଷରେ କମ୍ୟୁନିଷ୍ଟମାନଙ୍କସହ ଯୋଗଦେଇ ଫାଇଦା ଉଠାଇବାର କୌଣସି ସମ୍ଭାବନା ନଥିଲା (ବରଂ ଫାସିକାଠ ଓ ଶାରୀରିକ ନିର୍ଯାତନାର ଅଧିକ ସମ୍ଭାବନା ଥିଲା ) ।

ପ୍ରତ୍ୟେକ ବର୍ଷ ପାର୍ଟି କଂଗ୍ରେସ ଅନୁଷ୍ଠିତ ହୁଏ ( ଶେଷ ଅଧିବେଶନରେ ପ୍ରତି ହଜାର ସଭ୍ୟରେ ଜଣେ ପ୍ରତିନିଧି ଥିଲେ ), କଂଗ୍ରେସରେ ନିର୍ବାଚିତ ୧୯ ଜଣ ସଭ୍ୟବିଶିଷ୍ଟ ଏକ କେନ୍ଦ୍ର କମିଟି ପାର୍ଟିକୁ ପରିଚାଳିତ କରେ, ଦୈନନ୍ଦିନ କାର୍ଯ୍ୟ ମସ୍କୋରେ ଆହୁରି ଶ୍ରେଷ୍ଠସଂସ୍ଥା ଅର୍ଥାତ୍ ତଥାକଥିତ "ଅର୍ଗ ବ୍ୟୁରୋ" ( ସଂଗଠନ ସମିତି ) ଓ "ପଲିଟ ବ୍ୟୁରୋ" (ରାଜନୈତିକ ସମିତି ଦ୍ୱାରା ପରିଚାଳିତ ହୁଏ )। ଏହି ଦୁଇ ସଂସ୍ଥାଗୁଡିକ କେନ୍ଦ୍ର କମିଟିର ପୂର୍ଣ୍ଣ ବୈଠକରେ ନିର୍ବାଚିତ ହୁଅନ୍ତି, କେନ୍ଦ୍ରର ପାଞ୍ଚ ଜଣ ସଭ୍ୟ ପ୍ରାୟ ଗୋଟିଏ ଗୋଟିଏ ସମିତିରେ ରହନ୍ତି। ଏଥିରୁ ମନେହେବ ଯେ ଏହା ହେଲା ପରିପୂର୍ଣ୍ଣ "ଗୋଷ୍ଠୀତନ୍ତ୍ର"। ପାର୍ଟିର କେନ୍ଦ୍ରୀୟ କମିଟିର ନିର୍ଦ୍ଦେଶ ବ୍ୟତୀତ ଆମର ପ୍ରଜାତନ୍ତ୍ରରେ କୌଣସି ରାଷ୍ଟ୍ରୀୟ ସଂସ୍ଥା ରାଜନୈତିକ ବା ସାଂଗଠନିକ କୌଣସି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନର ନିଷ୍ପତ୍ତି କରନ୍ତି ନାହିଁ।

ପାର୍ଟି ନିଜ କାର୍ଯ୍ୟରେ ସିଧାସଳଖ ଟ୍ରେଡ୍‌ୟୁନିଅନମାନଙ୍କ ଉପରେ ନିର୍ଭର କରେ। ଗତ କଂଗ୍ରେସର ହିସାବ ମତେ (୧୯୨୦ ଅପ୍ରେଲ) ଏମାନଙ୍କର ସଂଖ୍ୟା ହେଲା ୪୦ ଲକ୍ଷ ସଦସ୍ୟରୁ ଊର୍ଦ୍ଧ୍ୱ, ଯେଉଁମାନେ ଆନୁଷ୍ଠାନିକ ଭାବେ ଅଣ-ପାର୍ଟି। ବାସ୍ତବପକ୍ଷେ, ବିପୁଳ ସଂଖ୍ୟାଧିକ ଟ୍ରେଡ୍‌ୟୁନିଅନଗୁଡ଼ିକର ସବୁ ପରିଚାଳନା କେନ୍ଦ୍ର ଆଉ ମୁଖ୍ୟତଃ ସମସ୍ତ ରୁଷିଆର ଟ୍ରେଡ୍‌ୟୁନିଅନଗୁଡ଼ିକର ସାଧାରଣ କେନ୍ଦ୍ର ବା ବ୍ୟୁରୋ ( ନିଖିଳ ରୁଷିଆ କେନ୍ଦ୍ରୀୟ ଟ୍ରେଡ୍‌ୟୁନିଅନ ପରିଷଦ ) କମ୍ୟୁନିଷ୍ଟମାନଙ୍କୁ ନେଇ ଗଠିତ ଏବଂ ସେମାନେ ପାର୍ଟିର ସମସ୍ତ ନିର୍ଦ୍ଦେଶ କାର୍ଯ୍ୟକାରୀ କରନ୍ତି। ଏହି ଭାବେ, ମୋଟ ମୋଟି, ଆମର ରହିଛି ଆନୁଷ୍ଠାନିକ ଅଣ-କମ୍ୟୁନିଷ୍ଟ, ନମନୀୟ ଓ ଅପେକ୍ଷାକୃତ ବ୍ୟାପକ ଓ ଅତି ଶକ୍ତିଶାଳୀ ଏକ ସର୍ବହରା ସଂଗଠନ, ଯାହା ମାଧ୍ୟମରେ ପାର୍ଟି ତାର ଶ୍ରେଣୀ ଓ ଜନତାଙ୍କ ସହିତ ଘନିଷ୍ଠ ଭାବେ ସମ୍ପର୍କ ରଖେ, ଯାହା ମାଧ୍ୟମରେ, ପାର୍ଟି ନେତୃତ୍ୱରେ ଶ୍ରେଣୀ ଅଧିନାୟକତ୍ୱ ପରିଚାଳିତ ହୁଏ। ଟ୍ରେଡ୍‌ୟୁନିଅନଗୁଡ଼ିକର ଗଭୀର ଯୋଗାଯୋଗ ବିନା, ସେମାନଙ୍କର ଆନ୍ତରିକ ସମର୍ଥନ ଓ ନିସ୍ୱାର୍ଥପର କାର୍ଯ୍ୟ-ବିନା କେବଳ ଆର୍ଥିକ

ବ୍ୟାପାରରେ ନୁହେଁ, ସାମରିକ ବ୍ୟାପାରରେ ମଧ୍ୟ ଅଢେଇ ବର୍ଷ ତ ଦୂରର କଥା, ଦୁଇ ମାସ ପର୍ଯ୍ୟନ୍ତ ବି ଆମର ଅଧିନାୟକତ୍ୱ ବଜାୟ ରଖିବା ଓ ଦେଶକୁ ଶାସନ କରିବା ଆମ ପକ୍ଷରେ ଅସମ୍ଭବ ହୋଇ ଉଠିଥାନ୍ତା । ସ୍ୱାଭାବିକତଃ, ଏଇ ବିରାଟ ସମ୍ପର୍କ କାର୍ଯ୍ୟକ୍ଷେତ୍ରରେ ପ୍ରତିଷ୍ଠା କରିବାକୁ ହେଲେ ଅତି ଜଟିଳ ଓ ବହୁବିଧ କାମ ପାଇଁ ଦୃଢ଼ର ଓ ଅନ୍ଦୋଳନ ପ୍ରୟୋଜନ ଏବଂ କେବଳ ମୁଖ୍ୟ ଟ୍ରେଡ୍‌ୟୁନିଅନ କର୍ମୀମାନଙ୍କର ନୁହେଁ, ସାଧାରଣ ଭାବେ ସବୁ ପ୍ରଭାବଶାଳୀ ଟ୍ରେଡ୍‌ୟୁନିଅନ କର୍ମୀମାନଙ୍କର ସମୟୋପଯୋଗୀ ବୈଠକ ଘନ ଘନ ଡାକିବା ମଧ୍ୟ ଏକାନ୍ତ ପ୍ରୟୋଜନ । ଅଧିକ ସେଥିପାଇଁ ମେନ୍‌ଶେଭିକମାନଙ୍କ ବିରୁଦ୍ଧରେ ଦୃଢ଼ ନିଷ୍ଠ ସଂଗ୍ରାମ ମଧ୍ୟ ପ୍ରୟୋଜନ, କାରଣ ଏମାନଙ୍କର ଖୁବ୍ ଅଳ୍ପ ସଂଖ୍ୟକ ହେଲେ ମଧ୍ୟ, କେତେକ ସମର୍ଥକ ଅଛନ୍ତି, ଯେଉଁମାନଙ୍କୁ ସେମାନେ ସମସ୍ତ ପ୍ରକାର ସମ୍ଭାବ୍ୟ ପ୍ରତିବିପ୍ଳବୀ ଧୂର୍ତ୍ତାମି ଶିକ୍ଷା ଦିଅନ୍ତି—ଯଥା (ବୁର୍ଜୁଆ) ଗଣତନ୍ତ୍ରକୁ ଆଦର୍ଶଗତ ଦୃଷ୍ଟିରୁ ସମର୍ଥନ କରିବା, ଟ୍ରେଡ୍ ୟୁନିଅନର "ସ୍ୱାତନ୍ତ୍ର୍ୟ" ଲାଗି (ସର୍ବହରା ରାଷ୍ଟ୍ରଶକ୍ତିଠାରୁ ସ୍ୱାତନ୍ତ୍ର୍ୟ) ପ୍ରଚାର କରିବାଠାରୁ ଆରମ୍ଭ କରି, ଶ୍ରମିକଶ୍ରେଣୀର ଶୃଙ୍ଖଳା ଇତ୍ୟାଦି ଭଙ୍ଗ କରିବା ପର୍ଯ୍ୟନ୍ତ ।

ଆମ ମତରେ ଟ୍ରେଡ୍‌ୟୁନିଅନ ମାଧ୍ୟମରେ 'ଜନତା' ସହିତ ସଂଯୋଗ ସ୍ଥାପନ ଯଥେଷ୍ଟ ନୁହେଁ । ବିପ୍ଳବର ଗତିପଥରେ ଆମର ବାସ୍ତବ ଅଭିଜ୍ଞତାହିଁ ଅଦଳୀୟ ଶ୍ରମିକ ଓ କୃଷକଙ୍କର ସମ୍ମିଳନୀକୁ ଜନ୍ମ ଦେଇଛି । ଆମ୍ଭେମାନେ ଏହି ସଂସ୍ଥାକୁ ସର୍ବଥା ସମର୍ଥନ କରୁଛୁ, ଏହାକୁ ବିକଶିତ ଓ ପ୍ରସାରିତ କରୁଛୁ କାରଣ ତଦ୍ଦ୍ୱାରା ଆମେ ଜନତାର ମନୋଭାବ ଅନୁଧ୍ୟାନ କରିବାକୁ ସମର୍ଥ ହେଉ, ସେମାନଙ୍କର ଆହୁରି ନିକଟକୁ ଆସି ପାରୁ, ସେମାନଙ୍କ ପ୍ରୟୋଜନ ସମ୍ପର୍କରେ ସେମାନଙ୍କ ପକ୍ଷରେ ଛିଡ଼ା ହେଉ, ସେମାନଙ୍କ ମଧ୍ୟରେ ଶ୍ରେଷ୍ଠତମ ବ୍ୟକ୍ତିମାନଙ୍କୁ ରାଷ୍ଟ୍ରୀୟ ପଦମର୍ଯ୍ୟାଦାକୁ ଉନ୍ନୀତ କରୁ । ରାଷ୍ଟ୍ରକର୍ମ ତଦାରଖ ସଂକ୍ରାନ୍ତୀୟ ଜନଗଣଙ୍କ ଦପ୍ତରକୁ "ଶ୍ରମିକ-କୃଷକ ସ୍ୱକୃତ ପର୍ଯ୍ୟବେକ୍ଷଣ" ସଂସ୍ଥାରେ ରୂପାନ୍ତରିତ କରିବା ପାଇଁ [ସଂପ୍ରତି

ସେଭଳି ଆଇନ ହୋଇଛୁ ସେଥିରେ ଏହିପରି ଅଣ-ପାର୍ଟି ସମ୍ମିଳନୀଗୁଡ଼ିକୁ ନାନା ଜାତୀୟ ଅନୁସନ୍ଧାନ ଆଦି କାର୍ଯ୍ୟରେ ରାଷ୍ଟ୍ର କ୍ଷମତା ସମ୍ପନ୍ନ ସଂସ୍ଥାଙ୍କୁ ସଭ୍ୟ ନିର୍ବାଚନ କରିବାର ଅଧିକାର ଦିଆଯାଇଛୁ ।

ତା ପରେ, ଅବଶ୍ୟ, ପେଶା ନିର୍ବିଶେଷରେ ସମସ୍ତ ଶ୍ରମଜୀବୀ ଜନତାକୁ କେନ୍ଦ୍ରିତ କରିଥିବା ସୋଭିଏତଗୁଡ଼ିକ ଜରିଆରେ ପାର୍ଟିର ସବୁ କାର୍ଯ୍ୟ କାର୍ଯ୍ୟକାରୀ ହୁଏ । ସୋଭିଏତର ଜିଲ୍ଲା କଂଗ୍ରେସଗୁଡ଼ିକ ଗଣତାନ୍ତ୍ରିକ ସଂସ୍ଥା ଅଟନ୍ତି ଯାହା ଏପରି କି ବୁର୍ଜୁଆ ଜଗତରେ ସର୍ବୋତ୍ତମ ଗଣତାନ୍ତ୍ରିକ ପ୍ରଜାତନ୍ତ୍ରରେ ବି ନାହିଁ । ଏଇସବୁ କଂଗ୍ରେସ ଜରିଆରେ (ଗଭୀର ମନୋଯୋଗ ଦେବାରେ ପାର୍ଟି ଏମାନଙ୍କର ଆଲୋଚନା ଅନୁଧ୍ୟାନ କରିବାକୁ ଚେଷ୍ଟା କରିଥାଏ) ଏବଂ ଶ୍ରେଣୀ ସଚେତନ ଶ୍ରମିକମାନଙ୍କୁ ଗ୍ରାମାଞ୍ଚଳର ବିଭିନ୍ନ ପଦରେ ନିରନ୍ତର ନିଯୁକ୍ତ କରି, କୃଷକମାନଙ୍କର ନେତାରୂପେ ସର୍ବହରା ଶ୍ରେଣୀର ଭୂମିକାକୁ କାର୍ଯ୍ୟକାରୀ କରାଯାଏ, ସହରର ସର୍ବହରାର ଅଧିନାୟକତ୍ୱକୁ କାଏମ କରାଯାଏ; ଧନୀ, ବୁର୍ଜୁଆ, ଶୋଷକ ଓ ଲାଭଖୋର କୃଷୀଙ୍କ ବିରୁଦ୍ଧରେ ନିୟମିତ ଭାବେ ସଂଗ୍ରାମ ପରିଚାଳନା କରାଯାଏ ।

ଅଧିନାୟକତ୍ୱର ବାସ୍ତବ ରୂପାୟନର ଦୃଷ୍ଟିରୁ ଏବଂ "ଉପରୁ" ଦେଖିବାକୁ ଗଲେ ସର୍ବହରାର ରାଷ୍ଟ୍ର ଶକ୍ତିର ସାଧାରଣ ଗଠନ ଯନ୍ତ୍ର ହେଲା ଏଇଆ । ବୁର୍ଜୁଆ ବଲ୍‌ଶେଭିକମାନେ ଏଇ ଗଠନଯନ୍ତ୍ର ସଙ୍ଗେ ପରିଚିତ ଏବଂ ଶ୍ରେଷ୍ଠ ଶ୍ରେଷ୍ଠ ଦେଖାଇଲା, ଗୋପନ ଚଳନରୁ ତାର ବିକାଶ ଧାରାକୁ ପଚିଶବର୍ଷ ଧରି ସେମାନେ ଲକ୍ଷ୍ୟ କରି ଆସିଛନ୍ତି । ତେଣୁ "ଉପରୁ" ନା "ତଳୁ", ନେତାମାନଙ୍କର ଅଧିନାୟକତ୍ୱ ନା ଜନତାର ଅଧିନାୟକତ୍ୱ ଇତ୍ୟାଦି ସବୁ କଥା ସେମାନଙ୍କୁ ହାସ୍ୟାସ୍ପଦ ଓ ଶିଶୁ ସୁଲଭ ନିର୍ବୋଧତା ବୋଲି ମନେହୁଏ । ଏ କଥା ପାଠକମାନେ ସହଜେ ହୃଦୟଙ୍ଗମ କରି ପାରିବେ ବୋଲି ଆଶା କରାଯାଏ—କାରଣ ଏପରି ସବୁ ଯୁକ୍ତି ଓ କଥା ହେଉଛି ମଣିଷର ବାମ ପାଦ ନା ଡାହାଣ ହାତ କେଉଁଟା ମଣିଷ ପକ୍ଷରେ ବେଶୀ ଦରକାରି ଏହିଭଳି ଯୁକ୍ତି ସଙ୍ଗେ ସମାନ ।

ଜର୍ମାନୀର ବାମପନ୍ଥୀମାନଙ୍କର ଗୁରୁ ଗମ୍ଭୀର, ଅତି-ପାଣ୍ଡିତ୍ୟପୂର୍ଣ୍ଣ ଓ ଭୟାବହ ବିପ୍ଳବୀ ଯୁକ୍ତିତର୍କ—ଯଥା, ପ୍ରତିକ୍ରିୟାଶୀଳ ଟ୍ରେଡ୍‌ୟୁନିଅନରେ କାମ କରିବା କମ୍ୟୁନିଷ୍ଟଙ୍କ ପକ୍ଷେ ଅସମ୍ଭବ ଓ ଅନୁଚିତ, ସେପରି କାମ କରିବାକୁ ମନା କରି ଦେବା ଅନୁମୋଦନୀୟ, ଟ୍ରେଡ୍‌ୟୁନିଅନଗୁଡ଼ିକ ଛାଡ଼ି ଆସିବା ଓ ଅତି ସୁନ୍ଦର (ଓ ସମ୍ଭବତଃ, ବେଶି ଖୁବ ହୋଇଥିବା ତରୁଣ) କମ୍ୟୁନିଷ୍ଟ ପ୍ରଭୃତିଙ୍କ ଦ୍ୱାରା ଉଦ୍ଭାବିତ ସଂପୂର୍ଣ୍ଣ ନୂତନ ନିଷ୍କଳଙ୍କ "ଶ୍ରମିକ ୟୁନିଅନ" ସୃଷ୍ଟି କରିବା।

ପୁଞ୍ଜିବାଦ ଅନିବାର୍ଯ୍ୟ ଭାବେ ସମାଜବାଦ ପାଇଁ ଛାଡ଼ି ଦେଇଯାଏ—ଗୋଟିଏ ଦିଗରେ ଶ୍ରମିକମାନଙ୍କ ମଧ୍ୟରେ ପୁରୁଣା ପେଶାଗତ ଓ କାରିଗରୀ ବୃତ୍ତି ସମ୍ପର୍କୀୟ ପାର୍ଥକ୍ୟ, ଯେଉଁ ପାର୍ଥକ୍ୟ କି ଶହ ଶହ ବର୍ଷ ଭିତରେ ଗଢ଼ି ଉଠିଛି। ଅନ୍ୟ ଦିଗରେ ସେ ଛାଡ଼ି ଦେଇଯାଏ—ଟ୍ରେଡ୍‌ୟୁନିଅନଗୁଡ଼ିଏ ଯେଉଁଗୁଡ଼ିକ ଅତି ଧୀରେ ବର୍ଷ ପରେ ବର୍ଷ—ବ୍ୟାପକତର ଶିଳ୍ପ ୟୁନିୟନ ରୂପେ ଗଢ଼ି ଉଠି ପାରିବେ ଓ ଉଠିବେ ମଧ୍ୟ, ଯେଉଁଥିରେ କାରିଗରୀ ୟୁନିଅନର ରୂପ କମି ଆସିବ (ଯେଉଁମାନେ କେବଳ ମନ କାରିଗର, ବୃତ୍ତି ଓ ପେଶାରେ ଆବଦ୍ଧ ନ ହୋଇ ସମଗ୍ର ଶିଳ୍ପକୁ ଏକତ୍ରିତ କରିବେ) ଓ ପରେ ସେଇ ଶିଳ୍ପ ୟୁନିଅନ ମାଧ୍ୟମରେ ସେଇ ଟ୍ରେଡ୍‌ୟୁନିଅନ-ଗୁଡ଼ିକ ଜନସାଧାରଣଙ୍କ ମଧ୍ୟରେ ଥିବା ଶ୍ରମ ବିଭାଗକୁ ଲୋପ କରିବାକୁ ଆଗେଇ ଯିବେ, ସର୍ବାଙ୍ଗୀନ ବିକାଶ ଓ ସର୍ବବ୍ୟାପୀ ଶିକ୍ଷା କରିଆରେ ଜନସାଧାରଣଙ୍କୁ ଶିକ୍ଷିତ, ସୁଦକ୍ଷ କରି ତୋଳିବେ, ଯେଉଁ ଲୋକେ ସବୁ କିଛି କରି ଜାଣିଥିବେ। ଏହି ଲକ୍ଷ୍ୟରେ ସାମ୍ୟବାଦ ଆଗେଇ ଚାଲିଛି ଓ ଏହି ଲକ୍ଷ୍ୟରେ ଆଗେଇ ଚାଲିବ ମଧ୍ୟ। କିନ୍ତୁ ବହୁ ବର୍ଷ ପରେ ଯାଇ ସେ ଏହି ଲକ୍ଷ୍ୟରେ ହିଁ ଉପନୀତ ହେବ। ପୂର୍ଣ୍ଣ ବିକଶିତ, ପୂର୍ଣ୍ଣ ଗଠିତ, ସୁପ୍ରତିଷ୍ଠିତ ଓ ପୂର୍ଣ୍ଣ ସ୍ୱୀକୃତ ତଥା ପରିଣତ ସାମ୍ୟବାଦର ଭବିଷ୍ୟତ ଫଳାଫଳକୁ କାର୍ଯ୍ୟ କ୍ଷେତ୍ରରେ ଆଜି ହାତ ଭିତରକୁ ଆଣିବାକୁ ଚେଷ୍ଟା କରିବା ଚାରି ବର୍ଷର ଶିଶୁକୁ ଉଚ୍ଚତର ଗଣିତତତ୍ତ୍ୱ ଶିକ୍ଷା ଦେବାର ଉଦ୍ୟମ ସଙ୍ଗେ ସମାନ।

ଆମ୍ଭେମାନେ ସମାଜବାଦ ଗଠନ କରିବାକୁ ଆରମ୍ଭ କରି ପାରିବା (କରିବା ଉଚିତ) କଳ୍ପନା ପ୍ରସୂତ ମାନବିକ ଉପାଦାନ ନେଇ ନୁହେଁ ବା ଆମ ଦ୍ୱାରା ଉଦ୍ଭାବିତ ମାନବିକ ଉପାଦାନ ନେଇ ନୁହେଁ । ଆମେ ତା କରିପାରିବା ପୁଞ୍ଜିବାଦ ଆମ୍ଭମାନଙ୍କ ପାଇଁ ଯେଉଁ ମାନବିକ ଉପାଦାନ ସୃଷ୍ଟି ଯାଇଛି ତାର ସାହାଯ୍ୟରେ କେବଳ । ଏହା ନିଃସନ୍ଦେହରେ ବଡ଼ "କଷ୍ଟସାଧ୍ୟ", କିନ୍ତୁ ଏଇ ସମସ୍ୟା ସମ୍ପର୍କରେ ଅନ୍ୟ କୌଣସି ଦୃଷ୍ଟିଭଙ୍ଗୀ ଆଲୋଚନା ଯୋଗ୍ୟ ହେଲ ଭଳି ଗୁରୁତ୍ୱପୂର୍ଣ୍ଣ ନୁହେଁ ।

ପୁଂଜିବାଦୀ ବିକାଶର ପ୍ରାରମ୍ଭରେ ଟ୍ରେଡ୍ ୟୁନିଅନଗୁଡ଼ିକ ହେଉଛନ୍ତି ଶ୍ରମିକ ଶ୍ରେଣୀ ପକ୍ଷରେ ଏକ ବିରାଟ ପ୍ରଗତିଶୀଳ ପଦକ୍ଷେପ । କାରଣ ସେମାନେ ହେଉଛନ୍ତି ଶ୍ରମିକମାନଙ୍କର ଅନୈକ୍ୟ ଓ ଅସହାୟତାରୁ ଶ୍ରେଣୀ ସଙ୍ଗଠନ ପଥରେ ସେମାନଙ୍କର ରୂପାନ୍ତରର ଏକ "ପ୍ରାଥମିକ" ପ୍ରତୀକ । ସର୍ବହରା ଶ୍ରେଣୀ ସଂଗଠନର ସର୍ବୋଚ୍ଚ ରୂପ ଅର୍ଥାତ ସର୍ବହରାର ବିପ୍ଳବୀ ପାର୍ଟି ଯେତେବେଳେ ମୁଣ୍ଡଟେକି ଉଠିଲା । (ଯେତେ ଦିନ ଏହି ପାର୍ଟି ନେତାମାନଙ୍କୁ ଶ୍ରେଣୀ ଓ ଜନସାଧାରଣଙ୍କ ସହିତ ଏକ ଅଭିନ୍ନ, ଅବିଚ୍ଛେଦ୍ୟ ସମଗ୍ରତାରେ ବାନ୍ଧି ନପାରିବ ସେତେଦିନ ପର୍ଯ୍ୟନ୍ତ କୌଣସି ସଂସ୍ଥା ଏହି ନାମର ଯୋଗ୍ୟ ହୋଇ ପାରିବ ନାହିଁ ), ଟ୍ରେଡ୍ ୟୁନିଅନ ଗୁଡ଼ିକ ଅନିବାର୍ଯ୍ୟଭାବେ କେତେକ ପ୍ରତିକ୍ରିୟାଶୀଳ ଲକ୍ଷଣ ପ୍ରକାଶ କରିବାକୁ ଲାଗିଲେ, ଯେପରି କାରିଗରି ବୃତ୍ତି ସଂକ୍ରାନ୍ତୀୟ ସଂକୀର୍ଣ୍ଣତା, ଅଣ-ରାଜନୈତିକ ହୋଇ ପଡ଼ିବାର କେତେକ ପ୍ରବଣତା, କେତେକ ପରିମାଣରେ ନିଶ୍ଚେଷ୍ଟତା ଇତ୍ୟାଦି । କିନ୍ତୁ ପୃଥିବୀରେ କେଉଁଠି ଟ୍ରେଡ୍ ୟୁନିୟନ ବ୍ୟତୀତ ଅନ୍ୟ ବାଟରେ, ଟ୍ରେଡ୍ ୟୁନିଅନ ଓ ଶ୍ରମିକ ଶ୍ରେଣୀ ପାର୍ଟିର ପାରସ୍ପରିକ ପ୍ରଭାବ ବିସ୍ତାର ବ୍ୟତୀତ ସର୍ବହରାର ବିକାଶ ସମ୍ପନ୍ନ ହୋଇନାହିଁ, ହୋଇ ପାରେ ନା । ସର୍ବହରା ଶ୍ରେଣୀ ଦ୍ୱାରା ରାଷ୍ଟ୍ର କ୍ଷମତା ଦଖଲ ଶ୍ରେଣୀ ହିସାବରେ ସର୍ବହରା ପକ୍ଷରେ ଏକ ବିରାଟ ଅଗ୍ରଗାମୀ ପଦକ୍ଷେପ । ପାର୍ଟିକୁ ପୂର୍ବାପେକ୍ଷା ଅଧିକ ଉଧ୍

ଭାବରେ ଓ ଏକ ନୂତନ ବାଟରେ, କେବଳ ପୁରୁଣା ଭାବରେ ନୁହେଁ, ଟ୍ରେଡ଼ ୟୁନିଅନ ଗୁଡ଼ିକୁ ଶିକ୍ଷିତ ଓ ପରିଚାଳିତ କରିବାକୁ ହେବ । ତା ସଙ୍ଗେ ସଙ୍ଗେ ମନେରଖିବାକୁ ହେବ ଯେ, ସେମାନେ ହେଲେ ଅତି ଅପରିହାର୍ଯ୍ୟ ଭାବେ "ସାମ୍ୟବାଦର ବିଦ୍ୟାଳୟ" ସେମାନେ ବହୁଦିନ ଧରି ତା'ହା ହୋଇ ରହିବେ; ସେମାନେ ହେଲେ ସର୍ବହରାଙ୍କୁ ଅଧିନାୟକତ୍ୱ ପ୍ରୟୋଗ କରିବାରେ ଶିକ୍ଷା ଦେବାର ପ୍ରସ୍ତୁତି ପ୍ରତିଷ୍ଠାନ; ସେମାନେ ହେଲେ ଶ୍ରମିକମାନଙ୍କର ଏପରି ଅପରିହାର୍ଯ୍ୟ ସଂଗଠନ ଯାହା ଜରିଆରେ ଦେଶର ସମସ୍ତ ଅର୍ଥନୈତିକ ଜୀବନ ଧୀରେ ଧୀରେ ଶ୍ରମିକ ଶ୍ରେଣୀ ହାତକୁ ହସ୍ତାନ୍ତରିତ ହେବ (ଭିନ୍ନ ଭିନ୍ନ ପେଶା ଗୁଡ଼ିକ ପାଖକୁ ନୁହେଁ) ଏବଂ ଶେଷରେ ସମସ୍ତ ଶ୍ରମଜୀବୀ ଜନସାଧାରଣଙ୍କ ନିକଟକୁ ହସ୍ତାନ୍ତରିତ ହେବ ।

ସର୍ବହରାର ଅଧିନାୟକତ୍ୱ ସମୟରେ ଟ୍ରେଡ଼ୟୁନିଅନ ଗୁଡ଼ିକ ମଧ୍ୟରେ ଏହି ଅର୍ଥରେ କେତେକ ପରିମାଣର "ପ୍ରତିକ୍ରିୟାଶୀଳତା" ଦେଖାଯିବା ଅନିବାର୍ଯ୍ୟ । ଏହି କଥାଟି ବୁଝି ନ ପାରିବା ହେଉଛି ପୁଞ୍ଜିବାଦରୁ ସମାଜବାଦକୁ ଯାତ୍ରା କରିବାର ମୌଳିକ ସର୍ତ୍ତକୁ ବୁଝିବାରେ ସମ୍ପୂର୍ଣ୍ଣ ଅକ୍ଷମତା ପ୍ରକାଶ କରିବା । ଏହି "ପ୍ରତିକ୍ରିୟାଶୀଳତାକୁ" ଭୟ କରିବା, ଏହାକୁ ଏଡ଼େଇ ଦେବାର ଚେଷ୍ଟା କରିବା ଓ ଏହାକୁ ଡେଇଁ ଯିବା ବିରାଟ ଭୁଲ ହେବ, କାରଣ, ତାର ଅର୍ଥ ହେବ ସର୍ବହରାର ଗ୍ରମୁ ବାହିନୀର କର୍ତ୍ତବ୍ୟକୁ ଭୟ କରିବା, ଯେଉଁ କର୍ତ୍ତବ୍ୟର ସାରାଂଶ ହେଉଛି କୃଷକ ଓ ଶ୍ରମିକମାନଙ୍କ ଅନଗ୍ରସର ସ୍ତରକୁ ଶିକ୍ଷା ଦେବା, ତାକୁ ଗଢି ତୋଳିବା, ସେମାନଙ୍କ ମଧ୍ୟରେ ଜ୍ଞାନ ବିସ୍ତାର କରିବା, ନୂତନ ଜୀବନ ଭିତରକୁ ତାଙ୍କୁ ଟାଣି ଆଣିବା । ଅନ୍ୟ ପକ୍ଷରେ, ଯେତେଦିନ ପର୍ଯ୍ୟନ୍ତ ଗୋଟିଏ ବି ଶ୍ରମିକ ସଂକୀର୍ଣ୍ଣ ବୃତ୍ତିଗତ ଦୃଷ୍ଟିଭଙ୍ଗୀ, ବା କାରିଗରି ପେଶା ଓ କାରିଗର-ସମିତିର କୁସଂସ୍କାରବାଦ ପଢ଼ିନାହିଁ ସେତେଦିନ ଯାଏ ସର୍ବହରାର ଅଧିନାୟକତ୍ୱ

ଦ୍ରୁତତ୍ମାନ୍ ସ୍ଥଗିତ ରହିବା ମଧ୍ୟ ବନ୍ଦ ଭୂଲ ହେବ । ରାଜନୀତି ବିଦ୍ୟାର ( ଆଉ କମ୍ୟୁନିଷ୍ଟମାନଙ୍କ ନିଜ କର୍ତ୍ତବ୍ୟର ନିର୍ଭୁଲ ଉପଲବ୍ଧି ) ଅସଲ କଥା ହେଉଛି—ସଠିକଭାବେ ସେଇ ଅବସ୍ଥା ଓ ମୁହୂର୍ତ୍ତକୁ ଧରିବାକୁ ହେବ ଯେତେବେଳେ ସର୍ବହରାର ଅଗ୍ରଗାମୀ ବାହିନୀ ସଫଳ ଭାବେ କ୍ଷମତା ଦଖଲ କରି ପାରିବ, ଯେତେବେଳେ କ୍ଷମତା ଦଖଲର ସମୟରେ ଓ ତାପରେ ମଧ୍ୟ ଶ୍ରମିକ ଶ୍ରେଣୀ ଓ ଅଣ ସର୍ବହରା ଶ୍ରମଜୀବୀ ଜନସାଧାରଣଙ୍କର ଯଥାସମ୍ଭବ ବ୍ୟାପକ ସ୍ତରଠାରୁ ସେ ଯଥେଷ୍ଟ ସମର୍ଥନ ପାଇପାରିବ, ଏବଂ ଯେତେବେଳେ ତାପରେ ସେ ବିପୁଳ ସଂଖ୍ୟକ ଶ୍ରମଜୀବୀ ଜନସାଧାରଣଙ୍କୁ ଶିକ୍ଷିତ କରି, ତାଲିମ କରି ଓ ଅଧିକରୁ ଅଧିକ ସଂଖ୍ୟକ ଲୋକଙ୍କୁ ନିଜ ପଟକୁ ଆଣି ନିଜର ଶାସନକୁ ବଜାୟ ରଖିପାରିବ, ସୁଦୃଢ଼ କରିପାରିବ ଓ ସମ୍ପ୍ରସାରିତ କରି ପାରିବ ।

ଆହୁରି ମଧ୍ୟ ଅଛି—ରୁଷିଆ ଅପେକ୍ଷା ଅଧିକ ଅଗ୍ରସର ଦେଶମାନଙ୍କରେ ଟ୍ରେଡ୍‌ୟୁନିଅନ ମଧ୍ୟରେ କେତେକ ପ୍ରତିକ୍ରିୟାଶୀଳତା ଆମ ଦେଶ ତୁଳନାରେ ବହୁଳ ପରିମାଣରେ ଦେଖା ଦେଇଛି ଓ ଦେଖାଦେବାକୁ ବାଧ୍ୟ । ବୃତ୍ତିଗତ ସଂକୀର୍ଣ୍ଣତା, କାରିଗରୀ ଅହଙ୍କାର ଓ ସୁବିଧାବାଦ ହେତୁରୁ ହିଁ ଆମର ମେନଶେଭିକମାନେ ଟ୍ରେଡ୍ ୟୁନିଅନରେ ସମର୍ଥନ ପାଇଥିଲେ ( ଅଳ୍ପ କେତୋଟି ୟୁନିଅନରେ କେତେକ ପରିମାଣରେ ଏ ପର୍ଯ୍ୟନ୍ତ ବି ପାଉଛନ୍ତି) । ପାଶ୍ଚାତ୍ୟ ମେନଶେଭିକମାନେ ଟ୍ରେଡ୍‌ୟୁନିଅନ ଗୁଡ଼ିକରେ ଅଧିକ ଦୃଢ଼ "ଅବସ୍ଥିତି" ହାସଲ କରିଛନ୍ତି ; କାରଣ ଆମ ଦେଶ ତୁଳନାରେ ସେଠାରେ ଅଧିକ ଶକ୍ତିଶାଳୀ ସ୍ତର ହିସାବରେ ରହିଛନ୍ତି କାରିଗରୀ ୟୁନିଅନ, ସଂକୀର୍ଣ୍ଣ-ମନା, ସ୍ୱାର୍ଥପର, ଜାଲିୟାତି, ଲୋଭୀ, ପେଟି-ବୁର୍ଜୁଆ "ଅଭିଜାତ ଶ୍ରମିକଗୋଷ୍ଠୀ" ଏବଂ ସାମ୍ରାଜ୍ୟବାଦୀ ମନୋଭାବାପନ୍ନ ଓ ସାମ୍ରାଜ୍ୟବାଦର ଘୁଷଖୋର, ସାମ୍ରାଜ୍ୟବାଦୀ ଦୁର୍ନୀତିଗ୍ରସ୍ତ ଟ୍ରେଡ୍‌ୟୁନିଅନ ସମୂହ । ଏହା ଏକ ଅବିସମ୍ବାଦିତ ସତ୍ୟ । ଆମର ଯେଉଁ ମେନଶେଭିକମାନେ ଗୋଟିଏ ସଂପୂର୍ଣ୍ଣ ଏକ ଗୋଷ୍ଠୀୟ ସାମାଜିକ ଓ

ରାଜନୈତିକ ଦୃଷ୍ଟିର ପ୍ରତିନିଧିତ୍ୱ କରନ୍ତି ସେମାନଙ୍କ ବିରୁଦ୍ଧରେ ଲଢ଼ାଇ ଅପେକ୍ଷା ଗମ୍ପର୍ସ ଗୋଷ୍ଠୀ ବିରୁଦ୍ଧରେ, ପଶ୍ଚିମ ୟୁରୋପୀୟ ଜୁହୋ. ହେଣ୍ଡରସନ, ମେରହିଇମ, ଲେଜିଅନ କମ୍ପାନୀ ବିରୁଦ୍ଧରେ ଲଢ଼ାଇ ଅନେକ ବେଶି କଷ୍ଟସାଧ୍ୟ । ଅତି ନିର୍ମମ ଭାବେ ଏ ସଂଗ୍ରାମକୁ ଚଲାଇବାକୁ ହେବ, ଯେ କୌଣସି ମତେ ଏହି ସଂଗ୍ରାମ ଚଲାଇବାକୁ ହେବ ଆମେ ଯେମିତି ଚଲାଇଥିଲୁ । ସୁବିଧାବାଦୀ ଓ ସାମାଜିକ-ଉଗ୍ର-ଜାତୀୟତାର ଅସଂଶୋଧନୀୟ ନେତୃବୃନ୍ଦଙ୍କୁ ସମ୍ପୂର୍ଣ୍ଣ ଅପଦସ୍ଥ କରି ସେମାନଙ୍କୁ ଓ ଟ୍ରେଡ୍‌ୟୁନିଅନ ଗୁଡ଼ିକରୁ ବହିଷ୍କାର କରିଦିଆଯିବା ପର୍ଯ୍ୟନ୍ତ ଏହି ସଂଗ୍ରାମ ଚଲାଇବାକୁ ପଡ଼ିବ । ନିର୍ଦ୍ଦିଷ୍ଟ ପର୍ଯ୍ୟାୟରେ ସଂଗ୍ରାମ ନ ପହଞ୍ଚିଲାଯାଏ ରାଷ୍ଟ୍ରକ୍ଷମତା ଦଖଲ କରାଯାଇ ପାରିବ ନାହିଁ ( ଏବଂ ଦଖଲ କରିବାର ଚେଷ୍ଟା କରାଯିବ ନାହିଁ) । ଏହି "ନିର୍ଦ୍ଦିଷ୍ଟ ପର୍ଯ୍ୟାୟ" ଭିନ୍ନ ଭିନ୍ନ ଦେଶରେ ଓ ଭିନ୍ନଭିନ୍ନ ଅବସ୍ଥାରେ ପୃଥକ ହେବ; ପ୍ରତ୍ୟେକ ନିର୍ଦ୍ଦିଷ୍ଟ ଦେଶରେ ସର୍ବହରାର ଚିନ୍ତାଶୀଳ, ଅଭିଜ୍ଞ ଓ ଜଣାଶୁଣା ମଣ୍ଡଳୀର ରାଜନୈତିକ ନେତାମାନେ କେବଳ ଏହାକୁ ଠିକ୍ ଭାବେ ଧରି ପାରିବେ । ( ରୁଷିଆରେ, ଏହି ସଂଗ୍ରାମର ସଫଳତାର ଅନ୍ୟତମ କାରଣ ହେଲା ୧୯୧୭ ମସିହାରେ ୨୫ ଅକ୍ଟୋବରର ସର୍ବହରା ବିପ୍ଳବର କିଛି ଦିନ ପରେ ୧୯୧୭ ନଭେମ୍ବରରେ ସାମ୍ବିଧାନିକ ସଭା ପରିଷଦର ନିର୍ବାଚନ । ଏହି ନିର୍ବାଚନ ଗୁଡ଼ିକରେ ମେନଶେଭିକମାନେ ସମ୍ପୂର୍ଣ୍ଣ ପରାଜିତ ହେଲେ; ସେମାନେ ୭ ଲକ୍ଷ ଭୋଟ ପାଇଲେ-ଟ୍ରାନ୍ସକକେସିଆକୁ ମିଶାଇଲେ ୧୪ ଲକ୍ଷ ଭୋଟ ହେବ—ତା ବିରୁଦ୍ଧରେ ବଲଶେଭିକମାନେ ୯୦ ଲକ୍ଷ ଭୋଟ ପାଇ ଥିଲେ । କମ୍ୟୁନିଷ୍ଟ ଇଣ୍ଟରନାସନାଲର ନଂ୭-୮ ସଂଖ୍ୟାରେ" ସାମ୍ବିଧାନିକ ସଭାକୁ ନିର୍ବାଚନ ଓ ସର୍ବହରାର ଅଧିନାୟକତ୍ୱ" ସମ୍ପର୍କୀୟ ମୋର ପ୍ରବନ୍ଧଟି ଦ୍ରଷ୍ଟବ୍ୟ ) ।

କିନ୍ତୁ ଆମ୍ଭେମାନେ ଏହି "ଏହି ଅଭିଜାତ ଶ୍ରମିକ ଗୋଷ୍ଠୀ" ବିରୁଦ୍ଧରେ ଶ୍ରମିକ ଜନସାଧାରଣଙ୍କ ନାମରେ ଓ ସେମାନଙ୍କୁ ଆମ ପଟକୁ ଟାଣି ଆଣିବା ଉଦ୍ଦେଶ୍ୟରେ ସଂଗ୍ରାମ କରୁ ; ଶ୍ରମିକଶ୍ରେଣୀକୁ ଆମ ପକ୍ଷକୁ ଆଣିବା ଲାଗି ଆମେ

ସୁବିଧାବାଦୀ ଓ ସାମାଜିକ-ଉଗ୍ର-ଜାତୀୟତାବାଦୀ ନେତାଗଣଙ୍କ ବିରୁଦ୍ଧରେ ସଂଗ୍ରାମ କରୁ । ଏହି ଅତି ପ୍ରାଥମିକ ଓ ଅତି ସୁସ୍ପଷ୍ଟ ସତ୍ୟକୁ ଭୁଲିଯିବା ନିର୍ବୋଧତା ହେବ । କିନ୍ତୁ ଠିକ୍ ସେହି ନିର୍ବୋଧତାର ଦୋଷରେ ହିଁ ଜର୍ମାନ "ବାମପନ୍ଥୀ" କମ୍ୟୁନିଷ୍ଟମାନେ ଦୋଷୀ ହୋଇଛନ୍ତି, ଯେତେବେଳେ ସେମାନେ ଟ୍ରେଡ୍ ୟୁନିଅନଗୁଡ଼ିକର ଉଚ୍ଚ କର୍ମକର୍ତ୍ତାମାନଙ୍କର ପ୍ରତିକ୍ରିୟା-ଶୀଳ ଓ ପ୍ରତି-ବିପ୍ଳବୀ ଚରିତ୍ର ହେତୁରୁ ଏହି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଯେ, ଟ୍ରେଡ୍ ୟୁନିଅନଗୁଡ଼ିକୁ ଆମକୁ ଛାଡ଼ିଦେବାକୁ ହେବ ! ! ସେଗୁଡ଼ିକରେ କାମ କରିବା ଆମକୁ ବର୍ଜନ କରିବାକୁ ହେବ ! ! ଶ୍ରମିକ ସଂଗଠନର ନୂତନ ଓ କୃତ୍ରିମ ରୂପ ଆମକୁ ଗଢ଼ିବାକୁ ହେବ ! ! ଏହା ଏତେ ଅମାର୍ଜନୀୟ ଭୁଲ ଯେ ଏହା କମ୍ୟୁନିଷ୍ଟମାନଙ୍କ ପକ୍ଷରେ ବୁର୍ଜୁଆ-ମାନଙ୍କର ଶ୍ରେଷ୍ଠ ସେବା କରିବା ସଙ୍ଗେ ସମାନ । କାରଣ, ସମସ୍ତ ସୁବିଧାବାଦୀ, ସାମାଜିକ-ଉଗ୍ର ଜାତୀୟତାବାଦୀ, କାଉଟସ୍କିପନ୍ଥୀ ଟ୍ରେଡ୍ ୟୁନିଅନ ନେତାମାନଙ୍କ ପରି, ଆମର ମେନ୍‌ଶେଭିକ୍‌ମାନେ ମଧ୍ୟ "ଶ୍ରମିକ ଆନ୍ଦୋଳନରେ ବୁର୍ଜୁଆମାନଙ୍କ ଦଲାଲ" ଛଡ଼ା ଆଉ କିଛି ନୁହନ୍ତି, (ମେନ୍‌ଶେଭିକ୍‌ମାନେ ଠିକ୍ ଏହା ବୋଲି ଆମେ ସବୁବେଳେ କହି ଆସିଛୁ) କିମ୍ବା ଆମେରିକାର ଡାନିଏଲ୍ ଡିଲିଅନଙ୍କ ଅନୁସରଣକାରୀମାନଙ୍କର ଚମତ୍କାର ଓ ଏକାନ୍ତ ସତ୍ୟ ଉକ୍ତିକୁ ବ୍ୟବହାର କଲେ କହିବାକୁ ହେବ ଯେ ଏମାନେ ହେଲେ "ପୁଞ୍ଜିପତି ଶ୍ରେଣୀର ଶ୍ରମିକ ସର୍ଦ୍ଦାର ।" ପ୍ରତିକ୍ରିୟାଶୀଳ ଟ୍ରେଡ୍ ୟୁନିଅନଗୁଡ଼ିକରେ କାମ କରିବାକୁ ଅସ୍ୱୀକାର କରିବା ଅର୍ଥ ହେଲା ଅପରିଣତ ବା ପଶ୍ଚାତ୍‌ପଦ ଶ୍ରମିକ ସାଧାରଣଙ୍କୁ ପ୍ରତିକ୍ରିୟାଶୀଳ ନେତୃବୃନ୍ଦ, ବୁର୍ଜୁଆମାନଙ୍କ ଦଲାଲ-ଅଭିଜାତ ଶ୍ରମିକଗୋଷ୍ଠୀର ନେତାଗଣ ବା "ଯେଉଁ ସବୁ ଶ୍ରମିକ ପୂରାପୂରି ବୁର୍ଜୁଆ ହୋଇଯାଇଛନ୍ତି" ସେମାନଙ୍କ ହାତରେ ଛାଡ଼ି ଦେଇ ଆସିବା ସଙ୍ଗେ ସମାନ—" (ବ୍ରିଟିଶ ଶ୍ରମିକମାନଙ୍କ ସମ୍ପର୍କରେ ୧୮୫୮ରେ ମାର୍କସଙ୍କ ନିକଟକୁ ଲେଖାଯାଇଥିବା ଏଙ୍ଗେଲ୍‌ସଙ୍କ ଚିଠି ଦ୍ରଷ୍ଟବ୍ୟ ) ।

ପ୍ରତିକ୍ରିୟାଶୀଳ ଟ୍ରେଡ୍ ୟୁନିଅନରେ କମ୍ୟୁନିଷ୍ଟମାନଙ୍କର କାମ କରିବା ଉଚିତ ନୁହେଁ, ଠିକ ଏହି "ନିର୍ବୋଧ" ତତ୍ତ୍ୱଟି ପରିଷ୍କାର ଦେଖେଇ

ଦେଉଛୁ ଯେ, "ଜନସାଧାରଣଙ୍କ" ପ୍ରସ୍ତାବିତ କରିବା ପ୍ରଶ୍ନ ପ୍ରତି "ବାମପନ୍ଥୀ" କମ୍ୟୁନିଷ୍ଟମାନଙ୍କ ମନୋଭାବ କି ପରିମାଣରେ ଚାଲେ ଏବଂ "ଜନସାଧାରଣଙ୍କ" ନାମକୁ ସେମାନେ କେତେଦୂର ଅପବ୍ୟବହାର କରନ୍ତି । ଯଦି "ଜନସାଧାରଣଙ୍କୁ" ସାହାଯ୍ୟ କରିବାକୁ ଚାହୁଁ, ଏବଂ "ଜନସାଧାରଣଙ୍କ" ସହାନୁଭୂତି ଓ ସମର୍ଥନ ଲାଭ କରିବାକୁ ଚାହୁଁ, ତାହାହେଲେ ବାଧାବିଘ୍ନକୁ ଭୟ କରିବା ଉଚିତ ନୁହେଁ । 'ନେତାମାନଙ୍କର ବିରକ୍ତିକର ମନ୍ତବ୍ୟ, ଛଳଚାତୁରୀ, ଅପମାନ, ନିର୍ଯାତନାକୁ ଭୟ କରିବା ଉଚିତ ନୁହେଁ, ଏହି ନେତାମାନେ ସୁବିଧାବାଦୀ ଓ ସମାଜିକ—ଉଗ୍ର ଜାତୀୟତାବାଦୀ ହୋଇଥିବାରୁ ସେମାନେ ଅଧିକାଂଶ କ୍ଷେତ୍ରରେ ବୁର୍ଜୁଆ ଓ ପୋଲିସ ସହିତ ପ୍ରତ୍ୟକ୍ଷ ବା ପରୋକ୍ଷରେ ସଂପୃକ୍ତ,) ବରଂ ଯେଉଁଠି ଜନସାଧାରଣ ଅଛନ୍ତି ସେଠାରେ ଅପରିହାର୍ଯ୍ୟ ଭାବେ କାମ କରିବାକୁ ହେବ । ବିଶେଷ କରି ଯେଉଁ ସବୁ ପ୍ରତିଷ୍ଠାନ ସମିତି ଓ ସଙ୍ଗଠନରେ ସର୍ବହରା ବା ଅର୍ଦ୍ଧ-ସର୍ବହରା ଜନସାଧାରଣ ଅଛନ୍ତି—ଅତି ପ୍ରତିକ୍ରିୟାଶୀଳ ହେଲେ ବି, ତା ମଧ୍ୟରେ ଧାରାବାହିକ ଓ ନିୟମିତ ଭାବେ, ଅଧ୍ୟବସାୟର ସହିତ, ଅବିଚଳିତ ମନରେ ଏବଂ ଧୈର୍ଯ୍ୟ ସହକାରେ ପ୍ରଚାର ଓ ଆନ୍ଦୋଳନ ଚଳାଇବା ଉଦ୍ଦେଶ୍ୟରେ ସବୁ ପ୍ରକାର ସ୍ୱାର୍ଥତ୍ୟାଗ ପାଇଁ ଓ ସର୍ବାଧିକ କଠୋର ପ୍ରତିବନ୍ଧକକୁ ଅତିକ୍ରମ କରିବା ପାଇଁ ସାମର୍ଥ୍ୟ ଥିବା ଦରକାର । ଟ୍ରେଡ୍‌ୟୁନିଅନ ଓ ଶ୍ରମିକ ସମବାୟ ସମିତି ଗୁଡ଼ିକ (ଶେଷୋକ୍ତ ସଙ୍ଗଠନ ଗୁଡ଼ିକ ଅନ୍ତତଃ ପକ୍ଷେ ବେଳେ ବେଳେ) ହେଲା ଠିକ୍ ସେହି ପ୍ରକାର ସଙ୍ଗଠନ ଯେଉଁଠି ଜନସାଧାରଣ ଅଛନ୍ତି । ସୁଇଡ଼େନର ପତ୍ରିକା ଫଲ୍କେଟସ ଡାଗବ୍ଲାଡ଼ ପଲିଟିକେନ୍‌ର ୧୯୨୦, ମାର୍ଚ୍ଚ ୧୦ ତାରିଖ ସଂଖ୍ୟାରେ ଉଦ୍ଧୃତ ତଥ୍ୟ ଅନୁସାରେ ୧୯୧୭ ମସିହାର ଶେଷ ଆଡ଼କୁ ଗ୍ରେଟ ବ୍ରିଟେନରେ ଟ୍ରେଡ଼ ୟୁନିଅନ ସଭ୍ୟ ସଂଖ୍ୟା ୫,୫୦୦,୦୦୦ ଥିବା ସ୍ଥଳେ ୧୯୧୮ ଶେଷ ବେଳକୁ ତାହା ୬,୨୦୦,୦୦୦କୁ ବୃଦ୍ଧି ପାଇଥିଲା, ଅର୍ଥାତ୍ ଶତକଡ଼ା ୧୯ ବୃଦ୍ଧି ପାଇଥିଲା । ୧୯୧୯

ଶେଷ ବେଳକୁ ସଭ୍ୟ ସଂଖ୍ୟା ୭, ୫୦୦,୦୦୦କୁ ବୋଲି ହିସାବ କରି ଯାଇଥିଲା । ଫ୍ରାନ୍ସ ଓ ଜର୍ମାନୀର ଅନୁରୂପ ହିସାବ ମୋ ପାଖରେ ନାହିଁ, କିନ୍ତୁ ସୁପରିଚିତ ଅବିସମ୍ବାଦିତ ଓ ସାଧାରଣ ଭାବେ ସ୍ୱୀକୃତ ତଥ୍ୟାବଳୀରୁ ପ୍ରମାଣ ମିଳେ ଯେ, ଏହି ସବୁ ଦେଶର ଟ୍ରେଡ୍ ୟୁନିଅନ ଗୁଡ଼ିକରେ ମଧ୍ୟ ସଭ୍ୟ ସଂଖ୍ୟା ଦ୍ରୁତ ହାରରେ ବୃଦ୍ଧିପାଇଥିଲା ।

ଏହିସବୁ ତଥ୍ୟରୁ ସ୍ପଷ୍ଟ ହୋଇ ଯାଉଛି ଏବଂ ଅନ୍ୟାନ୍ୟ ହଜାର ହଜାର ଲକ୍ଷଣରୁ ଏ କଥା ପ୍ରମାଣିତ ହୋଇଯାଇଛି ଯେ, ସର୍ବହରା ଜନସାଧାରଣଙ୍କ ମଧ୍ୟରେ, "ସାଧାରଣ କର୍ମୀମାନଙ୍କ" ମଧ୍ୟରେ, ପଶ୍ଚାତ୍ପଦ ଅଂଶ ମଧ୍ୟରେ ଶ୍ରେଣୀ ଚେତନା ଓ ସଂଗଠନ ପାଇଁ ଆକାଂକ୍ଷା ବଢ଼ି ବଢ଼ି ଚାଲିଛି । ଗ୍ରେଟବ୍ରିଟେନ, ଫ୍ରାନ୍ସ ଓ ଜର୍ମାନୀରେ ଲକ୍ଷ ଲକ୍ଷ ଶ୍ରମିକ ପ୍ରଥମଥର ପାଇଁ ଏକ ସମ୍ପୂର୍ଣ୍ଣ ସଂଗଠନହୀନ ଅବସ୍ଥାରୁ ବର୍ତ୍ତମାନ ପ୍ରାଥମିକ, ସର୍ବନିମ୍ନ, ଅତି ସରଳ ଏବଂ (ଯେଉଁମାନେ ବୁର୍ଜୁଆ-ଗଣତାନ୍ତ୍ରିକ କୁସଂସ୍କାରରେ ସୁପରିଚିତ ଅଛନ୍ତି ସେଇମାନଙ୍କ ପାଇଁ) ସବୁଠାରୁ ସହଜ ବୋଧ୍ୟ ଏକ ସାଂଗଠନିକ ରୂପ ଆଡ଼କୁ ଅର୍ଥାତ୍ ଟ୍ରେଡ୍ ୟୁନିଅନଗୁଡ଼ିକ ଆଡ଼କୁ ଆଗେଇ ଯାଉଛନ୍ତି । ତଥାପି ବିପ୍ଳବୀ, ଅଥଚ ନିର୍ବୋଧ ବାମପନ୍ଥୀ କମ୍ୟୁନିଷ୍ଟମାନେ ଛିଡ଼ା ହୋଇ ଖାଲି "ଜନଗଣ" "ଜନଗଣ" ବୋଲି ଚିତ୍କାର କରନ୍ତି ଓ ଟ୍ରେଡ୍ ୟୁନିଅନ ଗୁଡ଼ିକରେ କାମ କରିବାକୁ ମନା କରନ୍ତି !! ସେଗୁଡ଼ିକ "ପ୍ରତିକ୍ରିୟାଶୀଳ" ଏହି ଆଳରେ ସେମାନେ ମନା କରନ୍ତି !! ଆଉ ସେମାନେ ଉଦ୍ଭାବନ କରନ୍ତି ଏକ ଖାଣ୍ଟି ନୂଆ, ଫେଳଙ୍କ ଶୁଦ୍ଧ, "ଶ୍ରମିକ ୟୁନିଅନ", ଯିଏ ବୁର୍ଜୁଆ ଗଣତାନ୍ତ୍ରିକ କୁସଂସ୍କାରରୁ ମୁକ୍ତ ଓ ବୃତ୍ତି ବା ସଂକୀର୍ଣ୍ଣ ବୃତ୍ତି-ୟୁନିଅନର ପାପମୁକ୍ତ, ଯାହାକୁ ସେମାନେ ଦାବୀ କରି ବସନ୍ତି ଯେ ସେଗୁଡ଼ିକ ବ୍ୟାପକ ସଂଗଠନ ହେବେ (ହେବେ !) ଆଉ ସେଠାରେ ସଭ୍ୟ ହେବାର ଏକମାତ୍ର (ଏକମାତ୍ର !) ସର୍ତ୍ତ ରହିବ "ସୋଭିଏତ୍ ବ୍ୟବସ୍ଥା ଓ ଅଧିନାୟକତ୍ୱର ସ୍ୱୀକୃତି" ! (ପୂର୍ବେ ଉଦ୍ଧୃତ ଅନୁଚ୍ଛେଦ ଦ୍ରଷ୍ଟବ୍ୟ) ।

"ବାମପନ୍ଥୀ" ବିପ୍ଳବୀମାନେ ଯେଉଁ ନିର୍ବୋଧତାର ପରିଚୟ ଦେଇଛନ୍ତି ଓ ବିପ୍ଳବ ପ୍ରତି ଯେଉଁ କ୍ଷତିକର କାମ କରିଛନ୍ତି ତା ଠାରୁ ଅଧିକ ନିର୍ବୋଧତା ଓ କ୍ଷତିକର କାମ ଆଉ କଳ୍ପନା କରାଯାଇ ପାରେ ନା । ଏପରି କି ବୁର୍ଝୋଆ ଓ ମିତ୍ର ଗୋଷ୍ଠୀର ବୁର୍ଜୁଆଶ୍ରେଣୀ ଉପରେ ଏକ ଅଭୂତପୂର୍ବ ବିଜୟ ହାସଲ କରିବାର ଅଢ଼େଇ ବର୍ଷ ପରେ କି ଆଜି ଆମ୍ଭେମାନେ ଯଦି ରୁଷିଆରେ "ଅଧିନାୟକତ୍ୱର ସ୍ୱୀକୃତି"କୁ ଟ୍ରେଡ୍ ୟୁନିଅନ ସଭ୍ୟପଦ ଲାଭର ଏକ ସର୍ତ୍ତ କରି ବସୁ, ତାହା ହେଲେ ଆମ୍ଭେମାନେ ଭୁଲ କରି ବସିବା, ଜନସାଧାରଣଙ୍କ ଉପରେ ଆମର ପ୍ରଭାବକୁ କ୍ଷୁର୍ଣ୍ଣ କରି ବସିବା ଓ ମେନ୍‌ଶେଭିକମାନଙ୍କୁ ସାହାଯ୍ୟ କରି ବସିବା । କାରଣ କମ୍ୟୁନିଷ୍ଟମାନଙ୍କର ସାମଗ୍ରିକ କର୍ତ୍ତବ୍ୟ ହେଉଛି ପଶ୍ଚାତ୍‌ପଦ ଜନତାଙ୍କୁ ବୁଝାଇବା ପାଇଁ ଓ ସେମାନଙ୍କର ମଧ୍ୟରେ କାମ କରିବା ପାଇଁ ନିଜକୁ ସକ୍ଷମ କରିବା ଏବଂ କୃତ୍ରିମ ଓ ଶିଶୁ ସୁଲଭ "ବାମପନ୍ଥୀ" ସ୍ଲୋଗାନ ଦେଇ ନିଜକୁ ସେମାନଙ୍କଠାରୁ ଦୂରେଇ ନ ରଖିବା ।

ଗମ୍ପର୍ସ, ହେଣ୍ଡରସନ, ଜୁହୋ ଓ ଲେଜିସ୍ନ ମହାଶୟଗଣ ଯେ "ବାମପନ୍ଥୀ" ବିପ୍ଳବୀମାନଙ୍କ ପ୍ରତି ଖୁବ୍ କୃତଜ୍ଞ ସେ ବିଷୟରେ ସନ୍ଦେହ ରହିବା ଅନୁଚିତ । ଏହି ବାମପନ୍ଥୀ ବିପ୍ଳବୀମାନେ ଜର୍ମାନ ବିରୋଧୀ ପକ୍ଷ ପରି "ମିତଗତ ଖୁବେ" (ଈଶ୍ୱର ଏଇ ସବୁ ମିତ"ରୁ ଆମକୁ ରକ୍ଷା କରନ୍ତୁ !), ଅଥବା ଆମେରିକାର ବିଶ୍ୱ ଶିଳ୍ପ ଶ୍ରମିକଙ୍କ ଭିତରେ ଥିବା କେତେକ ବିପ୍ଳବୀଙ୍କ ପରି ପ୍ରତିକ୍ରିୟାଶୀଳ ଟ୍ରେଡ୍ ୟୁନିଅନକୁ ପରିତ୍ୟାଗ କରିବା ବା ସେଥିରେ କାମ କରିବାକୁ ଅସ୍ୱୀକାର କରିବା ମତ ସପକ୍ଷରେ ଓକିଲତି କରନ୍ତି ! ଏ ବିଷୟରେ ସନ୍ଦେହ ରହିବା ଅନୁଚିତ ଯେ, ଏହି ଭଦ୍ରବ୍ୟକ୍ତି-ଗଣ, ସୁବିଧାବାଦର ଏହି "ନେତୃଗଣ" ବୁର୍ଜୁଆ ସରକାର, ତାର ପୁରୋହିତ ଗୋଷ୍ଠୀ, ତାର ପୋଲିସ ଓ ଆଇନ ଅଦାଲତକୁ ସାହାଯ୍ୟ କରିବା ପାଇଁ ଟ୍ରେଡ୍ ୟୁନିଅନଗୁଡ଼ିକରେ କମ୍ୟୁନିଷ୍ଟମାନଙ୍କର ଯୋଗ ଦାନକୁ ବନ୍ଦ କରିବାକୁ, ଯେ କୌଣସି ଉପାୟରେ ସେମାନଙ୍କୁ ସେଥିରୁ

ବାହାରି କରି ଦେବାକୁ ଟ୍ରେଡ୍ ୟୁନିଅନଗୁଡ଼ିକରେ ସେମାନଙ୍କର କାମକୁ ଯେତେଦୂର ସମ୍ଭବ ଅପ୍ରୀତିକର କରି ଦେବାକୁ ସେମାନଙ୍କୁ ଲାଞ୍ଛିତ; ପ୍ରତାରିତ ତଥା ନିର୍ଯାତିତ କରିବାକୁ ବୁର୍ଜୁଆ କୂଟନୀତିର ପ୍ରତ୍ୟେକଟି କୌଶଳର ଆଶ୍ରୟ ନିଶ୍ଚୟ ନେବେ। ଏହାର ସମ୍ମୁଖୀନ ହେବାକୁ ହେଲେ ସବୁ କିଛି ସ୍ୱାର୍ଥ ତ୍ୟାଗ କରିବା ପାଇଁ ଆମକୁ ସମର୍ଥ ହେବାକୁ ପଡ଼ିବ ଏବଂ ଏପରିକି—ଯଦି ଦରକାର ପଡ଼େ—ଟ୍ରେଡ୍ ୟୁନିଅନ ଭିତରେ କେବଳ ପ୍ରବେଶ କରିବାକୁ ଓ ତା ଭିତରେ ରହିବାକୁ ଓ ଯେ କୌଣସି ମତେ ତା ଭିତରେ କମ୍ୟୁନିଷ୍ଟ କାମ କରିବାକୁ ସବୁ ପ୍ରକାର କୌଶଳ, [illegible], ବେଆଇନ ପଦ୍ଧତି ତଥା ଫାଙ୍କି ଓ ଛଳନା ପ୍ରୟୋଗ କରିବାକୁ ହେବ। ଜାର ଅମଳରେ, ୧୯୦୫ ପର୍ଯ୍ୟନ୍ତ କୌଣସି ପ୍ରକାର "ଆଇନଗତ ସମ୍ଭାବନା" ଆମର ନ ଥିଲା। କିନ୍ତୁ ଯେତେବେଳେ ଗୋଇନ୍ଦା ପୋଲିସ ଗୁପ୍ତଚର ଜୁବାଟୋଭ୍ ବିପ୍ଳବୀମାନଙ୍କୁ ଫାନ୍ଦରେ ପକାଇବାକୁ ଓ ସେମାନଙ୍କୁ ପ୍ରତିହତ କରିବାକୁ ବ୍ଲାକ-ହଣ୍ଡ୍ରେଡ୍ ଶ୍ରମିକ ସଭା ଓ ଶ୍ରମିକ ସମିତି ଇତ୍ୟାଦି ଗଠନ କଲା, ସେତେବେଳେ ଆମ୍ଭେମାନେ ଆମର ପାର୍ଟି ସଭ୍ୟମାନଙ୍କୁ ସେଇ ସଭାକୁ ଓ ସମିତି ଭିତରକୁ କାମ କରିବାକୁ ପଠାଇଲୁ। ( ତାଙ୍କ ଭିତରେ ଜଣକର କଥା ମୋର ଖୋଦ ମନେ ଅଛି। ସେ ହେଉଛନ୍ତି ସେଣ୍ଟପିଟର୍ସ ବର୍ଗର ଜଣେ ବିଶିଷ୍ଟ ଶ୍ରମିକ, କମରେଡ୍ ବାବୁଶ୍କିନ୍। ୧୯୦୬ ମସିହାରେ ଜାର ସୈନ୍ୟାଧ୍ୟକ୍ଷ-ମାନେ ତାଙ୍କୁ ଗୁଳିକରି ହତ୍ୟାକଲେ )। ସେମାନେ ଜନସାଧାରଣଙ୍କ ସହିତ ଯୋଗାଯୋଗ ପ୍ରତିଷ୍ଠା କଲେ, ସେମାନଙ୍କର ଆନ୍ଦୋଳନକୁ ପରି-ଚାଳନା କରିବାକୁ ସକ୍ଷମ ହେଲେ ଏବଂ ଜୁବାଟୋଭର ଦଲାଲମାନଙ୍କ * ପ୍ରଭାବରୁ ଶ୍ରମିକମାନଙ୍କୁ ବାହାର କରି ଆଣିବାରେ ସଫଳ ହେଲେ।

---

* ଗମ୍ପର୍ସ, ହେଣ୍ଡ୍ରସନ, ଜୁହୋ ଓ ଲେଜିସ୍ଲାଭରନମାନେ ଜୁବାଟୋ ଭଜଲୋକ ଛଡ଼ା ଆଉ କିଛି ନୁହନ୍ତି। କିନ୍ତୁ ଆମର ଜୁବାଟୋଭଠାରୁ କେବଳ ସେମାନଙ୍କର ୟୁରୋପୀୟ ବେଶ ପୋଷାକ, ଚାକଚକ୍ୟରେ,

ସେମାନଙ୍କ ଘୃଣ୍ୟମତ ଚଳାଇବା ଭିତରେ ସତ୍ୟ ସମ୍ପୃକ୍ତ, ଗଣତାନ୍ତ୍ରିକ ଭାବେ ଅନୁସୃତ ପଦ୍ଧତିର କୋମଳତାରେ ପ୍ରାର୍ଥକ୍ୟ ଥିଲା । ଅବଶ୍ୟ, ପଶ୍ଚିମ ୟୁରୋପରେ ଯେଉଁ ଆଇନ ସଙ୍ଗତ, ନିୟମତାନ୍ତ୍ରିକ ଓ ବୁର୍ଜୁଆ—ଗଣତାନ୍ତ୍ରିକ କୁସଂସ୍କାର ଅତି ଗଭୀର ଭାବେ ବଦ୍ଧମୂଳ ହୋଇ ରହିଛି, ସେଠାରେ ଏ କାମ କରିବା ଅଧିକ କଠିନ । ତଥାପି ସେଠାରେ ଏ କାମ ଚଳାଇବା ସମ୍ଭବ ଓ ଚଳାଇବାକୁ ପଡ଼ିବ, ଧାରାବାହିକଭାବେ ଚଳାଇବାକୁ ପଡ଼ିବ ।

ମୋ ମତରେ, ତୃତୀୟ ଆନ୍ତର୍ଜାତିକର କାର୍ଯ୍ୟନୀତି କମିଟି ପ୍ରତିକ୍ରିୟାଶୀଳ ଟ୍ରେଡ୍‌ୟୁନିଅନ ଗୁଡ଼ିକରେ ଯୋଗ ଦେବାକୁ ଅସ୍ୱୀକାର କରିବା ନୀତିକୁ ସାଧାରଣ ଭାବେ ନିନ୍ଦା କରିବା ଉଚିତ ( ଏଇ ଧରଣର ଅସ୍ୱୀକୃତି କାହିଁକି ବିଜ୍ଞତାର ପରିଚାୟକ ନୁହେଁ, ଏବଂ ତାହା ସର୍ବହରା ବିପ୍ଳବର କି ଦାରୁଣ କ୍ଷତିକରେ, ତାହା ବିଶଦ ଭାବେ ବୁଝାଇଦେବାକୁ ହେବ ) ଏବଂ ବିଶେଷ କରି ଓଲନ୍ଦାଜ କମ୍ୟୁନିଷ୍ଟ ପାର୍ଟିର କେତେକ ସଭ୍ୟଙ୍କର କାର୍ଯ୍ୟ-କଳାପକୁ ଯେଉଁମାନେ ପ୍ରତ୍ୟକ୍ଷ ବା ପରୋକ୍ଷରେ, ପ୍ରକାଶ୍ୟରେ ବା ଗୋପନରେ, ସମ୍ପୂର୍ଣ୍ଣ ବା ଆଂଶିକ ଭାବେ ଏହି ଭ୍ରାନ୍ତ ନୀତିକୁ ସମର୍ଥନ କରୁଛନ୍ତି ସେମାନଙ୍କୁ ନିନ୍ଦାକରିବା ପାଇଁ କମ୍ୟୁନିଷ୍ଟ ଆନ୍ତର୍ଜାତିକ ଆଗାମୀ କଂଗ୍ରେସକୁ ଆହ୍ୱାନ କରିବା ଉଚିତ । ଦ୍ୱିତୀୟ ଆନ୍ତର୍ଜାତିକର ସମସ୍ତ କର୍ମ କୌଶଳକୁ ତୃତୀୟ ଆନ୍ତର୍ଜାତିକ ବର୍ଜ୍ଜନ କରିବା ଉଚିତ । ଗୋଳମାଳିଆ କାମକୁ ଅଡ଼େଇ ଦେବା ବା ଘୋଡ଼େଇ ଦେବା ଉଚିତ ନୁହେଁ । ତାହାକୁ ସ୍ରେକଠୋକ କହି ଦେବାକୁ ହେବ । ସମସ୍ତ ସତ୍ୟଟିକୁ "ସ୍ୱାଧୀନ"-ମାନଙ୍କ ପାଖରେ ( ଜର୍ମାନୀର ସ୍ୱାଧୀନ ସୋଶାଲ ଡେମୋକ୍ରାଟିକ ଦଳ ) ସିଧାସଳଖ ଉପସ୍ଥାପିତ କରାଯାଉ; ସେହିପରି "ବାମପନ୍ଥୀ" କମ୍ୟୁନିଷ୍ଟ ମାନଙ୍କ ସାମନାରେ ମଧ୍ୟ ସମସ୍ତ ସତ୍ୟକୁ ଉପସ୍ଥାପିତ କରିବାକୁ ହେବ ।

[ ୭ମ ପରିଚ୍ଛେଦ ]

# ବୁର୍ଜୁଆ ପାର୍ଲାମେଣ୍ଟରେ ଆମର ଅଂଶ ଗ୍ରହଣ କରିବା ଉଚିତ କି ?

"ବାମପନ୍ଥୀ" ଜର୍ମାନ କମ୍ୟୁନିଷ୍ଟମାନେ ଅତ୍ୟନ୍ତ ତାଚ୍ଛଲ୍ୟ ସହ ଓ ଅତ୍ୟନ୍ତ ଲଘୁଚିତ୍ତରେ ଏହି ପ୍ରଶ୍ନର ନାସ୍ତି ମୂଳକ ଉତ୍ତର ଦେଇଥାନ୍ତି। ସେମାନଙ୍କର ଯୁକ୍ତି କଣ ? ଉପର ଲିଖିତ ଅନୁଚ୍ଛେଦରେ ଆମେ ଦେଖିଛୁ :

"........ଐତିହାସିକ ଭାବେ ଓ ରାଜନୈତିକ ଦୃଷ୍ଟିରୁ ସଂଗ୍ରାମର ପାର୍ଲାମେଣ୍ଟାରୀ ପଦ୍ଧତିର ଯେଉଁସବୁ ରୂପ ଅକାମି ହୋଇଗଲାଣି ସେସବୁ ରୂପକୁ ପୁଣି ଫେରିଯିବା......ଏହାକୁ ଦୃଢ଼ତାର ସହିତ ପ୍ରତ୍ୟାଖ୍ୟାନ କରିବାକୁ ହେବ......"।

ଉଦ୍ଭଟ୍ ଛଳନା ସହିତ ଏହି କଥା କୁହାଯାଇଛି, ଏବଂ ସୁସ୍ପଷ୍ଟ ଭାବେ କଥାଟା ଭୁଲ । ପାର୍ଲାମେଣ୍ଟାରୀ ପଦ୍ଧତିକୁ "ଫେରିଯିବା" ! ଏହା ମଧ୍ୟରେ ଜର୍ମାନୀରେ ବୋଧହୁଏ ଗୋଟିଏ ସୋଭିଏତ୍ ପ୍ରଜାତନ୍ତ୍ର ପ୍ରତିଷ୍ଠିତ ହୋଇଯାଇଛି ? କିନ୍ତୁ କାହିଁ ତା' ହେଲପର ତ ଜଣାଯାଇନାହିଁ ! ତାହାହେଲେ "ଫେରିଯିବାର" କଥା କହିବା କିପରି ଠିକ୍ ? ଏହା କଣ ଫମ୍ପା ଆବାଜ ନୁହେଁ ?

ପାର୍ଲାମେଣ୍ଟାରୀ-ବ୍ୟବସ୍ଥା "ଐତିହାସିକ ଭାବେ ଅକାମି ହୋଇପଡ଼ିଛି" ପ୍ରଚାରର ଦୃଷ୍ଟିରୁ ତାହା ଠିକ୍ । କିନ୍ତୁ ପ୍ରତ୍ୟେକେ ଜାଣନ୍ତି ଯେ, ଏହାକୁ କାର୍ଯ୍ୟତଃ ଅତିକ୍ରମ କରିବା ତଥାପି ଅନେକ ଦୂର ଅଛି । ବହୁ ଦଶକ

ଆଗର୍ ସମ୍ପୂର୍ଣ୍ଣ ନ୍ୟାଯ୍ୟସଙ୍ଗତ ଭାବେ ଘୋଷଣା କରାଯାଇ ପାରେଥାନ୍ତା ଯେ ପୁଂଜିବାଦ "ଐତିହାସିକ ଭାବେ ଅକାମି ହୋଇପଡ଼ିଛି", କିନ୍ତୁ ପୁଂଜିବାଦର ମାଟି ଉପରେ ଦୀର୍ଘକାଳ ତଥା ଲଗାତର ସଂଗ୍ରାମର ପ୍ରୟୋଜନୀୟତା ଆଦୌ ଦୂର ହୋଇ ନାହିଁ । ବିଶ୍ୱ ଇତିହାସର ଦୃଷ୍ଟିକୋଣରୁ ପାର୍ଲାମେଣ୍ଟାରୀ-ପଦ୍ଧତି "ଐତିହାସିକ ଭାବେ ଅକାମି ହୋଇପଡ଼ିଛି ।" ଅର୍ଥାତ ବୁର୍ଜୁଆ ପାର୍ଲାମେଣ୍ଟାରୀ-ପଦ୍ଧତିର ଯୁଗ ଶେଷ ପର୍ଯ୍ୟାୟକୁ ଆସିଛି ଓ ସର୍ବହରାର ଅଧିନାୟକତ୍ୱର ଯୁଗ ଆରମ୍ଭ ହୋଇଯାଇଛି । ତାହା ତର୍କ ବହିର୍ଭୂତ । କିନ୍ତୁ ବିଶ୍ୱ ଇତିହାସ ଦଶକ ପରେ ଦଶକରେ ଗଣନା କରାହୁଏ । ବିଶ୍ୱ ଇତିହାସର ମାନଦଣ୍ଡରେ ମାପି ବସିଲେ ଦଶ ବା କୋଡ଼ିଏ ବର୍ଷର ଏପଟ ସେପଟରେ କୌଣସି ପାର୍ଥକ୍ୟ ନାହିଁ, ବିଶ୍ୱ ଇତିହାସର ଦୃଷ୍ଟିକୋଣରୁ ଏହି ସମୟଟି ଏତେ ଛୋଟ ଯେ ଏହାର ଗୋଟାଏ ମୋଟାମୋଟି ହିସାବ କରାଯାଇ ପାରିବ ନାହିଁ । କିନ୍ତୁ ଠିକ୍ ସେହି କାରଣରୁ ବାସ୍ତବ ରାଜନୀତି କ୍ଷେତ୍ରରେ ବିଶ୍ୱ ଇତିହାସର ମାନଦଣ୍ଡ ପ୍ରୟୋଗ କରିବାକୁ ଯିବା ଏକ ହାସ୍ୟାସ୍ପଦ ତତ୍ତ୍ୱଗତ ଗୁରୁତର ଭୁଲ ।

ପାର୍ଲାମେଣ୍ଟାରୀ ବ୍ୟବସ୍ଥା କଣ "ରାଜନୈତିକ ଦିଗରୁ ଅକାମି" ହୋଇପଡ଼ିଛି ? ତାହା ପୁରାପୁରି ଅନ୍ୟ ଏକ ବ୍ୟାପାର । ତାହା ସତ୍ୟ ହେଲେ, "ବାମପନ୍ଥୀମାନଙ୍କର" ଅବସ୍ଥାନ ଶକ୍ତିଶାଳୀ ହୁଅନ୍ତା । ସବାଧିକ ଗଭୀର ବିଶ୍ଳେଷଣ ଦ୍ୱାରା ଏହାକୁ ପ୍ରମାଣିତ କରିବାକୁ ହେବ, କିନ୍ତୁ ଠିକ ଭାବେ ଏହି ବିଷୟରକୁ ଆରମ୍ଭ କରିବାକୁ ହେବ "ବାମପନ୍ଥୀ-ମାନେ" ତା'ବି ଜାଣନ୍ତି ନାହିଁ । ୧୯୨୦ ମସିହାର ଫେବୃଆରୀ ମାସରେ କମ୍ୟୁନିଷ୍ଟ ଆନ୍ତର୍ଜାତିକର ଆମ୍‌ଷ୍ଟାରଡ଼େମ୍‌ରେ ଥିବା ଅସ୍ଥାୟୀ ବ୍ୟୁରୋର ବୁଲେଟିନର ପ୍ରଥମ ସଂଖ୍ୟାରେ "ପାର୍ଲାମେଣ୍ଟାରୀ ବ୍ୟବସ୍ଥା ସମ୍ପର୍କୀୟ ପ୍ରବନ୍ଧ" ପ୍ରକାଶିତ ହୋଇଥିଲା । ସେଥିରେ ସ୍ପଷ୍ଟଭାବେ ଓଲନ୍ଦାଜ-ବାମପନ୍ଥୀ ବା ବାମପନ୍ଥୀ-ଓଲନ୍ଦାଜ ମାନଙ୍କର ପଚେଷ୍ଟାକୁ

ରୂପ ତଥା ହୋଇଥିଲା । କିନ୍ତୁ ଏହି ବିଶ୍ଳେଷଣ ମଧ୍ୟରେ କିପରି ଯାଯାତଙ୍କ ସବେ ଭୁଲ ତାହା ଆମେ ଦେଖି ପାରିବା ।

ପ୍ରଥମତଃ, ଆମେ ଜାଣୁ ଯେ ରୋଜା ଲକ୍ସେମ୍ବର୍ଗ ଓ କାର୍ଲ ଲିବ୍‌କ୍‌ନେକ୍ଟଙ୍କ ପରି ବିଶିଷ୍ଟ ରାଜନୈତିକ ନେତାଗଣଙ୍କର ମତ ବିରୁଦ୍ଧରେ ୧୯୧୯ ମସିହା ଜାନୁୟାରୀରେ ଜର୍ମାନୀର "ବାମପନ୍ଥୀମାନେ" ପାର୍ଲାମେଣ୍ଟାରୀ ବ୍ୟବସ୍ଥାକୁ "ରାଜନୈତିକ ଦିଗରୁ ଅକାମି" ବୋଲି ବିବେଚନା କରି-ଥିଲେ । ଏକଥା ଆମେ ଜାଣୁ ଯେ "ବାମପନ୍ଥୀମାନେ" ଏ ବିଷୟରେ ଭୁଲ କରିଥିଲେ । କେବଳ ଏହି ଗୋଟିଏ ସତ୍ୟ ଗୋଟିଏ ମାତ୍ର ଧକ୍କାରେ ପାର୍ଲାମେଣ୍ଟାରୀ ବ୍ୟବସ୍ଥା ଯେ "ରାଜନୈତିକ ଦିଗରୁ ଅକାମି" ଏହି ଧାରଣାକୁ ଧୂଳିସାତ୍ କରି ଦେଉଛି । ସେହି ସମୟରେ ପ୍ରେମ ନଜିର ଯେଉଁ ଭୁଲ ଅବିସମ୍ବାଦୀ ଥିଲା, ତାହା ଆଜି ଯେ କାହିଁକି ଆଉ ଭୁଲ ନୁହଁ ସେକଥା ପ୍ରମାଣ କରିବାର ଦାୟିତ୍ୱ "ବାମପନ୍ଥୀମାନଙ୍କ" ଉପରେ ପଡ଼ିଛି । ସେମାନେ ତାର ବିନ୍ଦୁ ବିସର୍ଗ ପ୍ରମାଣ ବି ଦେଇ ନାହାନ୍ତି ଓ ଦେଇ ପାରିବେ ନାହିଁ । ନିଜର ଭୁଲ ପ୍ରତି କୌଣସି ରାଜନୈତିକ ପାର୍ଟିର ମନୋଭାବରୁ ସେ ପାର୍ଟି କେତେଦୂର ଆନ୍ତରିକଭାବେ ଓ ବାସ୍ତବକ୍ଷେତ୍ରରେ ନିଜର ଶ୍ରେଣୀ ଓ ଖଟିଖିଆ ଜନସାଧାରଣଙ୍କ ପ୍ରତି ତାର ଦାୟିତ୍ୱ ପାଳନ କରୁଛି, ସେ କଥା ବିଚାର କରି ହେବ । ତାହା ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ଓ ସୁନିଶ୍ଚିତ ଉପାୟ ଗୁଡ଼ିକ ମଧ୍ୟରୁ ଅନ୍ୟତମ ଅଟେ । ଅକପଟଭାବରେ ଭୁଲତ୍ରୁଟି ସ୍ୱୀକାର କରିବା, ଭୁଲର କାରଣ ଠିକ୍ ବାହାର କରିବା, ଯେଉଁ ଅବସ୍ଥାରେ ଏଇ ଭୁଲ ଘଟିଲା, ତାର ବିଶ୍ଳେଷଣ କରିବା ଏବଂ ଭୁଲ ସଂଶୋଧନ କରିବାର ଉପାୟ ଗୁଡ଼ିକ ପୁଙ୍ଖାନୁପୁଙ୍ଖ ଆଲୋଚନା କରିବା—ଏହା ହେଲା ଗୋଟିଏ ଗୁରୁତ୍ୱପୂର୍ଣ୍ଣ ପାର୍ଟିର ଲକ୍ଷଣ, ତାହାର କର୍ତ୍ତବ୍ୟ ପାଳନ କରିବାର ଏକମାତ୍ର ବାଟ, ନିଜର ଶ୍ରେଣୀକୁ ଓ ପରେ ପରେ ଜନଗଣଙ୍କୁ ଶିକ୍ଷିତ କରିବା ଓ ସୁଦକ୍ଷ କରିବାର ପ୍ରକୃଷ୍ଟ ପଥ । ଏଇ କର୍ତ୍ତବ୍ୟ ପୂରଣ କରିବାରେ ଅସଫଳତା, ଧ୍ୟାନ, ଯତ୍ନ

ଓ ବସ୍ତୁର ବୃଦ୍ଧିର ସହିତ ନଜର ସୁସ୍ପଷ୍ଟ ଭୁଲ ଭ୍ରାନ୍ତିକୁ ପର୍ଯ୍ୟାଲୋଚନ କରିବାରେ ସେମାନଙ୍କର ଚରମ ଅସଫଳତା ଯୋଗୁଁ ହିଁ ଜର୍ମାନୀରେ (ଏବଂ ହଲଣ୍ଡରେ) "ବାମପନ୍ଥୀମାନେ" ପ୍ରମାଣ କରି ଦେଇଛନ୍ତି ଯେ, ସେମାନେ ଶ୍ରେଣୀର ପାର୍ଟି ନୁହଁନ୍ତି, କିନ୍ତୁ ଗୋଟିଏ ଚକ୍ର, ସେମାନେ ଜନଗଣଙ୍କ ପାର୍ଟି ନୁହଁନ୍ତି, କିନ୍ତୁ କେତେକ ବୁଦ୍ଧିଜୀବୀଙ୍କର ଗୋଟିଏ ଗୋଷ୍ଠୀ; କେତେକ ଶ୍ରମିକଙ୍କର ଗୋଷ୍ଠୀ, ଯେଉଁମାନେ ବୁର୍ଜୁଆବାଦର ସାଂଘାତିକ ଲକ୍ଷଣକୁ ଅନୁକରଣ କରି ଚାଲନ୍ତି।

ଦ୍ୱିତୀୟତଃ, "ବାମପନ୍ଥୀ"ମାନଙ୍କ ଫ୍ରାଙ୍କଫର୍ଟ ଗୋଷ୍ଠୀର ଯେଉଁ ପୁସ୍ତିକା ଆମେ ପୂର୍ବରୁ ବିଶେଷଭାବେ ଉଲ୍ଲେଖ କରିଛୁ, ତାକୁ ତଳେ ଉଦ୍ଧାର କଲୁ :

".........ଲକ୍ଷ ଲକ୍ଷ ଶ୍ରମିକ ଯେଉଁମାନେ ବର୍ତ୍ତମାନ ବି କେନ୍ଦ୍ରର ନୀତି ଅନୁସରଣ କରନ୍ତି (କାଥଲିକ "ସେଣ୍ଟର" ପାର୍ଟି) ସେମାନେ ପ୍ରତିବିପ୍ଳବୀ ଅଟନ୍ତି। ଗ୍ରାମାଞ୍ଚଳର ସର୍ବହରାଗଣ ହଜାର ହଜାର ପ୍ରତିବିପ୍ଳବୀ ସୈନ୍ୟବାହିନୀ ଯୋଗାଇଥାନ୍ତି।" (ପୁସ୍ତିକାର ୩ୟ ପୃଷ୍ଠା ଦ୍ରଷ୍ଟବ୍ୟ)।

ଏସବୁ କଥା ଦେଖାଇ ଦେଉଛି ଯେ, ଏହି ପ୍ରବୃତ୍ତି ଅତି ମାତ୍ରାରେ ସାଧାରଣ ଓ ଅତିରଂଜିତ। କିନ୍ତୁ ଯେଉଁ ମୌଳିକ କଥା ଏଥିରେ ଦିଆଯାଇଛି ତାହା ଅଖଣ୍ଡନୀୟ ଏବଂ "ବାମପନ୍ଥୀ"ମାନଙ୍କ ଦ୍ୱାରା ଏହାର ସ୍ୱୀକୃତି ସେମାନଙ୍କ ତ୍ରୁଟିର ସ୍ପଷ୍ଟ ପ୍ରମାଣ। ଯେତେବେଳେ "ଲକ୍ଷ ଲକ୍ଷ" ଓ "ଅଗଣିତ" ସର୍ବହରା କେବଳ ସାଧାରଣ ଭାବେ ପାର୍ଲାମେଣ୍ଟାରୀ ପଦ୍ଧତିର ପକ୍ଷପାତୀ ନୁହନ୍ତି, ସେମାନେ ଏକଦମ "ପ୍ରତିବିପ୍ଳବୀ" ସେତେ-ବେଳେ "ପାର୍ଲାମେଣ୍ଟାରୀ ପ୍ରଥା ରାଜନୈତିକ ଦୃଗରୁ ଅକାମୀ ହୋଇଗଲାଣି" ବୋଲି କିପରି କିଏ କହିପାରିବ ? ସ୍ପଷ୍ଟତଃ, ଜର୍ମାନୀରେ ପାର୍ଲାମେଣ୍ଟାରୀ ବ୍ୟବସ୍ଥା ରାଜନୈତିକ ଭାବେ ଏପର୍ଯ୍ୟନ୍ତ ବି ଅକାମୀ ହୋଇନାହିଁ। ଏ କଥା ସୁସ୍ପଷ୍ଟ ଯେ ଜର୍ମାନୀରେ "ବାମପନ୍ଥୀମାନେ" ନିଜ ଇଚ୍ଛା ଆକାଂକ୍ଷାକୁ ଓ ରାଜନୈତିକ ଆଦର୍ଶଗତ ଦୃଷ୍ଟିଭଙ୍ଗୀକୁ, ପ୍ରକୃତ ବାସ୍ତବତା ବୋଲି

ଭୁଲ କରି ବସିଛନ୍ତି । ବିପ୍ଳବୀମାନଙ୍କ ପକ୍ଷରେ ଏହା ହେଲ ସବୁଠାରୁ ମାରାତ୍ମକ ତ୍ରୁଟି । ରୁଷିଆରେ ଦୀର୍ଘକାଳ ବ୍ୟାପୀ ଓ ବହୁରୂପୀ ଜାରସାହି ଶାସନର ଅତି ହିଂସ୍ର ଓ ବର୍ବର ଶୃଙ୍ଖଳ ବହୁବିଧ ବିପ୍ଳବୀଙ୍କୁ ସୃଷ୍ଟି କରିଥିଲା । ସେମାନେ ଦେଖାଇଥିଲେ ବିସ୍ମୟକର ନିଷ୍ଠା, ଉତ୍ସାହ-ଉଦ୍ଦୀପନା, ସାହସ ଓ ମନର ଦୃଢ଼ତା । ସେଇ ରୁଷିଆରେ ବିପ୍ଳବୀମାନଙ୍କର ଏତାଦୃଶ ଭୁଲକୁ ଆମେ ଖୁବ ପାଖରେ ରହି ଲକ୍ଷ୍ୟ କରିଛୁ, ଗମ୍ଭୀର ମନଯୋଗ ସହକାରେ ଅନୁଧ୍ୟାନ କରିଛୁ ଏବଂ ସେ ସମ୍ପର୍କରେ ଆମର ପ୍ରତ୍ୟକ୍ଷ ଜ୍ଞାନ ଥିବାରୁ ଅନ୍ୟମାନଙ୍କ ଭିତରେ ମଧ୍ୟ ଏହି ଭୁଲକୁ ଆମେ ବେଶ ସ୍ପଷ୍ଟ ଭାବେ ଦେଖି ପାରୁଛୁ । ଅବଶ୍ୟ, ପାର୍ଲାମେଣ୍ଟାରି ପଦ୍ଧତି ଜର୍ମାନୀ କମ୍ୟୁନିଷ୍ଟ-ମାନଙ୍କ ପାଇଁ "ରାଜନୈତିକ ଭାବେ ଅକାମୀ", କିନ୍ତୁ ଅସଲ କଥାଟା ହେଲା—ଆମପାଇଁ ଯାହା ଅକାମୀ, ଶ୍ରେଣୀ ତଥା ଜନସାଧାରଣଙ୍କ ପାଇଁ ଯେ ତାହା ଅକାମୀ, ସେପରି ବିଚାର କରିବା ଉଚିତ ହେବ ନାହିଁ । ଏଠାରେ ଆମେ ପୁଣି ଦେଖୁ ଯେ ଏହି "ବାମପନ୍ଥୀମାନେ" କିପରି ଯୁକ୍ତି କରିବାକୁ ହୁଏ, କିପରି ନିଜକୁ ଶ୍ରେଣୀର ପାର୍ଟି, ଜନଗଣଙ୍କ ପାର୍ଟି ହିସାବରେ ପରିଚାଳିତ କରିବାକୁ ହୁଏ ତାହା ଜାଣନ୍ତି ନାହିଁ । ଜନଗଣଙ୍କ ସ୍ତରକୁ, ଶ୍ରେଣୀର ପଶ୍ଚାତପଦ ସ୍ତରକୁ କେହି ଖସିଯିବା ଉଚିତ ନୁହେଁ । ଏ ବିଷୟରେ ମତ ଭେଦର ଅବକାଶ ନାହିଁ । ସେମାନଙ୍କୁ ତିକ୍ତ ସତ୍ୟଟା କହି ଦେବାକୁ ପଡ଼ିବ । ସେମାନଙ୍କର ବୁର୍ଜୁଆ-ଗଣତାନ୍ତ୍ରିକ ଓ ପାର୍ଲାମେଣ୍ଟାରି କୁସଂସ୍କାରକୁ କୁସଂସ୍କାର ବୋଲି କହି ଦେବାକୁ ହେବ । କିନ୍ତୁ ତା ସାଙ୍ଗେ ସାଙ୍ଗେ ଧୀରସ୍ଥିର ଭାବେ ସମଗ୍ର ଶ୍ରେଣୀର ( କେବଳ ଏହାର କମ୍ୟୁନିଷ୍ଟ ଗ୍ରୁପ୍‌ଆବାହକମା ନୁହଁନ୍ତି ), ସମସ୍ତ ଖଟିଖିଆ ଜନଗଣଙ୍କର ( ସେମାନଙ୍କର କେବଳ ଅଗ୍ରଗାମୀ ଅଂଶ ସମୂହ ନୁହଁନ୍ତି ) ବାସ୍ତବ ଶ୍ରେଣୀ ଚେତନା ତଥା ପ୍ରସ୍ତୁତ ଅବସ୍ଥାକୁ ଅନୁଧ୍ୟାନ କରିବାକୁ ହେବ ।

ଏପରିକି "ଲକ୍ଷଲକ୍ଷ" ବା "ଅଗଣିତ" ସଂଖ୍ୟାରେ ନ ହେଲେ ବି ଶିଳ୍ପ ଶ୍ରମିକଙ୍କର ବେଶ୍ ଗୋଟାଏ ବଡ଼ ଧରଣର ସଂଖ୍ୟାଲଘୁ ଅଂଶ ଯଦି କ୍ୟାଥଲିକ ପାଦ୍ରୀ ଗୋଷ୍ଠୀକୁ ଅନୁସରଣ କରନ୍ତି, ଏବଂ ସେହି ଭଳି ଗ୍ରାମ୍ୟ ଶ୍ରମିକଙ୍କର ଏକ ସଂଖ୍ୟାଲଘୁ ଅଂଶ ଜମିଦାର ଓ ଧନୀ କୃଷକଙ୍କୁ ଅନୁସରଣ କରନ୍ତି, ତେବେ ଏକଥା ନିଃସନ୍ଦେହରେ ବୁଝି ନେବାକୁ ହେବ ଯେ, ଜର୍ମାନୀରେ ପାର୍ଲାମେଣ୍ଟାରି ବ୍ୟବସ୍ଥା ଏପର୍ଯ୍ୟନ୍ତ ବି ରାଜନୈତିକ ଭାବେ ଅକାମୀ ହୋଇ ପଡ଼ିନାହିଁ । ତାଛଡ଼ା ଆହୁରି ବୁଝିନେବାକୁ ହେବ ଯେ, ପାର୍ଲାମେଣ୍ଟାରି ନିର୍ବାଚନରେ ଅଂଶ ଗ୍ରହଣ କରିବା ଏବଂ ପାର୍ଲାମେଣ୍ଟାରି ମଞ୍ଚରୁ ସଂଗ୍ରାମ ଚଳାଇବା ବିପ୍ଳବୀ ସର୍ବହରା ଶ୍ରେଣୀ ପକ୍ଷରେ ଏକ ବାଧ୍ୟତାମୂଳକ କାର୍ଯ୍ୟ । କାରଣ ତଦ୍ୱାରା ହିଁ ବିପ୍ଳବୀ ସର୍ବହରା ଶ୍ରେଣୀ ନିଜ ଶ୍ରେଣୀର ଅନଗ୍ରସର ଅଂଶକୁ ଶିକ୍ଷିତ କରିବାର ଉଦ୍ଦେଶ୍ୟ ସାଧନ କରି ପାରିବ । ତଦ୍ୱାରା ହିଁ ବିପ୍ଳବୀ ଶ୍ରମିକଶ୍ରେଣୀ ଗ୍ରାମାଞ୍ଚଳର ଅନୁନ୍ନତ, ପଦଦଳିତ ଓ ଅଜ୍ଞ ଜନତାକୁ ଜାଗ୍ରତ ଓ ଶିକ୍ଷିତ କରିବାର ଉଦ୍ଦେଶ୍ୟ ସାଧନ କରିପାରିବ । ଯେତେଦିନ ପର୍ଯ୍ୟନ୍ତ ବୁର୍ଜୁଆ ପାର୍ଲାମେଣ୍ଟକୁ ଏବଂ ଅନ୍ୟାନ୍ୟ ସବୁ ପ୍ରତିକ୍ରିୟାଶୀଳ ଅନୁଷ୍ଠାନକୁ ଭାଙ୍ଗି ଦେବା ପାଇଁ ତୁମେ ଅସମର୍ଥ ସେତେଦିନ ପର୍ଯ୍ୟନ୍ତ ସେସବୁ ଭିତରେ ତୁମକୁ ନିଶ୍ଚୟ କାର୍ଯ୍ୟ କରିବାକୁ ପଡ଼ିବ । ତାର ଏକମାତ୍ର କାରଣ ହେଉଛି ସେ ସବୁ ସଂଗଠନ ଭିତରେ ତୁମେ ଆହୁରି ଏପରି ସବୁ ଶ୍ରମିକ ପାଇବ ଯେଉଁମାନେ ପାଦ୍ରୀମାନଙ୍କ ଦ୍ୱାରା ଓ ଗ୍ରାମ୍ୟ ଜୀବନର ନିରାନନ୍ଦମୟ ପରିବେଶ ଦ୍ୱାରା ବିମୋହିତ ହୋଇଯାଇଛନ୍ତି । ତା ନହେଲେ ନିଜକୁ କେବଳ ବାକ୍ୟ-ବାଗୀଶରେ ପରିଣତ କରିଦେବାର ବିପଦ ତୁମକୁ ବରଣ କରି ଆଣିବା ହିଁ ସାରହେବ ।

ବସ୍ତୁତଃ, ଏହି "ବାମପନ୍ଥୀ" କମ୍ୟୁନିଷ୍ଟମାନେ ବଲଶେଭିକ-ମାନଙ୍କର ପ୍ରଶଂସାରେ ଅନେକ କିଛି କହନ୍ତି । କିନ୍ତୁ ବେଳେବେଳେ ଇଚ୍ଛା ହୁଏ ସେମାନଙ୍କୁ ସ୍ପଷ୍ଟ ଭାବେ କହିଦେବାକୁ ଯେ, ତୁମେ ବାରୁ ଆମକୁ

ନିଜକୁ କମ ପ୍ରଶଂସା ବରଂ କର, କିନ୍ତୁ ବଲଶେଭିକମାନଙ୍କର ସଂଗ୍ରାମଗତ କୌଶଳକୁ ଆହୁରି ଅଧିକ ବୁଝିବାକୁ ଚେଷ୍ଟା କର, ସେସବୁ କୌଶଳ ସହିତ ଅଧିକ ପରିଚିତ ହେବାକୁ ଚେଷ୍ଟାକର ! ଆମେ ୧୯୧୭ ସାଲ ସେପ୍‌ଟେମ୍ବର-ନଭେମ୍ବର ମାସରେ ରୁଷିଆର ବୁର୍ଜୁଆ ପାର୍ଲାମେଣ୍ଟ ଅର୍ଥାତ ସାମ୍ବିଧାନିକ ସଭା ପାଇଁ ହୋଇଥିବା ନିର୍ବାଚନରେ ଅଂଶ ଗ୍ରହଣ କରିଥିଲୁ । ଆମର ଏହି କୌଶଳ ଠିକ ଥିଲା ନା ନଥିଲା ? ଯଦି ଠିକ୍ ନଥିଲା ତାହେଲେ ସେକଥା ପରିଷ୍କାର ଭାବେ କହିଦେବାକୁ ପଡ଼ିବ ଏବଂ ତାକୁ ପ୍ରମାଣ କରିବାକୁ ପଡ଼ିବ । କାରଣ ଆନ୍ତର୍ଜାତିକ କମ୍ୟୁନିଜମ୍ ସକାଶେ ନିର୍ଭୁଲ ସଂଗ୍ରାମଗତ କୌଶଳ ନିର୍ଦ୍ଧାରଣ କରିବା ଲାଗି ତାହା ଏକାନ୍ତ ଅପରିହାର୍ଯ୍ୟ । ଯଦି ତାହା ଠିକ୍ ତେବେ ସେଥିରୁ କେତେକ ଉପସଂହାରରେ ଆମକୁ ଉପନୀତ ହେବାକୁ ପଡ଼ିବ । ଅବଶ୍ୟ ରୁଷିଆର ଅବସ୍ଥା ଓ ପଶ୍ଚିମ ୟୁରୋପର ଅବସ୍ଥାକୁ ସମାନ ଭାବେ ତୁଳନା କରାଯାଇ ନପାରେ । କିନ୍ତୁ "ପାର୍ଲାମେଣ୍ଟାରି ପ୍ରଥା ରାଜନୈତିକ ଭାବେ ଅକାମୀ ହୋଇ ଗଲାଣି" ବୋଲି ଯେଉଁ ଧାରଣା ରହିଛି ତାର ଅର୍ଥ ସଂକ୍ରାନ୍ତୀୟ ସ୍ୱତନ୍ତ୍ର ପ୍ରଶ୍ନଟି ଯେତେହେତୁ ବିସ୍ତୃତ ସେହି ଦୃଷ୍ଟିରୁ ଆମ ଅଭିଜ୍ଞତାର ସଯତ୍ନ ଅନୁଧ୍ୟାନ ଏକାନ୍ତ ପ୍ରୟୋଜନ । କାରଣ ସୁନିର୍ଦ୍ଦିଷ୍ଟ ଅଭିଜ୍ଞତାଗୁଡ଼ିକୁ ଯଦି ଅନୁଧ୍ୟାନ କରାନଯାଏ ତାହେଲେ ଏସବୁ ଧାରଣା ଅତି ସହଜରେ ଫମ୍ପା ଆବାଜରେ ପରିଣତ ହୋଇଯିବ । ପାଶ୍ଚାତ୍ୟ କମ୍ୟୁନିଷ୍ଟମାନଙ୍କ ଅପେକ୍ଷା ଆମର, ଅର୍ଥାତ୍ ରୁଷୀୟ ବଲଶେଭିକମାନଙ୍କର ୧୯୧୭ ସାଲ ସେପଟେମ୍ବର-ନଭେମ୍ବର ମାସରେ ପାର୍ଲାମେଣ୍ଟାରି ପ୍ରଥା ରାଜନୈତିକ ଦିଗରୁ ଅକାମୀ ହୋଇଗଲାଣି ବୋଲି ଭାବିବା ପାଇଁ କଣ ଅଧିକ ଅଧିକାର ନଥିଲା ? ସେ ଅଧିକାର ଅବଶ୍ୟ ଆମର ଥିଲା । କାରଣ ବୁର୍ଜୁଆ ପାର୍ଲାମେଣ୍ଟ ସବୁ ବହୁ କାଳ ଧରି ତିଷ୍ଠି ଆସିଛି କି ଅଳ୍ପକାଳ ତିଷ୍ଠି ରହିଛି ତାହା ଅସଲ କଥା ନୁହଁ । ଅସଲ କଥା ହେଉଛି ବିପୁଳ ସଂଖ୍ୟକ ଶ୍ରମଜୀବୀ ଜନସାଧାରଣ ସୋଭିଏତ୍ ସଂସ୍ଥାକୁ ଗ୍ରହଣ କରିବା ପାଇଁ ଏବଂ ବୁର୍ଜୁଆ-ଗଣତାନ୍ତ୍ରିକ ପାର୍ଲାମେଣ୍ଟକୁ ନିଜେ ଭାଙ୍ଗି ଦେବା ପାଇଁ ( କିମ୍ବା ଅନ୍ୟ କାହା ଦ୍ୱାରା

ଭାଙ୍ଗିବାକୁ ଘୁଞ୍ଚିଦେବା ପାଇଁ ) କେତେଦୂର ପ୍ରସ୍ତୁତ ଅଛନ୍ତି (ମତାଦର୍ଶଗତ ରାଜନୈତିକ ଓ କାର୍ଯ୍ୟଗତ ଦୃଷ୍ଟିରୁ ) । କେତେକ ବିଶେଷ ପରିସ୍ଥିତି ଯୋଗୁଁ ରୁଷିଆର ସର୍ବହରା ଶ୍ରମିକଶ୍ରେଣୀ, ସୈନ୍ୟଗଣ ଓ କୃଷକମାନେ ୧୯୧୭ସାଲର ସେପଟେମ୍ବର ନଭେମ୍ବର ମାସରେ ସୋଭିଏତ୍ ସତ୍ତାକୁ ଗ୍ରହଣ କରିନେବା ପାଇଁ ଓ ସର୍ବାଧିକ ଗଣତାନ୍ତ୍ରିକ ବୁର୍ଜୁଆ ପାର୍ଲାମେଣ୍ଟକୁ ମଧ୍ୟ ଭାଙ୍ଗିଦେବା ପାଇଁ ଯେ ଅତିମାତ୍ରାରେ ଓ ଖୁବ୍ ଭଲ ଭାବେ ପ୍ରସ୍ତୁତ ଥିଲେ ସେ କଥା ଅନସ୍ୱୀକାର୍ଯ୍ୟ । ଏହା ଏକ ପୂର୍ଣ୍ଣ ପ୍ରତିଷ୍ଠିତ ଐତିହାସିକ ସତ୍ୟ । ତଥାପି, ବଲଶେଭିକମାନେ ସମ୍ବିଧାନିକ ସଭାକୁ ବାସନ୍ଦ କଲେନାହିଁ । ତା ପରିବର୍ତ୍ତେ ସେମାନେ ସେଥିପାଇଁ ହୋଇଥିବା ନିର୍ବାଚନରେ ଅଂଶ ଗ୍ରହଣ କଲେ—ସର୍ବହରାଶ୍ରେଣୀ ରାଜନୈତିକ କ୍ଷମତା ଦଖଲ କରିବା ପୂର୍ବରୁ ଏବଂ ପରେ ମଧ୍ୟ । ଏହି ସବୁ ନିର୍ବାଚନର ରାଜନୈତିକ ଫଳାଫଳ ଯେ ଅତ୍ୟନ୍ତ ମୂଲ୍ୟବାନ ହୋଇଥିଲା ( ଆଉ ସର୍ବହରାଶ୍ରେଣୀ ପକ୍ଷରେ ଅତ୍ୟନ୍ତ ଉପାଦେୟ ହୋଇଥିଲା) ସେକଥା, ମୋର ବିଶ୍ୱାସ ମୁଁ ମୋର ପୂର୍ବୋକ୍ତ ପ୍ରବନ୍ଧରେ ପ୍ରମାଣ କରି ଦେଇପାରିଛି, ଯେଉଁ ପ୍ରବନ୍ଧରେ କି ରୁଷିଆର ସାମ୍ବିଧାନିକ ସଭା ପାଇଁ ହୋଇଥିବା ନିର୍ବାଚନର ଫଳାଫଳ ସମ୍ପର୍କରେ ସବିଶେଷ ଭାବେ ବିଶ୍ଳେଷଣ କରାଯାଇଛି ।

ଏଥିରୁ ଯେଉଁ ସିଦ୍ଧାନ୍ତ ବାହାରୁଛି ତାହା ଏକାନ୍ତ ଅକାଟ୍ୟ ସିଦ୍ଧାନ୍ତ । ଏକଥା ଅତି ସ୍ପଷ୍ଟ ଭାବେ ପ୍ରମାଣିତ ହୋଇଯାଇଛି ଯେ, ସୋଭିଏତ୍ ସାଧାରଣତନ୍ତ୍ର ରାଷ୍ଟ୍ରର ବିଜୟ ପୂର୍ବରୁ ଓ ବିଜୟ ପରେ ମଧ୍ୟ ଗୋଟାଏ ବୁର୍ଜୁଆ ଗଣତାନ୍ତ୍ରିକ ପାର୍ଲାମେଣ୍ଟରେ, ଅଳ୍ପ କେତୋଟି ସପ୍ତାହ ପାଇଁ ହେଉ ପଛେ, ଅଂଶ ଗ୍ରହଣ କରିବା ଦ୍ୱାରା ବିପ୍ଳବୀ ସର୍ବହରା ଶ୍ରେଣୀର କୌଣସି ପ୍ରକାର କ୍ଷତି ତ ହୁଏ ନାହିଁ, ବରଂ ଏପ୍ରକାର ପାର୍ଲାମେଣ୍ଟକୁ ଭାଙ୍ଗିଦେବା କାହିଁକି ପ୍ରୟୋଜନ ସେ କଥା ଅନଗ୍ରସର ଜନସାଧାରଣଙ୍କ ଆଗରେ ପ୍ରମାଣ କରାଇ ଦେବାରେ ତାହା ସାହାଯ୍ୟ କରେ । କେବଳ ସେତିକି ନୁହେଁ, ଏ ସବୁପ୍ରକାର ପାର୍ଲାମେଣ୍ଟକୁ ଭାଙ୍ଗି-

ଦେବାରେ ମଧ୍ୟ ତାହା ମହତ୍ୱପୂର୍ଣ୍ଣ ଭୂମିକା ଆଛି ତା ସଙ୍ଗେ ସଙ୍ଗେ ବୁର୍ଜୁଆ ପାର୍ଲାମେଣ୍ଟଗୁଡ଼ିକୁ "ରାଜନୈତିକ ଦୃଷ୍ଟିରୁ ଅକାମୀ" କରି ଦେବାରେ ସାହାଯ୍ୟ କରେ । ଏହି ଅଭିଜ୍ଞତାକୁ ବିସ୍ତୃତ କରିବା ପାଇଁ ଅସ୍ୱୀକାର କରିବା ଆଉ ଏକ ସଙ୍ଗେ କମ୍ୟୁନିଷ୍ଟ ଆନ୍ତର୍ଜାତିକ ଯେଉଁ ଆନ୍ତର୍ଜାତିକ ଭାବେ ( ଯଦିଓ ନୁହେଁ କମ୍ଯୁ ଏକଚେଟିଆ ଜାତୀୟ ସଂଗ୍ରାମ କୌଶଳ ନୁହେଁ, ମାତ୍ର ଆନ୍ତର୍ଜାତିକ ସଂଗ୍ରାମ କୌଶଳ ) ଢଙ୍ଗର ସଂଗ୍ରାମଗତ କୌଶଳ ନିର୍ଦ୍ଧାରଣ କରିବାକୁ ବାଧ୍ୟ ତା ସହିତ ସାମିଲ ଅଛନ୍ତି ବୋଲି ଦାବୀ କରିବା ଅର୍ଥ ସାଂଘାତିକ ଭୁଲ କରିବା ଏବଂ ଆନ୍ତର୍ଜାତୀୟତା ପ୍ରତି ମୌଖିକ ସମର୍ଥନ ଜଣାଇ ଦେଇ କାର୍ଯ୍ୟକ୍ଷେତ୍ରରେ ସେଥିରୁ ଓହରି ଆସିବା ।

ପାର୍ଲାମେଣ୍ଟରେ ଅଂଶ ଗ୍ରହଣ ନ କରିବା ସପକ୍ଷରେ "ଉଗ୍ର ବାମପନ୍ଥୀ-ମାନେ" ଯେଉଁ ସବୁ ଯୁକ୍ତି ଦର୍ଶାଇଛନ୍ତି ସେଗୁଡ଼ିକୁ ଏଥର ପରୀକ୍ଷା କରାଯାଉ । ଏହି ଉପରୋକ୍ତ "ଉଗ୍ର ବାମପନ୍ଥୀମାନଙ୍କର" ବିଭିନ୍ନ ନିବନ୍ଧ ମଧ୍ୟରୁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ନିବନ୍ଧ ନମ୍ବରରେ ଦିଆଗଲା । ସେଇଟି ହେଉଛି ସେମାନଙ୍କର ୪ର୍ଥ ନମ୍ବର ନିବନ୍ଧ:—

"ଯେତେବେଳେ ପୁଞ୍ଜିବାଦୀ ଉତ୍ପାଦନ ବ୍ୟବସ୍ଥା ଭାଙ୍ଗି ପଡ଼ିଥାଏ ଏବଂ ସମାଜ ଏକ ବୈପ୍ଳବିକ ଅବସ୍ଥାରେ ଥାଏ ସେତେବେଳେ ଜନ-ସାଧାରଣଙ୍କର କର୍ମତତ୍ପରତା ତୁଳନାରେ ପାର୍ଲାମେଣ୍ଟାରୀ କାର୍ଯ୍ୟକଳାପର ତାତ୍ପର୍ଯ୍ୟ କ୍ରମେ କ୍ରମେ ହ୍ରାସ ପାଇ ଯାଏ । ଏପରି ପରିସ୍ଥିତିରେ, ଯେତେବେଳେ ପାର୍ଲାମେଣ୍ଟ ପ୍ରତିବିପ୍ଳବର ଏକ କେନ୍ଦ୍ର ଓ ଆୟୁଧରେ ପରିଣତ ହୋଇଯାଏ ଅଥଚ ଅନ୍ୟ ଦିଗରେ ଶ୍ରମିକଶ୍ରେଣୀ ସୋଭିଏତ୍ ସଂସ୍ଥାର ରୂପରେ ତାର କ୍ଷମତାର ଆୟୁଧକୁ ସୃଷ୍ଟି କରୁଥାଏ, ସେତେବେଳେ ପାର୍ଲାମେଣ୍ଟାରୀ କାର୍ଯ୍ୟକଳାପରୁ ସମ୍ପୂର୍ଣ୍ଣ ବିରତ ରହିବା ମଧ୍ୟ ପ୍ରୟୋଜନ ହୋଇପାରେ ।"

ପ୍ରଥମ ବାକ୍ୟଟି ଯେ ଭୁଲ ଏକଥା ଅତିସ୍ପଷ୍ଟ । କାରଣ ଜନସାଧାରଣଙ୍କର କର୍ମତତ୍ପରତା, ଯଥା ଗୋଟାଏ ବଡ଼ ଧରଣର ଧର୍ମଘଟ, ତାହା କେବଳ ବିପ୍ଳବ ସମୟରେ ବା ବୈପ୍ଳବିକ ପରିସ୍ଥିତିରେ ନୁହେଁ ସବୁ ସମୟରେ ପାର୍ଲିମେଣ୍ଟାରି କାର୍ଯ୍ୟକଳାପ ଅପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ । ତେଣୁ ସେମାନଙ୍କର ଏହି ଯୁକ୍ତି ହେଉଛି ଅତି ଅବାନ୍ତର ଏବଂ ଐତିହାସିକ ଓ ରାଜନୈତିକ ଦୃଷ୍ଟିରୁ ଅତି ଭୁଲ । ସେମାନଙ୍କର ଏତାଦୃଶ ଯୁକ୍ତି କେବଳ ଅତି ସ୍ପଷ୍ଟଭାବେ ଦେଖାଇ ଦେଉଛି ଯେ, ସେମାନେ ଆଇନସମ୍ମତ ସଂଗ୍ରାମ ସହିତ ବେଆଇନ ସଂଗ୍ରାମକୁ ସଂଯୋଗ କରିବାର ଗୁରୁତ୍ୱ ସଂପର୍କରେ ସାଧାରଣ ୟୁରୋପୀୟ ଅଭିଜ୍ଞତା ( ୧୮୪୮ ଓ ୧୮୭୦ର ବିପ୍ଳବ ପୂର୍ବରୁ ଫ୍ରାନସର ଅଭିଜ୍ଞତା ଓ ୧୮୭୮ଠାରୁ ୧୮୯୦ ପର୍ଯ୍ୟନ୍ତ ଜର୍ମାନୀର ଅଭିଜ୍ଞତା ) ଏବଂ ଋଷିଆର ଅଭିଜ୍ଞତା ( ଉପରେ ଦ୍ରଷ୍ଟବ୍ୟ ) ଉଭୟକୁ ସମ୍ପୂର୍ଣ୍ଣ ରୂପେ ଅସ୍ୱୀକାର କରିଦେଉଛନ୍ତି । ସାଧାରଣ ଭାବେ ଦେଖିବାକୁ ଗଲେ ଏହି ପ୍ରଶ୍ନ ହେଉଛି ଅତୀବ ଗୁରୁତ୍ୱପୂର୍ଣ୍ଣ ଆଉ ନିର୍ଦ୍ଦିଷ୍ଟ ଭାବେ ଦେଖିବାକୁ ଗଲେ ମଧ୍ୟ ତାର ଗୁରୁତ୍ୱ କୌଣସିମତେ କମ୍ ନୁହେଁ । କାରଣ ସବୁ ସଭ୍ୟ ଓ ଉନ୍ନତ ଦେଶରେ ଏପରି ଏକ ସମୟ ଅତି ଦ୍ରୁତବେଗରେ ଆସି ଯାଉଛି ଯେତେବେଳେ କି ବିପ୍ଳବୀ ସର୍ବହରା ଶ୍ରେଣୀର ପାର୍ଟି ପକ୍ଷରେ ଏହି ଆଇନସମ୍ମତ ଓ ବେଆଇନ ସଂଗ୍ରାମର ସଂଯୋଗ ସ୍ଥାପନ କ୍ରମାଧିକ ଅପରିହାର୍ଯ୍ୟ ହୋଇ ଉଠିବ । କେତେକ କ୍ଷେତ୍ରରେ ଏହା ଅପରିହାର୍ଯ୍ୟ ହୋଇ ପଡ଼ିଛି ମଧ୍ୟ ତାର କାରଣ ହେଉଛି ଉଇଲ୍‌ସନ୍ ସରକାର ଓ ସାଧାରଣ ଭାବେ ସବୁ ବୁର୍ଜୁଆ ସରକାର ଯେପରି ହିଂସ୍ର ଭାବେ କମ୍ୟୁନିଷ୍ଟମାନଙ୍କ ଉପରେ ଦମନ ଲୀଳା ଚଳାଉଛନ୍ତି ଏବଂ ସବୁ ପ୍ରକାର ଆଇନକୁ ଲଙ୍ଘନ କରି ଦମନଲୀଳା ଚଳାଇଯିବାପାଇଁ ଯେପରି ପ୍ରସ୍ତୁତ ହୋଇ ରହିଛନ୍ତି ( ଆମେରିକାର ଦୃଷ୍ଟାନ୍ତ ଉଲ୍ଲେଖନୀୟ ) ସେଥିରେ ସର୍ବହରା ଶ୍ରେଣୀର ବିପ୍ଳବୀ ପାର୍ଟି ଏପରି ପନ୍ଥା ଗ୍ରହଣ କରିବାକୁ ବାଧ୍ୟ ହେଉଛି । କିନ୍ତୁ ଡଚ୍ ବାମପନ୍ଥୀମାନେ ଏବଂ ସାଧାରଣତଃ ସବୁ ବାମପନ୍ଥୀ ଏହି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନକୁ ହୃଦୟଙ୍ଗମ କରିବାକୁ ଆଦୌ ସମର୍ଥ ହେଉନାହାନ୍ତି ।

ଆଉ ଦ୍ୱିତୀୟ ବାକ୍ୟଟି-ସେଇଟି ଐତିହାସିକ ଦୃଷ୍ଟିରୁ ଆଗ ସମ୍ପୂର୍ଣ୍ଣ ଭୁଲ । ଆମେ ବଲ୍‌ଶେଭିକ୍‌ମାନେ ଚରମ ପ୍ରତିକ୍ରିୟାଶୀଳ ପାର୍ଲାମେଣ୍ଟ-ଗୁଡ଼ିକରେ ମଧ୍ୟ ଅଂଶ ଗ୍ରହଣ କରିଛୁ । ଆଉ ଅଭିଜ୍ଞତାରୁ ସ୍ପଷ୍ଟ ଜଣାଯାଏ ଯେ ବିପ୍ଳବୀ ସର୍ବହରାଶ୍ରେଣୀ ପକ୍ଷରେ ଏହା କେବଳ ସହାୟକ ନୁହଁ, ଏକାନ୍ତ ଅପରିହାର୍ଯ୍ୟ ମଧ୍ୟ ହୋଇଛି । ବିଶେଷ କରି ରୁଷିଆର ପ୍ରଥମ ବୁର୍ଜୁଆ ବିପ୍ଳବ (୧୯୦୫) ପରେ ଦ୍ୱିତୀୟ ବୁର୍ଜୁଆ ବିପ୍ଳବ (ଫେବୃଆରୀ, ୧୯୧୭) ଏବଂ ତାପରେ ସମାଜବାଦୀ ବିପ୍ଳବର (ଅକ୍ଟୋବର ୧୯୧୭) ପ୍ରସ୍ତୁତି ଲାଗି ଏହା ଏକାନ୍ତ ଅପରିହାର୍ଯ୍ୟ ହୋଇଛି । ଦ୍ୱିତୀୟତଃ, ଏହି ବାକ୍ୟଟି ଅତି ଆଶ୍ଚର୍ଯ୍ୟଜନକ ଭାବେ ଅଯୌକ୍ତିକ । କାରଣ ଶ୍ରମିକମାନେ ସୋଭିଏତ୍ ସଂଗଠନର ରୂପରେ ନିଜର କ୍ଷମତାର ଆୟୁଧକୁ ଗଢ଼ିଲାବେଳେ ପାର୍ଲାମେଣ୍ଟ ଯଦି ପ୍ରତି-ବିପ୍ଳବର ଏକ ହତିଆର ଓ "କେନ୍ଦ୍ର"ରେ ପରିଣତ ହୋଇଥାଏ (ପ୍ରକୃତରେ ଏହା ଏପରି ଏକ "କେନ୍ଦ୍ର"ରେ କେବେ ପରିଣତ ହୋଇନାହିଁ, କି ହୋଇ-ପାରେ ନା ) ତାହେଲେ ତାର ଏକମାତ୍ର ଯୁକ୍ତିସମ୍ମତ ଉପସଂହାର ହେଉଛି ଯେ, ସୋଭିଏତ୍‌ଗୁଡ଼ିକ ଜରିଆରେ ପାର୍ଲାମେଣ୍ଟକୁ ଭାଙ୍ଗିଦେବା ଉଦ୍ଦେଶ୍ୟରେ ପାର୍ଲାମେଣ୍ଟ ବାହାରେ ସୋଭିଏତ୍ ଗୁଡ଼ିକର ସଂଗ୍ରାମ ପାଇଁ ଶ୍ରମିକମାନଙ୍କୁ ଆଦର୍ଶଗତ, ରାଜନୈତିକ ଓ କୌଶଳଗତ ଭାବେ ନିଶ୍ଚୟ ପ୍ରସ୍ତୁତ ହେବାକୁ ପଡ଼ିବ । କିନ୍ତୁ ସେଥିରୁ ଏ କଥା କଦାପି ଜଣା ପଡ଼ୁନାହିଁ ଯେ, ପ୍ରତିବିପ୍ଳବୀ ପାର୍ଲାମେଣ୍ଟ ଭିତରେ ସୋଭିଏତ୍ ବିରୋଧିତା ରହିବା ଦ୍ୱାରା ପାର୍ଲାମେଣ୍ଟକୁ ଭାଙ୍ଗିବା ପଥରେ ପ୍ରତିବନ୍ଧକ ସୃଷ୍ଟି ହେଉଛି । ଡେନିକିନ ଓ କୋଲ୍‌ଚାକ୍‌ଙ୍କ ବିରୁଦ୍ଧରେ ଆମେ ଆମର ବିଜୟୀ ସଂଗ୍ରାମ ଚଳାଇଲା ବେଳେ ସେମାନଙ୍କର ଶିବିର ଭିତରେ ଏକ ସୋଭିଏତ୍ ସର୍ବହରା ବିରୋଧିତାର ଉପସ୍ଥିତି ଆମର ବିଜୟ ପାଇଁ ଅନାବଶ୍ୟକ ବୋଲି ଆମେ କେବେ ମନେ କରି ନ ଥିଲୁ । ଆମେ ଭଲ ଭାବେ ଜାଣୁ ଯେ, ପ୍ରତିବିପ୍ଳବୀ ସାମ୍ବିଧାନିକ ସଭାର ପତନର ଅବ୍ୟବହିତ ପୂର୍ବରୁ ତା ଭିତରେ ଏକ ଅବିଚଳ ବଲ୍‌ଶେଭିକ ବିରୋଧୀଦଳ ତଥା ଏକ ଦୋହୁଲ୍ୟମାନ ବାମପନ୍ଥୀ ସୋସାଲିଷ୍ଟ ରିଭଲ୍ୟୁସନାରି ଓ ସୋଭିଏତ୍

ବିରୋଧୀଦଳ ରହିଥିବାରୁ ୧୯୧୮ ସାଲ ଜାନୁଆରୀ ୫ ତାରିଖରେ ସାମ୍ବିଧାନିକ ସଭାକୁ ଭାଙ୍ଗି ଦେବାରେ ଆମର ସୁବିଧା ବଢ଼ି ହେଲା, ଅସୁବିଧା କିଛି ହେଲା ନାହିଁ । ତେଣୁ ଏଥିରୁ ଜଣାଯାଏ ଯେ, ଏହି ହଲାଣ୍ଡର ଉଗ୍ରପନ୍ଥିତାମାନଙ୍କର ଚରମ ଚିନ୍ତା ବିଭ୍ରାଟ ଘଟିଛି ଏବଂ ସେମାନେ, ସବୁ ବିପ୍ଳବ ନ ହେଲେ ମଧ୍ୟ ଅନେକ ବିପ୍ଳବର ଅଭିଜ୍ଞତାକୁ ସଂପୂର୍ଣ୍ଣରୂପେ ଭୁଲି-ଯାଇଛନ୍ତି । ଏ କଥା ସ୍ପଷ୍ଟ ଭାବେ ପ୍ରମାଣ କରି ଦେଉଛି ଯେ, ବିପ୍ଳବ ସମୟରେ ଗୋଟାଏ ପ୍ରତିକ୍ରିୟାଶୀଳ ପାର୍ଲାମେଣ୍ଟ ଭିତରେ ଥିବା ବିପ୍ଳବ ପ୍ରତି ସହାନୁଭୂତିଶୀଳ ଏକ ବିରୋଧୀ ଗୋଷ୍ଠୀ (ପ୍ରତ୍ୟକ୍ଷ ଭାବେ ସମର୍ଥନ କରୁଥିଲେ ତ ଆହୁରି ଭଲ) ସହିତ ପାର୍ଲାମେଣ୍ଟ ବାହାରେ ଚାଲୁଥିବା ଗଣ ସଂଗ୍ରାମର ସଂଯୋଗ ବିପ୍ଳବୀମାନଙ୍କ ପାଇଁ କେତେ ବେଶି ସାହାଯ୍ୟକାରୀ । ଏହି "ଡଚ୍ ବାମପନ୍ଥୀମାନେ" ଓ ସାଧାରଣତଃ ସବୁ "ବାମପନ୍ଥୀ" ତତ୍ତ୍ୱ-ସର୍ବସ୍ୱ ବିପ୍ଳବୀମାନଙ୍କ ପରି ଯୁକ୍ତି କରନ୍ତି, ଯେଉଁମାନେ କି କୌଣସି ପ୍ରକୃତ ବିପ୍ଳବରେ କେବେ ଅଂଶ ଗ୍ରହଣ କରି ନାହାନ୍ତି କି ବିଭିନ୍ନ ବିପ୍ଳବର ଇତିହାସ କଥା କେବେ ଗମ୍ଭୀର ଭାବେ ଚିନ୍ତା କରି ନାହାନ୍ତି କିମ୍ବା ନିର୍ବୋଧଙ୍କ ପରି ଗୋଟାଏ ପ୍ରତିକ୍ରିୟାଶୀଳ ସଂସ୍ଥାକୁ ମନେମନେ "ପ୍ରତ୍ୟାଖ୍ୟାନ" କରିଦେଲେ ତାହା କେତେକ ବାସ୍ତବ କାରଣର ସମ୍ମିଶ୍ରଣ ଫଳରେ ପ୍ରକୃତରେ ଧ୍ୱଂସ ପାଇଲା ବୋଲି ମନେ ମନେ ଧରି ନେଉଛନ୍ତି ।

ଗୋଟାଏ ନୂତନ ରାଜନୈତିକ (କେବଳ ରାଜନୈତିକ ନୁହେଁ) ବିଚାରଧାରାକୁ ବଦନାମ୍ ଓ ଆଘାତ କରିବାର ସବୁଠାରୁ ଶ୍ରେଷ୍ଠ କୌଶଳ ହେଉଛି ତାହାକୁ ସମର୍ଥନ କରିବାର ଆଳରେ ତାହାକୁ ଏକ ଅଦ୍ଭୁତ ବିଚାରଧାରାରେ ପରିଣତ କରିଦେବା । କାରଣ, ପ୍ରତ୍ୟେକଟି ସତ୍ୟ, ତାହାକୁ ଯଦି "ଅତିକାୟ କରି ଉପସ୍ଥାପିତ କରାଯାଏ" (ସିନିୟର ଡିଟ୍‌ଜେନ କହିଲା ପରି), ତାହାକୁ ଯଦି ଅତିରଞ୍ଜିତ କରିଦିଆଯାଏ, ତାହାକୁ ଯଦି ତାର ପ୍ରକୃତ କାର୍ଯ୍ୟକାରିତାର ସୀମା ବାହାରକୁ ଟାଣି ନିଆଯାଏ ତାହେଲେ ସେଇ ସତ୍ୟକୁ ଏକ ଅଦ୍ଭୁତ ଧାରଣାରେ ପରିଣତ କରି ଦିଆଯାଇପାରିବ । ଆଉ ଉପରୋକ୍ତ ଅବସ୍ଥାରେ

ତାହା ଏକ ଉଦ୍ଭଟ ଧାରଣାରେ ପରିଣତ ହୋଇଯିବାକୁ ବସିଛି । ବୁର୍ଜୁଆ-ଗଣତାନ୍ତ୍ରିକ ପାର୍ଲାମେଣ୍ଟଗୁଡ଼ିକଠାରୁ ସୋଭିଏତ୍‌ରୂପୀ ସରକାର ଯେ ଉତ୍କୃଷ୍ଟ, ଏହି ନୂତନ ସତ୍ୟକୁ ମଧ୍ୟ ଡଚ ଓ ଜର୍ମାନ ବାମପନ୍ଥୀ କମ୍ୟୁନିଷ୍ଟମାନେ କୌଶଳ କ୍ରମେ ସେହିପରି ଏକ ଉଦ୍ଭଟ ଧାରଣାରେ ପରିଣତ କରି ଦେଉଛନ୍ତି । ଅବଶ୍ୟ, କେହି ଯଦି ପୁରୁଣା ଢଙ୍ଗରେ କିମ୍ବା ସାଧାରଣ ଭାବେ କହେ ଯେ, ଯେ କୌଣସି ପରିସ୍ଥିତିରେ ବି ବୁର୍ଜୁଆ ପାର୍ଲାମେଣ୍ଟଗୁଡ଼ିକରେ ଅଂଶ ଗ୍ରହଣ କରିବାପାଇଁ ମନା କରିଦେବା ଏକାନ୍ତ ଅନୁଚିତ ତାହେଲେ ସେ ମଧ୍ୟ ଭୁଲ କଥା କହୁଛି ବୋଲି ବୁଝିବାକୁ ହେବ । କିନ୍ତୁ କେଉଁ କେଉଁ ଅବସ୍ଥାରେ ବୁର୍ଜୁଆ ପାର୍ଲାମେଣ୍ଟକୁ ବାସନ୍ଦ କରିବା ଲାଭଜନକ ହେବ ତାହା ବର୍ଣ୍ଣନା କରିବାପାଇଁ ଏଠାରେ ଉଦ୍ୟମ କରିବା ମୋ ପକ୍ଷରେ ସମ୍ଭବ ନୁହେଁ । କାରଣ ଏହି ପୁସ୍ତିକାଟିର ଉଦ୍ଦେଶ୍ୟ ହେଉଛି ଅପେକ୍ଷାକୃତ ସୀମିତ, ଅର୍ଥାତ୍ ଏହି ପୁସ୍ତିକାର ଉଦ୍ଦେଶ୍ୟ ହେଉଛି ଆନ୍ତର୍ଜାତିକ କମ୍ୟୁନିଷ୍ଟ ସଂଗ୍ରାମ କୌଶଳର କେତେକ ସାମ୍ପ୍ରତିକ ପ୍ରଶ୍ନାବଳୀ ସମ୍ବନ୍ଧରେ ରୁଷିଆର ଅଭିଜ୍ଞତାକୁ ଅନୁଧ୍ୟାନ କରିବା । ବଲ୍‌ଶେଭିକ୍‌ମାନେ ବୁର୍ଜୁଆ ପାର୍ଲାମେଣ୍ଟ ବିରୁଦ୍ଧରେ ବାସନ୍ଦନୀତି ପ୍ରୟୋଗ କରିବାର ଦୁଇଟି ଦୃଷ୍ଟାନ୍ତ ରୁଷିଆର ଅଭିଜ୍ଞତାରେ ଦେଖାଯାଏ । ଏହି ବାସନ୍ଦ ନୀତିର ପ୍ରଥମ ପ୍ରୟୋଗ ୧୯୦୫ରେ ହୋଇଥିଲା ଏବଂ ତାହା ଫଳପ୍ରଦ ଓ ନିର୍ଭୁଲ ହୋଇଥିଲା । ୧୯୦୭ରେ ଯେଉଁ ବାସନ୍ଦ ନୀତି ପ୍ରୟୋଗ କରାଗଲା ତାହା ଭୁଲ ହୋଇଥିଲା । ପ୍ରଥମ ଦୃଷ୍ଟାନ୍ତକୁ ବିଶ୍ଳେଷଣ କଲେ ଆମେ ଦେଖିବା ଯେ, ସେତେବେଳର ପରିସ୍ଥିତିରେ ଗୋଟାଏ ପ୍ରତିକ୍ରିୟାଶୀଳ ସରକାର ଦ୍ୱାରା ଗୋଟାଏ ପ୍ରତିକ୍ରିୟାଶୀଳ ପାର୍ଲାମେଣ୍ଟ ଡକାଇବାର ଉଦ୍ୟମକୁ ଆମେ ବ୍ୟର୍ଥ କରି ଦେବା ପାଇଁ ଚେଷ୍ଟା କରିଥିଲୁ ଏବଂ ସେଥିରେ କୃତକାର୍ଯ୍ୟ ହୋଇଥିଲୁ । ସେତେବେଳର ପରିସ୍ଥିତି ଏପରି ଥିଲା ଯେଉଁଥିରେ ପାର୍ଲାମେଣ୍ଟ ବାହାରେ ବୈପ୍ଳବିକ ଗଣସଂଗ୍ରାମ ( ବିଶେଷ କରି ଧର୍ମଘଟ ) ଅସାଧାରଣ ଦ୍ରୁତ ଗତିରେ ବଢ଼ି ବଢ଼ି ଚାଲିଥିଲା, ଶ୍ରମିକ ବା କୃଷକ ଶ୍ରେଣୀର କୌଣସି ଏକ ଅଂଶ ବି

ପ୍ରତିକ୍ରିୟାଶୀଳ ସରକାରକୁ କୌଣସିମତେ ସମର୍ଥନ କରିପାରୁ ନଥିଲେ ଏବଂ ବିପ୍ଳବୀ ସର୍ବହରା ଶ୍ରେଣୀ ତାର ଧର୍ମଘଟ ସଂଗ୍ରାମ ଓ କୃଷି ଆନ୍ଦୋଳନ ଜରିଆରେ ବ୍ୟାପକ ଅନଗ୍ରସର ଜନତା ଉପରେ ତାର ପ୍ରଭାବକୁ ବିସ୍ତାର କରିଥିଲା । ଏପରି ପରିସ୍ଥିତିରେ ଆମେ ଗୋଟାଏ ପ୍ରତିକ୍ରିୟାଶୀଳ ପାର୍ଲାମେଣ୍ଟ ଡକାଇବାର ଉଦ୍ୟମକୁ ସଫଳ ଭାବେ ରୋଧ କରି ଦେଇଥିଲୁ । କିନ୍ତୁ ଏକଥା ଅତି ସ୍ପଷ୍ଟ ଯେ, ଆମର ଏହି ଅଭିଜ୍ଞତା ଉପସ୍ଥିତ ୟୁରୋପୀୟ ପରିବେଶ ପ୍ରତି ଆଦୌ ପ୍ରଯୁଜ୍ୟ ନୁହଁ । ଏ କଥା ଆହୁରି ମଧ୍ୟ ସ୍ପଷ୍ଟ ଯେ, ଉପରୋକ୍ତ ଯୁକ୍ତିଗୁଡ଼ିକର ବଳରେ ଡ଼ଚ ଓ ଅନ୍ୟାନ୍ୟ "ବାମପନ୍ଥୀମାନେ" ଯଦି ପାର୍ଲାମେଣ୍ଟରେ ଅଂଶ ଗ୍ରହଣ କରିବାପାଇଁ ମନା କରିଦେବା ଉଚିତ ବୋଲି ପ୍ରଚାର କରନ୍ତି, ଏପରି କି କେତେକ ସର୍ତ୍ତରେ ମଧ୍ୟ ସେମାନେ ଯଦି ସେ କଥା କହନ୍ତି, ତା ହେଲେ ତାହା ମୌଳିକ ଭାବେ ଭୁଲ ହେବ ଏବଂ ବିପ୍ଳବୀ ସର୍ବହରା ଶ୍ରେଣୀର ସ୍ୱାର୍ଥ ଓ ଆଦର୍ଶ ପ୍ରତି କ୍ଷତିକାରକ ହେବ ।

ପଶ୍ଚିମ ୟୁରୋପ ଓ ଆମେରିକାର ବର୍ତ୍ତମାନ ଶ୍ରମିକ ଶ୍ରେଣୀର ଅଗ୍ରଗାମୀ ବିପ୍ଳବୀ ସଭ୍ୟମାନଙ୍କ ପକ୍ଷରେ ପାର୍ଲାମେଣ୍ଟ ବିଶେଷ ଭାବେ ଏକ ଘୃଣାର ସାମଗ୍ରୀ ହୋଇ ପଡ଼ିଛି । ଏହା ଅନସ୍ୱୀକାର୍ଯ୍ୟ । ଏକଥା ମଧ୍ୟ ସହଜେ ଅନୁମେୟ । କାରଣ ଯୁଦ୍ଧ ସମୟରେ ଓ ଯୁଦ୍ଧ ପରେ ଅଧିକାଂଶ ସୋଶାଲିଷ୍ଟ ଓ ସୋଶାଲଡ଼େମୋକ୍ରାଟିକ ପାର୍ଲାମେଣ୍ଟାରୀ ପ୍ରତିନିଧିମାନେ ଯେଉଁ ଆଚରଣ କରିଛନ୍ତି ତାଠାରୁ ଅଧିକ ଜଘନ୍ୟ, ଅଧିକ ଘୃଣ୍ୟ ଓ ଅଧିକ ବିଶ୍ୱାସଘାତି ଆଚରଣ ଆଉ କିଛି କଳ୍ପନା କରିବା କଷ୍ଟକର । କିନ୍ତୁ ଏହି ସର୍ବସ୍ୱୀକୃତ ଅନିଷ୍ଟ ବିରୁଦ୍ଧରେ କିପରି ଭାବେ ସଂଗ୍ରାମ କରା-ଯିବ ସେ ବିଷୟ ସ୍ଥିର କଲାବେଳେ ଏପରି ମନୋଭାବର ବଶବର୍ତ୍ତୀ ହୋଇପଡ଼ିବା କେବଳ ଅଯୌକ୍ତିକ ନୁହଁ, ପ୍ରକୃତ ପକ୍ଷେ ଏକ ଅପରାଧ ମଧ୍ୟ ହେବ । ପଶ୍ଚିମ ୟୁରୋପର ଅନେକ ଦେଶରେ ଯେଉଁ ବୈପ୍ଳବିକ ମନୋଭାବ ଦେଖା ଦେଇଛି ତାହା ବର୍ତ୍ତମାନ ଏକ "ନୂଆ କଥା," ଏକ

"ବଉଳ କଥା" ବୋଲି କୁହାଯାଇପାରେ । ଏପରି ମନୋଭାବ କେବେ ସୃଷ୍ଟି ହେବ ସେଥିପାଇଁ ବହୁ କାଳଧରି ଅତି ଅସହିଷ୍ଣୁ ଭାବେ ଆଜି ବୃଷିଆରେ ପ୍ରତୀକ୍ଷା କରାଯାଇଥିଲା । ଆଜି ସେଇଥି ପାଇଁ ବୋଧହୁଏ ଅନେକେ ଏତେ ସହଜରେ ଏହି ମନୋଭାବର ବଶବର୍ତ୍ତୀ ହୋଇ ପଡ଼ୁଛନ୍ତି । ଅବଶ୍ୟ, ଜନସାଧାରଣଙ୍କ ମଧ୍ୟରେ ଏକ ବୈପ୍ଳବିକ ମନୋଭାବ ନଥିଲେ ଏବଂ ସେହି ମନୋଭାବକୁ ପରିପୁଷ୍ଟ କରିବାର ପରିସ୍ଥିତି ବିଦ୍ୟମାନ ନଥିଲେ ବୈପ୍ଳବିକ ସଂଗ୍ରାମ କୌଶଳକୁ କଦାପି କାର୍ଯ୍ୟରେ ପରିଣତ କରାଯାଇ ପାରିବ ନାହିଁ । କିନ୍ତୁ ବୈପ୍ଳବିକ ମନୋଭାବକୁ କେବଳ ଆଧାର କରି ବୈପ୍ଳବିକ ସଂଗ୍ରାମକୌଶଳ ଯେ ଗଢ଼ା ଯାଇ ପାରିବ ନାହିଁ ଏହି ସତ୍ୟକୁ ଆମେ ରୁଷିଆରେ ସୁଦୀର୍ଘ, ଯନ୍ତ୍ରଣା ଦାୟକ ଓ ରକ୍ତାକ୍ତ ଅଭିଜ୍ଞତା ଭିତର ଦେଇ ଖୁବ୍ ଭଲ ଭାବେ ହୃଦୟଙ୍ଗମ କରିସାରିଛୁ । ବୈପ୍ଳବିକ ସଂଗ୍ରାମ କୌଶଳ ସ୍ଥିର କରିବାକୁ ହେଲେ ସମ୍ପୃକ୍ତ ନିର୍ଦ୍ଦିଷ୍ଟ ରାଷ୍ଟ୍ରର ( ଆଜିସବୁ ପଡ଼ୋଶୀ ରାଷ୍ଟ୍ର ଓ ପୃଥିବୀର ସବୁ ରାଷ୍ଟ୍ରର ମଧ୍ୟ ) ସକଳ ଶ୍ରେଣୀ ଶକ୍ତିକୁ ଏବଂ ବୈପ୍ଳବିକ ଆନ୍ଦୋଳନଗୁଡ଼ିକର ଅଭିଜ୍ଞତାକୁ ମଧ୍ୟ ଖୁବ ଧୀରସ୍ଥିର ଭାବେ, ଖୁବ୍ ବାସ୍ତବ ଭାବେ କଳନା କରିବାକୁ ପଡ଼ିବ । ପାର୍ଲାମେଣ୍ଟାରୀ ସୁବିଧାବାଦକୁ କେବଳ ଗାଳିଗୁଲଜ କରି, ପାର୍ଲାମେଣ୍ଟରେ ଅଂଶ ଗ୍ରହଣ କରିବା ନୀତିକୁ କେବଳ ପ୍ରତ୍ୟାଖ୍ୟାନ କରି ନିଜକୁ "ବିପ୍ଳବୀ" ବୋଲି ଦେଖାଇ ହେବାଟା ଅତି ସହଜ । କିନ୍ତୁ ଏହି କାମଟା ଅତି ସହଜ ହୋଇଥିବାରୁ ହିଁ ଗୋଟାଏ ଦୁଃସାଧ୍ୟ, ଅତି ଦୁସାଧ୍ୟ ସମସ୍ୟାକୁ ଏହା ଦ୍ୱାରା ସମାଧାନ କରାଯାଇ ପାରିବ ନାହିଁ । ୟୁରୋପର କୌଣସି ପାର୍ଲାମେଣ୍ଟରେ ପ୍ରକୃତରେ ଏକ ବିପ୍ଳବୀ ପାର୍ଲାମେଣ୍ଟାରୀ ଗୋଷ୍ଠୀ ଗଠନ କରିବା ଖୁବ କଷ୍ଟକର । ରୁଷିଆରେ ଏକାମ ଏତେ ବେଶି କଷ୍ଟକର ହୋଇ ନଥିଲା । ତାହା ଅବଶ୍ୟ ସତ । କିନ୍ତୁ ଏପରି କହିବା ହେଉଛି ଏକ ସାଧାରଣ ସତ୍ୟର ଏକ ନିର୍ଦ୍ଦିଷ୍ଟ ଅଭିବ୍ୟକ୍ତି ମାତ୍ର । ସେହି ସାଧାରଣ ସତ୍ୟଟି ହେଉଛି—୧୯୧୭ ରେ ରୁଷିଆରେ ଯେଉଁ ବିଶେଷ ଓ ଐତିହାସିକ ଦୃଷ୍ଟିରୁ ଯେଉଁ ଅତି ଅସାଧାରଣ ପରିସ୍ଥିତି ସୃଷ୍ଟି ହୋଇଥିଲା ସେଥିରେ ସମାଜବାଦୀ ବିପ୍ଳବ ଆରମ୍ଭ

ଜୟଦେବା ଋଷିଆ ପକ୍ଷରେ ସେତେ ହୋଇଥିଲା ସତ, କିନ୍ତୁ ସେହି ବିପ୍ଳବକୁ ଅବ୍ୟାହତ ରଖିବା ଓ ତାକୁ ପରିପୂର୍ଣ୍ଣ କରିବା ୟୁରୋପୀୟ ଦେଶମାନଙ୍କ ତୁଳନାରେ ରୁଷିଆ ପକ୍ଷରେ ଢ଼େର ବେଶି କଷ୍ଟକର ହେବ । ଏକଥା ୧୯୧୮ ସାଲ ଆଦ୍ୟରୁ ବି ମୁଁ ଦର୍ଶାଇବାର ସୁଯୋଗ ପାଇଛି ଆଉ ଆମର ଏହି ମତାମତ ସମ୍ପୂର୍ଣ୍ଣରୂପେ ସତ୍ୟ ବୋଲି ଆମର ଗତ ଦୁଇବର୍ଷର ଅଭିଜ୍ଞତା ପ୍ରମାଣ କରି ଦେଇଛି । ଋଷିଆର ବିପ୍ଳବ ସମୟରେ କେତେକ ନିର୍ଦ୍ଦିଷ୍ଟ ବା ସ୍ୱତନ୍ତ୍ର ଅବସ୍ଥା ବିଦ୍ୟମାନ ଥିଲା । ସେଗୁଡ଼ିକ ହେଉଛି—(୧) ଯେଉଁ ସାମ୍ରାଜ୍ୟବାଦୀ ଯୁଦ୍ଧଫଳରେ ଶ୍ରମିକ ଓ କୃଷକମାନେ କଳ୍ପନାତୀତ ଭାବେ କ୍ଳାନ୍ତ ଓ ଅବସନ୍ନ ହୋଇ ପଡ଼ିଥିଲେ ସେହି ସାମ୍ରାଜ୍ୟବାଦୀ ଯୁଦ୍ଧର ପରିସମାପ୍ତି ( ସୋଭିଏତ୍ ବିପ୍ଳବ ଫଳରେ ) ସହିତ ସୋଭିଏତ୍ ବିପ୍ଳବକୁ ସଂଯୋଗ କରିବାର ସମ୍ଭାବନା ରହିଥିଲା; (୨) ଯେଉଁ ଦୁଇଟି ବିଶ୍ୱବ୍ୟାପୀ ଓ ଶକ୍ତିଶାଳୀ ସାମ୍ରାଜ୍ୟବାଦୀ ତସ୍କର ଗୋଷ୍ଠୀ ପରସ୍ପର ମଧ୍ୟରେ ଏକ ମରଣାନ୍ତକ ସଂଘର୍ଷରେ ମାତିଥିଲେ ଓ ଯେଉଁମାନେ ସେମାନଙ୍କର ସୋଭିଏତ୍ର ଶତ୍ରୁ ବିରୁଦ୍ଧରେ ଐକ୍ୟବଦ୍ଧ ହେବାକୁ ଅସମର୍ଥ ହୋଇଥିଲେ ସେମାନଙ୍କର ଏହି ମରଣାନ୍ତକ ସଂଘର୍ଷରୁ କିଛି କାଳ ପାଇଁ ଫାଇଦା ଉଠାଇବାର ସଂଭାବନା ରହିଥିଲା; (୩) ଦେଶର ବିଶାଳ ଆୟତନ ଓ ଯୋଗାଯୋଗ ବ୍ୟବସ୍ଥାର ଅଭାବ ଯୋଗୁଁ ଅପେକ୍ଷାକୃତ ଏକ ଦୀର୍ଘକାଳ ବ୍ୟାପୀ ଗୃହଯୁଦ୍ଧକୁ ସହ୍ୟ କରିପାରିବାର ସଂଭାବନା ରହିଥିଲା; (୪) କୃଷକ ଶ୍ରେଣୀ ମଧ୍ୟରେ ଏକ ଗଭୀର ବୁର୍ଜୁଆ-ଗଣତାନ୍ତ୍ରିକ ବୈପ୍ଳବିକ ଆନ୍ଦୋଳନ ତିଷ୍ଠି ରହିଥିବାରୁ ସର୍ବହରା ଶ୍ରେଣୀର ପାର୍ଟି କୃଷକ ପାର୍ଟିର (ସୋସାଲିଷ୍ଟରିଭଲ୍ୟୁସନାରି ପାର୍ଟି, ଯାହାର ଅଧିକାଂଶ ସଭ୍ୟ ବଲ୍ଶେଭିଜମ ସଂପର୍କରେ ନିଶ୍ଚିତ ଭାବେ ବୈରୀଭାବ ପୋଷଣ କରୁଥିଲେ, ବୈପ୍ଳବିକ ଦାବୀଗୁଡ଼ିକ ପାଇଁ ନିଜେ ଆନ୍ଦୋଳନ ଚଳାଇ ସେସବୁ ଦାବୀକୁ ସଙ୍ଗେ ସଙ୍ଗେ ହାସଲ କରିପାରିଥିଲା ଏବଂ ସର୍ବହରା ଶ୍ରେଣୀ ଦ୍ୱାରା ରାଜନୈତିକ କ୍ଷମତା ଦଖଲ ହୋଇଯିବାରୁ ଏହା ସମ୍ଭବ ହୋଇଥିଲା । କିନ୍ତୁ ଏସବୁ ନିର୍ଦ୍ଦିଷ୍ଟ ଅବସ୍ଥା ବର୍ତ୍ତମାନ ପଶ୍ଚିମ ୟୁରୋପରେ ବିଦ୍ୟମାନ

ତାହିଁ କ ଏସବୁ ଅବସ୍ଥା ବା ଅନୁରୂପ ଅବସ୍ଥାର ପୁନରାବୃତ୍ତି ଏତେ ସହଜ ନୁହେଁ । ଅନ୍ୟାନ୍ୟ କାରଣ ଭିତରେ ଏହା ହେଉଛି ଗୋଟିଏ କାରଣ ଯେଉଁଥିପାଇଁ ପଶ୍ଚିମ ୟୁରୋପରେ ଏକ ସମାଜବାଦୀ ବିପ୍ଳବ ଆରମ୍ଭ କରିବା ଆମ୍ଭମାନଙ୍କ ଅପେକ୍ଷା ସେଠାରେ ଅଧିକ କଷ୍ଟକର ହେବ । ବୈପ୍ଳବିକ ଉଦ୍ଦେଶ୍ୟ ସାଧନ ବାଟରେ ପ୍ରତିକ୍ରିୟାଶୀଳ ପାର୍ଲାମେଣ୍ଟଗୁଡ଼ିକୁ ଉପଯୋଗ କରିପାରିବାର ଦୁଃସାଧ୍ୟ କାର୍ଯ୍ୟକୁ "ଏଡ଼ିଦେଇ" ଉପରୋକ୍ତ କଷ୍ଟକର କାମକୁ "ଡିଙ୍ଗି ଦେବା ପାଇଁ" ଉଦ୍ୟମ କରିବା ଏକାନ୍ତ ଶିଶୁସୁଲଭ ଚପଳତା ବ୍ୟତୀତ ଅନ୍ୟ କିଛି ନୁହେଁ । ତୁମେ ଏକ ନୂତନ ସମାଜ ସୃଷ୍ଟି କରିବାକୁ ଚାହୁଁ, ଅଥଚ ଏକ ପ୍ରତିକ୍ରିୟାଶୀଳ ପାର୍ଲାମେଣ୍ଟରେ ଖୁବ୍ ନିଷ୍ଠାବାନ, ଅନୁରକ୍ତ, ସଚେତନ ଓ ସାହସୀ କମ୍ୟୁନିଷ୍ଟଙ୍କୁ ନେଇ ଗୋଟାଏ ଭଲ ପାର୍ଲାମେଣ୍ଟାରୀ ଦଳ ଗଠନ କରିବାର କଠିନ କାମକୁ ତୁମେ ଭୟକର ! ଏହା ଚପଳତା ନୁହେଁ ତ ଆଉ କଣ ? ତଳୁ ଜନସମର୍ଥନ ଲାଭ ନ କରି ମଧ୍ୟ କାର୍ଲ ଲାଇବ୍‌ନେକ୍‌ଟ ଯେପରି ଜର୍ମାନୀରେ ଏବଂ ଜେଡ୍ ହୋଗ୍‌ଲୁଣ୍ଡ ଯେପରି ସ୍ୱିଡେନରେ ପ୍ରତିକ୍ରିୟାଶୀଳ ପାର୍ଲାମେଣ୍ଟଗୁଡ଼ିକୁ ପ୍ରକୃତରେ ବିପ୍ଳବୀ ପନ୍ଥାରେ ଉପଯୋଗ କରିବାର ଦୃଷ୍ଟାନ୍ତ ଦେଖାଇ ଦେଇପାରିଲେ ତାହାହେଲେ ତୁମେ କିପରି କହିପାରିବ ଯେ, ଦ୍ରୁତଗତିରେ ବଢ଼ି ଉଠୁଥିବା ଏକ ବିପ୍ଳବୀ ଗଣପାର୍ଟି, ଆଉ ତା ପୁଣି ଯୁଦ୍ଧୋତ୍ତରଯୁଗୀୟ ମୋହଭଙ୍ଗ ଓ ଅବସାଦ ଭିତରେ, ଅତି ପ୍ରତିକ୍ରିୟାଶୀଳ ପାର୍ଲାମେଣ୍ଟ ମଧ୍ୟରେ ଏକ କମ୍ୟୁନିଷ୍ଟ ଗୋଷ୍ଠୀ ଗଠନ କରିପାରିବ ନାହିଁ ? ରୁଷିଆ ତୁଳନାରେ ପଶ୍ଚିମ ୟୁରୋପରେ ବର୍ତ୍ତମାନ ଅନଗ୍ରସର ଶ୍ରମିକ ଜନତା ଏବଂ ସେମାନଙ୍କ ଅପେକ୍ଷା ଆହୁରି ଅଧିକ ପରିମାଣରେ—ଗ୍ରେଟ ଗ୍ରେଟ କୃଷିମାନେ ବୁର୍ଜୁଆ ଗଣତାନ୍ତ୍ରିକ ଓ ପାର୍ଲାମେଣ୍ଟାରୀ କୁସଂସ୍କାରରେ ଢେର ବେଶି ଆଚ୍ଛନ୍ନ ହୋଇ ରହିଛନ୍ତି । ଠିକ୍ ଏହି କାରଣରୁ ପଶ୍ଚିମ ୟୁରୋପରେ ଏହି ବୁର୍ଜୁଆ ପାର୍ଲାମେଣ୍ଟ ଭଳି ଅନୁଷ୍ଠାନଗୁଡ଼ିକ ଭିତରୁ ହିଁ କେବଳ କମ୍ୟୁନିଷ୍ଟମାନେ ଏକ ସୁଦୀର୍ଘ ଓ ଅଟଳ ସଂଗ୍ରାମ ପରିଚାଳନା କରିପାରିବେ, ବାଧା ପ୍ରତିବନ୍ଧକରେ ଭୟଭୀତ ହୋଇଯିବେ ନାହିଁ ଏବଂ ଏସବୁ କୁସଂସ୍କାରକୁ ପଦାରେ ପକାଇ

ଦେଇ, ସେ ଗୁଡ଼ିକୁ କ୍ରମେ କ୍ରମେ ଦୁର୍ବଳ କରି ଦେଇ ଅବଶେଷରେ ସେଗୁଡ଼ିକୁ ଅତିକ୍ରମ କରିଯାଇ ପାରିବେ ।

ଜର୍ମାନ "ବାମପନ୍ଥୀମାନେ" ଅଭିଯୋଗ କରନ୍ତି ଯେ ସେମାନଙ୍କ ପାର୍ଟି ଭିତରେ ଖରାପ "ନେତାମାନେ" ଅଛନ୍ତି । ସେଥିପାଇଁ ସେମାନେ ହତାଶ ହୋଇ ପଡ଼ନ୍ତି ଏବଂ ନେତାମାନଙ୍କୁ "ପ୍ରତ୍ୟାଖ୍ୟାନ" କରି ଦେବାର ଅତି ଉଦ୍ଭଟ କଥା ମଧ୍ୟ କହନ୍ତି । କିନ୍ତୁ ଅବସ୍ଥା ଯେତେବେଳେ ଏପରି ରୂପ ଧାରଣ କରିଥାଏ ଯେଉଁଥିରେ କି ଅନେକ ସମୟରେ "ନେତାମାନଙ୍କୁ" ଅଣ୍ଡରଗ୍ରାଉଣ୍ଡରେ ଲୁଚାଇ ରଖିବା ଦରକାର ପଡ଼େ ସେତେବେଳେ ଖୁବ୍ ଉତ୍ତମ, ନିର୍ଭର ଯୋଗ୍ୟ, ଅଭିଜ୍ଞ ଓ କର୍ତ୍ତୃତ୍ୱବାନ "ନେତାମାନଙ୍କୁ" ଗଢ଼ିତୋଳିବା ଅତିକଷ୍ଟକର ହୋଇ ଉଠେ । ଆଉ ଏସବୁ କଷ୍ଟକୁ ସଫଳତାର ସହିତ ଅତିକ୍ରମ କରାଯାଇ ପାରିବ ନାହିଁ ଯଦି ଆଇନଗତ କାର୍ଯ୍ୟ ସହିତ ବେଆଇନ କାର୍ଯ୍ୟକୁ ସଂଯୋଗ କରା ନଯିବ ଏବଂ ଅନ୍ୟାନ୍ୟ ପନ୍ଥା ସମେତ ପାର୍ଲାମେଣ୍ଟାରୀ କ୍ଷେତ୍ରରେ ମଧ୍ୟ "ନେତାମାନଙ୍କୁ" ପରୀକ୍ଷା କରାନଯିବ । ତେଣୁ ପାର୍ଲାମେଣ୍ଟାରୀ ପ୍ରଥା ବା ପାର୍ଲାମେଣ୍ଟାରୀ କାର୍ଯ୍ୟକଳାପକୁ ସମାଲୋଚନା ନକରି ଯେଉଁ ସବୁ ନେତା ବୈପ୍ଲବିକ ଓ କମ୍ୟୁନିଷ୍ଟ ପନ୍ଥାରେ ପାର୍ଲାମେଣ୍ଟାରୀ ନିର୍ବାଚନ ଓ ପାର୍ଲାମେଣ୍ଟାରୀ ପୀଠକୁ ସଦ୍‌ବ୍ୟବହାର କରିବାକୁ ଅସମର୍ଥ ସେମାନଙ୍କୁ ସମାଲୋଚନା କରିବାକୁ ହେବ – ଖୁବ୍ ଶାଣିତ, ନିର୍ମମ ଓ ଆପୋସହୀନ ସମାଲୋଚନା କରିବାକୁ ହେବ । ଆଉ ଯେଉଁ ସବୁ ନେତା ଏହି କାମ କରିବାକୁ ଅନିଚ୍ଛୁକ ସେମାନଙ୍କୁ ଆହୁରି କଠୋରଭାବେ ସମାଲୋଚନା କରିବାକୁ ହେବ । ଏହିପରି ସମାଲୋଚନା ଦ୍ୱାରା, ଆଉ ତା ସାଙ୍ଗକୁ ଅପଦାର୍ଥ ନେତାମାନଙ୍କୁ ବହିଷ୍କାର କରିଦେଇ ସେମାନଙ୍କ ସ୍ଥାନରେ ସୁଯୋଗ୍ୟ ଓ ସୁଦକ୍ଷ ନେତାମାନଙ୍କୁ ରଖିବା ଦ୍ୱାରା ହିଁ ଫଳପ୍ରଦ ଓ ଉପାଦେୟ ବୈପ୍ଳବିକ କାର୍ଯ୍ୟ ସମ୍ପନ୍ନ କରାଯାଇ ପାରିବ । ଏହା ଏକ ସଂଗରେ "ନେତାମାନଙ୍କୁ" ଶ୍ରମିକଶ୍ରେଣୀ ଓ ଶ୍ରମଜୀବୀ ଜନତାର ଯୋଗ୍ୟ ନେତା

ହେବା ପାଇଁ ତାଲିମ ଦେଇପାରିବ ଏବଂ ରାଜନୈତିକ ପରିସ୍ଥିତିକୁ ଠିକ୍ ଭାବେ ହୃଦୟଙ୍ଗମ କରିବା ବାଟରେ ଓ ଅନେକ ସମୟରେ ସେହି ପରିସ୍ଥିତି ✻ ପ୍ରସୂତ ଅତି ଜଟିଳ ଓ ଦୁଃସାଧ୍ୟ କର୍ତ୍ତବ୍ୟଗୁଡ଼ିକୁ ହୃଦୟଙ୍ଗମ କରିବାରେ ଜନସାଧାରଣଙ୍କୁ ମଧ୍ୟ ତାଲିମ ଦେଇପାରିବ ।

---

✻ ଇଟାଲୀର "ବାମପନ୍ଥୀ" କମ୍ୟୁନିଜମ୍ ସହିତ ଭଲଭାବେ ପରିଚିତ ହେବାର କୌଣସି ସୁଯୋଗ ମୁଁ ପାଇନାହିଁ । କମ୍ରେଡ଼ ବୋର୍ଦ୍ଦିଗା ଓ ତାଙ୍କର "କମ୍ୟୁନିଷ୍ଟ ବାସନ୍ଦବାଦୀ" ଗୋଷ୍ଠୀ ପାର୍ଲାମେଣ୍ଟରେ ଅଂଶ ଗ୍ରହଣ ନ କରିବା ପାଇଁ ପ୍ରଚାର କରି ଅନୁଚିତ ଭାବେ ଭୁଲ କରୁଛନ୍ତି । କିନ୍ତୁ ତାଙ୍କର 'ସୋଭିଏତ୍' ନାମକ ପତ୍ରିକାର ଦୁଇଟି ସଂଖ୍ୟା (୩ୟ ଓ ୪ର୍ଥ ସଂଖ୍ୟା, ଜାନୁଆରୀ ୧୮ ଓ ଫେବୃଆରୀ ୧, '୧୯୨୦) ପଢ଼ି ଏବଂ କମ୍ରେଡ଼ ସେରାଟିଙ୍କର "କମ୍ୟୁନିଜମ" ନାମକ ସେଇ ଚମତ୍କାର ପତ୍ରିକାର ଚାରୋଟି ସଂଖ୍ୟା ( ନଂ ୧-୪, ଅକ୍ଟୋବର ୧—ନଭେମ୍ବର ୩୦, ୧୯୧୯ ) ଓ ସଂକ୍ଷିପ୍ତଭାବେ କେତେକ ଇଟାଲୀୟ ବୁର୍ଜୁଆ ସଂବାଦପତ୍ର ପଢ଼ି ମୁଁ ଯାହା ବୁଝିଛି ସେଥିରୁ ମୋର ମନେହୁଏ କମ୍ରେଡ଼ ବୋର୍ଦ୍ଦିଗା ଗୋଟିଏ ବିଷୟରେ ଠିକ୍ । ସେ ଓ ତାଙ୍କର ଗୋଷ୍ଠୀ ତୁରାଟୀ ଓ ତୁରାଟୀଙ୍କର ଅନୁଚରମାନଙ୍କୁ ଆକ୍ରମଣ କରି ଠିକ୍ କାମ କରୁଛନ୍ତି । କାରଣ ଏହି ତୁରାଟୀ ଯେଉଁ ପାର୍ଟିରେ ରହିଛନ୍ତି ସେଇ ପାର୍ଟି ସୋଭିଏତ୍ କ୍ଷମତା ଓ ସର୍ବହରାର ଅଧିନାୟକତ୍ୱକୁ ସ୍ୱୀକାର କରେ, ଅଥଚ ତୁରାଟୀ ଓ ତାଙ୍କର ଅନୁଚରମାନେ ପାର୍ଲାମେଣ୍ଟ ସଭ୍ୟ ହିସାବରେ ସେମାନଙ୍କର ସେହି ପୁରୁଣା ଘୃଣ୍ୟ ସୁବିଧାବାଦୀ ନୀତିକୁ ଅନୁସରଣ କରୁଛନ୍ତି । ଅବଶ୍ୟ ଏ ସବୁ କାମକୁ ବରଦାସ୍ତ କରି କମ୍ରେଡ଼ ସେରାଟି ଓ ସମଗ୍ର ଇଟାଲୀୟ ସୋଶାଲିଷ୍ଟ ପାର୍ଟି ଖୁବ୍ ଭୁଲ କରୁଛନ୍ତି । ଏହା ଫଳରେ ସେହି ପ୍ରକାର କ୍ଷତି ହେବାର ଓ ସେହିସବୁ ବିପଦ ଦେଖାଦେବାର ଆଶଙ୍କା ରହିଛି ଯାହା ହଙ୍ଗେରୀରେ ଘଟିଥିଲା । ସେଠାରେ ଏହି ହଙ୍ଗେରୀୟ ତୁରାଟିଗଣ-

ପାର୍ଟି ଓ ସୋ.ଭିଏତ୍ ସରକାରକୁ ଭିତରୁ ରନ୍ଧ୍ର କରିଦେଇଥିଲେ । ସୁବିଧାବାଦୀ ପାର୍ଲାମେଣ୍ଟାରିଆନମାନଙ୍କ ସମ୍ପର୍କରେ ଏତାଦୃଶ ଭ୍ରାନ୍ତ, ଦୋଦୁଲ୍ୟମାନ ଓ ମେରୁଦଣ୍ଡହୀନ ମନୋଭାବ ଏକପକ୍ଷରେ "ବାମପନ୍ଥୀ" କମ୍ୟୁନିଜମ୍‌ର ଜନ୍ମଦେବ ଏବଂ ଅପରପକ୍ଷରେ ଏ ପ୍ରକାର କମ୍ୟୁନିଜମର ଅସ୍ଥିରତାର ଯଥାର୍ଥତାକୁ କେତେକ ପରିମାଣରେ ପ୍ରମାଣ କରିଦେବ । ପାର୍ଲାମେଣ୍ଟ ସଭ୍ୟ ବ୍ୟକ୍ତିଙ୍କୁ "ଦୋଦୁଲ୍ୟମାନ" ବୋଲି କମ୍ରେଡ୍ ସେରାଟି ଯେତେବେଳେ ଅଭିଯୋଗ କରନ୍ତି ସେତେବେଳେ ସେ ନିହାତି ଭୁଲ କରନ୍ତି କାରଣ ପ୍ରକୃତରେ ଦେଖିବାକୁ ଗଲେ ଇତାଲୀ ସୋସାଲିଷ୍ଟ ପାର୍ଟି ନିଜେ ହେଉଛି ଅତି ଦୋଦୁଲ୍ୟମାନ, ଯେହେତୁ ଏହି ପାର୍ଟି ତୁରାଟୀ ଓ ତାଙ୍କର ଅନୁଚର ମାନଙ୍କପରି ସୁବିଧାବାଦୀ ପାର୍ଲାମେଣ୍ଟାରିଆନମାନଙ୍କୁ ବରଦାସ୍ତ କରୁଛି ।

[ ୮ମ ପରିଚ୍ଛେଦ ]

## "ଆପୋସ ଅସମ୍ଭବ"?

ଫ୍ରାଙ୍କଫର୍ଟ ପତ୍ରିକାରୁ ଯେଉଁ ଉଦ୍ଧୃତ ପୂର୍ବବର୍ତ୍ତୀ ପରିଚ୍ଛେଦରେ ଦିଆଯାଇଛି ସେଥିରେ ଆମେ ଦେଖିଲୁ "ବାମପନ୍ଥୀମାନେ" କିପରି ଜୋର ଦେଇ ଏହି "ଆପୋସ ଅସମ୍ଭବ"ର ସ୍ଲୋଗାନକୁ ଉପସ୍ଥାପିତ କରିଛନ୍ତି । ବାସ୍ତବିକ ଘୋର ଦୁଃଖରେ ଏମିତି ଲୋକଙ୍କୁ ଦେଖିବାକୁ ଯେଉଁମାନେ ମାର୍କ୍ସବାଦର ମୌଳିକ ସତ୍ୟକୁ ଭୁଲି ଯାଇ ନିଜକୁ ନିଃସନ୍ଦେହରେ ମାର୍କସ୍‌ବାଦୀ ବୋଲି ସ୍ବୀକାର କରନ୍ତି ଓ ମାର୍କସ୍‌ବାଦୀ ହେବାକୁ ଚାହାନ୍ତି । ଏଙ୍ଗେଲସ୍, ଯେ କି ମାର୍କସ୍‌ଙ୍କ ପରି ମଧ୍ୟ ଜଣେ ଅଦ୍ବିତୀୟ ଲେଖକ, ଯାହାଙ୍କର ପ୍ରତ୍ୟେକଟି ପ୍ରସିଦ୍ଧ ଗ୍ରନ୍ଥର ପ୍ରତ୍ୟେକଟି ବାକ୍ୟରେ ଅତି ଗମ୍ଭୀର ଅର୍ଥ ଓ ତାତ୍ପର୍ଯ୍ୟ ଭରି ରହିଛି, ସେ ୧୮୭୪ରେ ତେତିଶ ଜଣ ବ୍ଲାଙ୍କ୍ୱିଷ୍ଟ କମ୍ୟୁନାର୍ଡମାନଙ୍କର ଇସ୍ତାହାରକୁ ବିରୋଧକରି ଏଇଆ ଲେଖିଥିଲେ:—

"ବ୍ଲାଙ୍କ୍ୱିଷ୍ଟ କମ୍ୟୁନାର୍ଡମାନେ ସେମାନଙ୍କର ଇସ୍ତାହାରରେ ଲେଖିଛନ୍ତି, 'ଆମେ କମ୍ୟୁନିଷ୍ଟ କାରଣ ଆମେ କୌଣସି ଅନ୍ତର୍ବର୍ତ୍ତୀ ଷ୍ଟେସନରେ ଅଟକି ନଯାଇ, କାହାସହିତ କୌଣସି ପ୍ରକାର ଆପୋସ ନକରି ଆମର ଲକ୍ଷ୍ୟ ହାସଲ କରିବାକୁ ଚାହୁଁ । ଏହି ଆପୋସ ଦ୍ୱାରା ବିଜୟର ଦିନ କେବଳ ଘୁଞ୍ଚି ଘୁଞ୍ଚି ଯିବ ଏବଂ ଦାସତ୍ୱର କାଳ ଆହୁରି ବଢ଼ି ବଢ଼ି ଯିବ ।'

"ଜର୍ମାନ କମ୍ୟୁନିଷ୍ଟମାନେ ହେଉଛନ୍ତି କମ୍ୟୁନିଷ୍ଟ କାରଣ ସେମାନେ ଏ ସବୁ ଅନ୍ତର୍ବର୍ତ୍ତୀ ଷ୍ଟେସନ ଓ ସବୁ ଆପୋସ—ଯାହାକି ସେମାନଙ୍କ

ଦ୍ୱାରା ସୃଷ୍ଟ ହୋଇନାହିଁ, ଯାହା ସୃଷ୍ଟହୋଇଛି ଐତିହାସିକ ବିକାଶଧାରା ଦ୍ୱାରା—ଏସବୁ ଭିତର ଦେଇ ଗତି କଲାବେଳେ ମଧ୍ୟ ନିଜର ଚରମ ଲକ୍ଷ୍ୟକୁ ଅତି ସ୍ପଷ୍ଟ ଭାବେ ଦେଖନ୍ତି ଏବଂ ଏହି ଲକ୍ଷ୍ୟ ହାସଲ ଲାଗି ଅନବରତ ଉଦ୍ୟମ କରନ୍ତି । ଏହି ଚରମ ଲକ୍ଷ୍ୟ ହେଉଛି ସବୁ ଶ୍ରେଣୀର ବିଲୋପ ଏବଂ ଏକ ନୂତନ ସମାଜର ନିର୍ମାଣ ଯେଉଁଥିରେ ଜମି କିମ୍ବା ଉତ୍ପାଦନର କୌଣସି ଉପକରଣ ଉପରେ ବ୍ୟକ୍ତିଗତ ମାଲିକାନା ଆଉ ରହିବ ନାହିଁ । କିନ୍ତୁ ଏହି ତେତିଶ ଜଣ ବ୍ଲାଙ୍କ୍ୟୁଷ୍ଟ ହେଉଛନ୍ତି କମ୍ୟୁନିଷ୍ଟ କାରଣ ସେମାନେ କଳ୍ପନା କରନ୍ତି ଯେ, ସେମାନେ ଏସବୁ ଅନ୍ତର୍ବର୍ତ୍ତୀ ଷ୍ଟେସନ ଓ ସାଲିସକୁ ଏଡ଼ିଦେଇ ଯିବାକୁ ଚାହାନ୍ତି ବୋଲି କେବଳ ସବୁ କଥା ଅଧେ ଆପେ ତୁଟିଯିବ ଏବଂ ଆଉ ଅଳ୍ପ କେତୋଟି ଦିନ ପରେ ଯଦି 'ତାହା ଆରମ୍ଭ ହୋଇଯାଏ'—ଆରମ୍ଭ ହୋଇଯିବ ବୋଲି ସେମାନେ ସ୍ଥିର କରି ନେଇଛନ୍ତି ମଧ୍ୟ—ଆଉ ସେମାନେ ଯଦି ଥରେ କ୍ଷମତାକୁ ଆସିଯାନ୍ତି ତାହେଲେ ତା'ର ଦିନକ ପରେ ସେମାନେ 'କମ୍ୟୁନିଜମ ପ୍ରବର୍ତ୍ତନ କରିଦେବେ । ଆଉ ତା' ଯଦି ତୁରନ୍ତ ସମ୍ଭବ ନହୁଏ ତେବେ ସେମାନେ କମ୍ୟୁନିଷ୍ଟ ନୁହନ୍ତି ।

"ଏହି ଅସହିଷ୍ଣୁତାକୁ ତାତ୍ତ୍ୱିକ ଦୃଷ୍ଟିରୁ ଏକ ବିଶ୍ୱାସଯୋଗ୍ୟ ଯୁକ୍ତିରୂପେ ଉପସ୍ଥାପିତ କରିବା ନିହାତି ଶିଶୁସୁଲଭ ନିର୍ବୋଧତା ବ୍ୟତୀତ ଅନ୍ୟ କିଛି ନୁହଁ !" ( ଫ୍ରେଡ଼େରିକ୍ ଏଙ୍ଗେଲସ୍, "ବ୍ଲାଙ୍କ୍ୟୁଷ୍ଟ କମ୍ୟୁନାର୍ଡ଼ ମାନଙ୍କର କାର୍ଯ୍ୟକ୍ରମ," ୧୮୭୪ରେ ଜର୍ମାନ୍ ସୋଶାଲଡ଼େମୋକ୍ରାଟିକ ପାର୍ଟିର ସମ୍ବାଦପତ୍ର "ଭୋଲକ୍ଷ୍ଟାଟ୍"ର ୭୩ ସଂଖ୍ୟାରେ ପ୍ରକାଶିତ ) ।

ଫ୍ରେଡ଼େରିକ ଏଙ୍ଗେଲସ ତାଙ୍କର ସେଇ ପ୍ରବନ୍ଧରେ ଭେଇଲାଁଙ୍କ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ପ୍ରକାଶକରିଛନ୍ତି ଏବଂ ତାଙ୍କର "ଅନସ୍ୱୀକାର୍ଯ୍ୟ ଗୁଣାବଳୀ" କଥା ଉଲ୍ଲେଖ କରିଛନ୍ତି ( ଗ୍ରେସ୍‌ଡେଙ୍କ ପରି ଏହି 'ଭେଇଲାଁ' ମଧ୍ୟ ଆନ୍ତର୍ଜାତିକ ସମାଜବାଦୀ ଆନ୍ଦୋଳନର ଅନ୍ୟତମ ବିଶିଷ୍ଟ ନେତା ଥିଲେ, କିନ୍ତୁ ୧୯୧୪ ଅଗଷ୍ଟରେ ଉଭୟେ

ସମାଜବାଦୀଙ୍କ ବିଶ୍ୱାସଘାତକତା କଲେ ) । କିନ୍ତୁ ତା ବୋଲି ସେମାନେ ଅତି ଦୁଷ୍ଟ ଭୁଲକୁ ଭଲରୂପେ ବିଶ୍ଳେଷଣ ନକରି ଏଙ୍ଗେଲସ ଛାଡ଼ି ଦେଇ ନାହାନ୍ତି । ଅବଶ୍ୟ, ଅତି ତରୁଣ ଓ ଅନଭିଜ୍ଞ ବିପ୍ଳବୀମାନଙ୍କୁ ତଥା ପେଟି ବୁର୍ଜୁଆ ବିପ୍ଳବୀମାନଙ୍କୁ, ସେମାନେ ଯେତେ ବୟୋବୃଦ୍ଧ ଓ ଅଭିଜ୍ଞ ହୁଅନ୍ତୁ ନା କାହିଁକି, ସେମାନଙ୍କୁ "ଆପୋଷ କରିବାପାଇଁ ଛାଡ଼ିଦେବା" ଅତି "ବିପଜ୍ଜନକ", ଅବୋଧ ଓ ଭ୍ରମାତ୍ମକ କାର୍ଯ୍ୟବୋଲି ମନେ ହୁଏ । ଆଜି ଅନେକ ତର୍କବାଗୀଶ ମଧ୍ୟ (ସେମାନେ ଅତି ମାତ୍ରାରେ ଓ ଅସାଧାରଣ ଭାବେ "ଅଭିଜ୍ଞ" ରାଜନୀତିଜ୍ଞ ହୋଇଥିବାରୁ ) ଠିକ୍ କମ୍ରେଡ଼ ଲ୍ୟାନ୍ସବରି ଦର୍ଶାଇଥିବା ବ୍ରିଟିଶ ସୁବିଧାବାଦୀ ନେତାମାନଙ୍କ ପରି ଯୁକ୍ତି କରି କହନ୍ତି; "ବଲଶେଭିକ୍ମାନେ ଯଦି ଗୋଟାଏ ଆପୋଷ କରି ପାରନ୍ତି ତାହାହେଲେ ଆମେ କାହିଁକି ଯେ କୌଣସି ପ୍ରକାର ଆପୋଷ କରି ନପାରିବୁ ?" କିନ୍ତୁ ଯେଉଁ ସର୍ବହରା ଶ୍ରେଣୀ ଅଗଣିତ ଧର୍ମଘଟରେ ( ଶ୍ରେଣୀ ସଂଗ୍ରାମର ବହୁ ରୂପ ମଧ୍ୟରୁ ଏହି ଗୋଟିଏ ରୂପ କଥା ଧରାଯାଉ) ଦୀକ୍ଷିତ ହୋଇଛନ୍ତି ସେମାନେ ସାଧାରଣତଃ ଏଙ୍ଗେଲସଙ୍କ ଦ୍ୱାରା ପ୍ରତିପାଦିତ ହୋଇଥିବା ଏହି ଗମ୍ଭୀର ( ଦାର୍ଶନିକ, ଐତିହାସିକ, ରାଜନୈତିକ ଓ ମନସ୍ତାତ୍ତ୍ୱିକ ) ସତ୍ୟକୁ ଖୁବ୍ ଭଲଭାବେ ହୃଦୟଙ୍ଗମ କରନ୍ତି । ପ୍ରତ୍ୟେକ ସର୍ବହରାକୁ ଧର୍ମଘଟ କରିବାକୁ ପଡ଼ୁଛି ଏବଂ ତାର ଘୃଣ୍ୟ ଶୋଷକ ଓ ନିପୀଡ଼କମାନଙ୍କ ସହିତ "ଆପୋଷ" କରିବାର ଅଭିଜ୍ଞତା ହାସଲ କରିବାକୁ ପଡ଼ୁଛି ଯେତେବେଳେ ଶ୍ରମିକମାନଙ୍କୁ କିଛି ହାସଲ ନ କରି କିମ୍ବା ନିଜର ଦାବିର ଆଂଶିକ ପୂରଣରେ ସମ୍ମତ ହୋଇ ପୁଣି କାମକୁ ଫେରି ଯିବାକୁ ପଡ଼ୁଛି । ସର୍ବହରା ଶ୍ରେଣୀକୁ ଯେଉଁ ଅବସ୍ଥା ଭିତରେ ଗଣ ସଂଗ୍ରାମ ଚଳାଇବାକୁ ପଡ଼େ ଏବଂ ସୁତୀବ୍ର ଶ୍ରେଣୀ ସଂଘର୍ଷର ଯେଉଁ ପରିବେଶ ଭିତରେ ବାସ କରିବାକୁ ପଡ଼େ ତା ଫଳରେ ପ୍ରତ୍ୟେକ ସର୍ବହରା ବୁଝେ ଯେ, ବାସ୍ତବ ପରିସ୍ଥିତି ( ଯଥା, ଧର୍ମଘଟ ପାଣ୍ଠିର ଅଭାବ, ବାହାର ସମର୍ଥନର ଅଭାବ, ଦୀର୍ଘଦିନର ଅନାହାର ଓ କ୍ଳାନ୍ତି ) ଦ୍ୱାରା ବାଧ୍ୟ ହୋଇ ଯେଉଁ ଆପୋଷ କରିବାକୁ ପଡ଼େ, ଯାହା ଦ୍ୱାରା କି ଆପୋଷ କରିବା

ପାଇଁ ବାଧ ହୋଇଥିବା ଶ୍ରମିକମାନଙ୍କର ବୈପ୍ଳବିକ ନିଷ୍ଠା ଓ ଅତୁଟ ସଂଗ୍ରାମ ଚଳାଇବାର ଇଚ୍ଛା କୌଣସିମତେ ହ୍ରାସ ପାଏ ନାହିଁ ଏବଂ ଅପର ପକ୍ଷରେ ବିଶ୍ୱାସଘାତକମାନେ ଯେଉଁ ଆପୋଷ କରନ୍ତି, ସେହିମାନେ ନିଜନର ସ୍ୱାର୍ଥପରତା, (ଧର୍ମଘଟ ଭଙ୍ଗକାରୀମାନେ ମଧ୍ୟ "ଆପୋଷ" କରିଥାନ୍ତି !) ଭୀରୁତା, ପୁଞ୍ଜିପତିମାନଙ୍କୁ ତୋଷାମଦ କରିବାର ମନୋଭାବ ଆଉ ବେଳେ ବେଳେ ପୁଂଜିପତିମାନଙ୍କ ଧମକ ଚମକରେ ଡରି ଯିବାର, ଲାଞ୍ଚ ନେଇ ବିକି ହୋଇଯିବାର କିମ୍ବା ସେମାନଙ୍କର ପ୍ରବଞ୍ଚନା ଓ ଖୋସାମତରେ ଭୁଲିଯିବାର ପ୍ରବୃତ୍ତିକୁ ଘୋଡ଼ାଇବା ପାଇଁ ବାହ୍ୟ କାରଣ ଉପରେ ଦୋଷ ଦିଅନ୍ତି — ଏହି ଦୁଇ ପ୍ରକାର ଆପୋଷ ଭିତରେ ପ୍ରକୃତ ପ୍ରଭେଦ କ'ଣ । (ବ୍ରିଟିଶ ଶ୍ରମିକ ଆନ୍ଦୋଳନର ଇତିହାସରେ ବ୍ରିଟିଶ ଟ୍ରେଡ଼ ୟୁନିୟନ ନେତାମାନେ ଏପରି ବିଶ୍ୱାସଘାତୀ ଆପୋଷ କରିବାର ପ୍ରଚୁର ଦୃଷ୍ଟାନ୍ତ ରହିଛି । କେବଳ ବ୍ରିଟେନରେ ନୁହଁ, ପ୍ରାୟ ସବୁ ଦେଶର ଶ୍ରମିକମାନେ ମଧ୍ୟ ଏହିପରି କୌଣସି ନା କୌଣସି ପ୍ରକାରର ବିଶ୍ୱାସଘାତୀ "ଆପୋଷର" ଅଭିଜ୍ଞତା ଅଙ୍ଗେ ଲଭିଛନ୍ତି । )

ଅବଶ୍ୟ କେତେବେଳେ ଏପରି କେତେକ ନିର୍ଦ୍ଦିଷ୍ଟ ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼େ ଯେତେବେଳେ ଯେଉଁ "ଆପୋଷର" ଚରିତ୍ର କଣ ତାହା ନିର୍ଦ୍ଧାରଣ କରିବା ଅତ୍ୟନ୍ତ କଷ୍ଟସାଧ୍ୟ ହୋଇ ଉଠେ, କାରଣ ପରିସ୍ଥିତି ଖୁବ୍ କଷ୍ଟକର ଓ ଜଟିଳ ହୋଇଥାଏ । ଯେମିତି-ନରହତ୍ୟା କ୍ଷେତ୍ରରେ କେଉଁ ନରହତ୍ୟା ଯଥାର୍ଥ ଓ ଏପରିକି ଅପରିହାର୍ଯ୍ୟ ( ଦୃଷ୍ଟାନ୍ତ ସ୍ୱରୂପ ଆଇନ ସମ୍ମତ ଆତ୍ମରକ୍ଷା ) ହୋଇଛି ଏବଂ କେଉଁ ନରହତ୍ୟା ଅକ୍ଷମଣୀୟ ଅବହେଳା ଯୋଗୁଁ ହୋଇଛି କିମ୍ବା ଅତି ଧୂର୍ତ୍ତ ଚକ୍ରାନ୍ତ ଦ୍ୱାରା କରାଯାଇଛି ତାହା ନିର୍ଦ୍ଧାରଣ କରିବା ବେଳେ ବେଳେ କଷ୍ଟକର ହୋଇ ଉଠେ ଇଏ ମଧ୍ୟ ସେମିତି । ଅବଶ୍ୟ ରାଜନୀତିରେ ବେଳେ ବେଳେ ( ଜାତୀୟ ତଥା ଆନ୍ତର୍ଜାତୀୟ କ୍ଷେତ୍ରରେ) ବିଭିନ୍ନ ଶ୍ରେଣୀର ଓ ବିଭିନ୍ନ ଦଳର ପାରସ୍ପରିକ ସମ୍ପର୍କ ଏପରି ଜଟିଳ ହୋଇ ପଡ଼ିଥାଏ ଯେ, ସେଥିରେ ଏପରି ଅନେକ

ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼େ ସେତେବେଳେ କେଉଁ ଧର୍ମଘଟ-
କାଳୀନ "ହାଲସଟା" ନ୍ୟାୟସମ୍ମତ ହୋଇଛି କିମ୍ବା କେଉଁ "ସଲସଟା"
ଜଣେ ଧର୍ମଘଟ ଭଙ୍ଗକାରୀ ବା ବିଶ୍ୱାସଘାତକ ଇତ୍ୟାଦିଙ୍କ ଦ୍ୱାରା ହୋଇଛି
ତାହା ନିର୍ଣ୍ଣୟ କରିବା ଅତ୍ୟନ୍ତ କଷ୍ଟକର ହୋଇପଡ଼େ । ସବୁ କ୍ଷେତ୍ର
ପାଇଁ ଗୋଟାଏ ସାଧାରଣ ଫର୍ମୁଲା ବା ନିୟମ ( "ସାଲିସ ଅସମ୍ଭବ" )
ବାନ୍ଧିଦେବା ଅତି ଅସମ୍ଭବ ଓ ଅବାସ୍ତବ ହୋଇ ଉଠିବ । ପ୍ରତ୍ୟେକଟି
ଅଲଗା ଅଲଗା କ୍ଷେତ୍ରରେ ନିଜର ବୁଦ୍ଧି ଖଟାଇ ପ୍ରକୃତ ପରିସ୍ଥିତିକୁ
ବିଶ୍ଳେଷଣ କରିବାକୁ ପଡ଼ିବ । ପ୍ରକୃତରେ ଦେଖିବାକୁ ଗଲେ ଏହା
ହେଉଛି ପ୍ରତ୍ୟେକଟି ପାର୍ଟି ସଂଗଠନ ଓ ଉପଯୁକ୍ତ ପାର୍ଟି ନେତାମାନ-
ଙ୍କର ଅନ୍ୟତମ କାର୍ଯ୍ୟ । ତା ଅର୍ଥ, ଉପଯୁକ୍ତ ଶ୍ରେଣୀର * ଚିନ୍ତାଶୀଳ ପ୍ରତିନିଧି-
ମାନଙ୍କର ସୁଦୀର୍ଘ, ଧାରାବାହିକ, ବହୁବିଧ ଓ ସର୍ବବ୍ୟାପୀ ପ୍ରୟାସ ଦ୍ୱାରା
ପ୍ରୟୋଜନୀୟ ଜ୍ଞାନ ଓ ଅଭିଜ୍ଞତା ଅର୍ଜନ କରିବାକୁ ପଡ଼ିବ ଏବଂ ଏହି ଜ୍ଞାନ
ଓ ଅଭିଜ୍ଞତା ସାଙ୍ଗକୁ ଅତି ଜଟିଳ ରାଜନୈତିକ ସମସ୍ୟାବଳୀର ଦ୍ରୁତ
ଓ ନିର୍ଭୁଲ ସମାଧାନ କରିପାରିବା ପାଇଁ ଆବଶ୍ୟକୀୟ ରାଜନୈତିକ
ପ୍ରବୃତ୍ତିର ଅଧିକାରୀ ହେବାକୁ ପଡ଼ିବ ।

---

* ପ୍ରତ୍ୟେକ ଶ୍ରେଣୀ ଭିତରେ ଏପରି କେତେକ ବ୍ୟକ୍ତି ନିଶ୍ଚୟ ରହିବେ
ଯେଉଁମାନେ କେବେ ଚିନ୍ତା କରନ୍ତି ନାହିଁ ଏବଂ ଚିନ୍ତା କରିବା ପାଇଁ ଅସମର୍ଥ ।
ଏପରିକି ଅତି ଉନ୍ନତ ଦେଶଗୁଡ଼ିକରେ ଓ ଅତି ଉନ୍ନତ ଶ୍ରେଣୀ ଭିତରେ
ବି ଏପରି ସବୁ ବ୍ୟକ୍ତି ରହିଥାନ୍ତି । ଏପରିକି ଏକ ସଙ୍ଗୀନ ମୁହୂର୍ତ୍ତରେ ଯେତେ-
ବେଳେ ସେହି ଶ୍ରେଣୀର ସମସ୍ତ ଆତ୍ମିକ ଶକ୍ତି ତାର ସର୍ବୋଚ୍ଚ ଶିଖରକୁ
ଉଠିଯାଇଥାଏ ସେତେବେଳେ ବି ସେହି ଶ୍ରେଣୀ ଭିତରେ ଏପରି ବ୍ୟକ୍ତିମାନେ
ରହିଥାନ୍ତି । ଯେତେଦିନ ପର୍ଯ୍ୟନ୍ତ ସମାଜରେ ବିଭିନ୍ନ ଶ୍ରେଣୀ ରହିଥିବେ,
ଯେତେଦିନ ପର୍ଯ୍ୟନ୍ତ ଶ୍ରେଣୀହୀନ ସମାଜ ନିଜକୁ ନିଜର ଭିତ୍ତି ଉପରେ ସୁଦୃଢ଼
ଓ ସୁସଂହତ ଭାବେ ପ୍ରତିଷ୍ଠା କରି ପାରିନଥିବ ସେତେଦିନ ପର୍ଯ୍ୟନ୍ତ ଏହା
ଅନିବାର୍ଯ୍ୟ ହୋଇ ରହିବ । ତାହା ନ ହୋଇଥିଲେ ପୁଞ୍ଜିବାଦ ଜନ-
ସାଧାରଣଙ୍କର ନିପୀଡ଼କ ହୋଇ ରହି ନଥାନ୍ତା ବର୍ତ୍ତମାନ ଯେମିତି ରହିଛି ।

ଅତି ସରଳ ଓ ଅନଭିଜ୍ଞ ଲୋକେ ସ୍ୱତନ୍ତ୍ର ଯେ, ସାଧାରଣଭାବେ ସାଲିସ କରିହୋଇପାରେ ବୋଲି ସ୍ୱୀକାର କରିନେବା ଯଥେଷ୍ଟ । ବୈପ୍ଳବିକ ମାର୍କ୍ସବାଦ ବା କମ୍ୟୁନିଜମ ଏବଂ ସୁବିଧାବାଦ, ଯାହା ବିରୁଦ୍ଧରେ ଆମେ ବର୍ତ୍ତମାନ ସଂଗ୍ରାମ ଚଳାଇଛୁ ଓ ଯାହା ବିରୁଦ୍ଧରେ ଆମକୁ ଏକ ଆପୋଷହୀନ ସଂଗ୍ରାମ ମଧ୍ୟ ଚଳାଇବାକୁ ପଡ଼ିବ, ଏହି ଦୁଇଟି ଭିତରେ ଯେଉଁ ପାର୍ଥକ୍ୟ ରେଖା ରହିଛି ତାହାକୁ ନିଶ୍ଚିହ୍ନ କରିଦେବା ଉଦ୍ଦେଶ୍ୟରେ ସେମାନେ ଏପରି ସ୍ୱତନ୍ତ୍ର । କିନ୍ତୁ ଏସବୁ ଲୋକେ ଯଦି ଏପର୍ଯ୍ୟନ୍ତ ବୁଝିନଥାନ୍ତି ଯେ, ପ୍ରକୃତି ଓ ସମାଜ ଭିତରେ ଯେତେ ସବୁ ପାର୍ଥକ୍ୟ ରେଖା ରହିଛି ତାହା ସବୁ ପରିବର୍ତ୍ତନଶୀଳ ଓ କେତେକ ପରିମାଣରେ ପରମ୍ପରାଗତ ମଧ୍ୟ, ତେବେ ସେମାନଙ୍କୁ ଏକଥା ଭଲରୂପେ ବୁଝାଇବାକୁ ହେଲେ ଦୀର୍ଘ କାଳର ଶିକ୍ଷା, ତାଲିମ, ଜ୍ଞାନ ଏବଂ ରାଜନୈତିକ ଓ ଦୈନନ୍ଦିନ ଅଭିଜ୍ଞତା ବ୍ୟତୀତ ସେମାନଙ୍କୁ ସାହାଯ୍ୟ କରିବାର ଅନ୍ୟ କୌଣସି ପନ୍ଥା ନାହିଁ । ପ୍ରତ୍ୟେକଟି ସ୍ୱତନ୍ତ୍ର ବା ନିର୍ଦ୍ଦିଷ୍ଟ ଐତିହାସିକ ମୁହୂର୍ତ୍ତର ରାଜନୀତିର ଯେଉଁସବୁ ବାସ୍ତବ ସମସ୍ୟା ରହିଛି ସେଥିରେ ହୋଇଥିବା ଅତି ପ୍ରଧାନ ପ୍ରଧାନ ଅବାଞ୍ଛନୀୟ ଓ ବିଶ୍ୱାସଘାତୀ ସାଲିସକୁ, ଯେଉଁ ସାଲିସ ଭିତରେ ସୁବିଧାବାଦ ନିହିତ ହୋଇ ରହିଛି ଯାହାକି ବିପ୍ଳବୀ ଶ୍ରେଣୀ ପକ୍ଷରେ ଅତ୍ୟନ୍ତ ମାରାତ୍ମକ, ସେ ସବୁ ସାଲିସକୁ ଅଲଗା ଅଲଗା କରି ଗୋଟି ଗୋଟି କରି ସେମାନଙ୍କୁ ଭଲରୂପେ ବୁଝାଇ ଦେବାକୁ ପଡ଼ିବ ଓ ସେସବୁ ସାଲିସ ବିରୁଦ୍ଧରେ ସଂଗ୍ରାମ କରିବାକୁ ପଡ଼ିବ । ଏହା ଅତି ଗୁରୁତ୍ୱପୂର୍ଣ୍ଣ କାମ ୧୯୧୪ ଠାରୁ ୧୯୧୮ ମଧ୍ୟରେ ଦୁଇଟି ଲୁଣ୍ଠନକାରୀ ଓ ଅତ୍ୟାଚାରୀ କ୍ଷମତା ଗୋଷ୍ଠୀ ମଧ୍ୟରେ ଯେଉଁ ସାମ୍ରାଜ୍ୟବାଦୀ ଯୁଦ୍ଧ ହୋଇଥିଲା ସେହି ଯୁଦ୍ଧ ସମ୍ବନ୍ଧରେ ଏକ ପ୍ରଧାନ ଓ ମୌଳିକ ଧରଣର ସୁବିଧାବାଦ ଆତ୍ମପ୍ରକାଶ କରିଥିଲା । ସେହି ସୁବିଧା-ବାଦ ହେଉଛି ସାମାଜିକ—ଉଗ୍ର ଜାତୀୟତାବାଦ (social chauvinism), ଅର୍ଥାତ୍ 'ପିତୃଭୂମିର ସୁରକ୍ଷା' ନାମରେ ଦୁଷ୍କରିତ ଗୋଷ୍ଠୀମାନଙ୍କ ପ୍ରତି ସମର୍ଥନ । ଏପରି ଏକ ସାମ୍ରାଜ୍ୟବାଦୀ ଯୁଦ୍ଧରେ ଏପରି ସମର୍ଥନର ପ୍ରକୃତ ଅର୍ଥ ହେଉଛି "ନିଜର" ବୁର୍ଜୁଆଶ୍ରେଣୀର ଲୁଣ୍ଠନକାରୀ ସ୍ୱାର୍ଥକୁ

ସୁରକ୍ଷିତ କରିବା । ଯୁଦ୍ଧପରେ ଏହି ପ୍ରକାର ସୁବିଧାବାଦ, ଏହି ପ୍ରକାର ଅବାଞ୍ଛନୀୟ ଓ ବିଶ୍ୱାସଘାତୀ ଚାଲିସ ଅନ୍ୟରୂପରେ ଆତ୍ମପ୍ରକାଶ କଲା । ତାହା ହେଉଛି ତଥ୍ୟର "ଲିଗ୍ ଅଫ୍ ନେଶନସକୁ" ସମର୍ଥନ କରିବା, ବିପ୍ଳବୀ ସର୍ବହରା ଶ୍ରେଣୀ ଓ "ସୋଭିଏତ୍" ଆନ୍ଦୋଳନ ବିରୁଦ୍ଧରେ ନିଜ ଦେଶର ବୁର୍ଜୁଆ-ଶ୍ରେଣୀ ସହିତ ପ୍ରତ୍ୟକ୍ଷ ବା ପରୋକ୍ଷ ମେଣ୍ଟକୁ ସମର୍ଥନ କରିବା ଏବଂ "ସୋଭିଏତ କ୍ଷମତା" ବିରୁଦ୍ଧରେ ବୁର୍ଜୁଆ ଗଣତନ୍ତ୍ର ଓ ବୁର୍ଜୁଆ ପାର୍ଲାମେଣ୍ଟାରୀ ପ୍ରଥାକୁ ସମର୍ଥନ କରିବା । ଏହି ପ୍ରକାର ସୁବିଧାବାଦ ମଧ୍ୟ ବିପ୍ଳବୀ ସର୍ବହରା ଶ୍ରେଣୀ ଓ ତାର ଆଦର୍ଶ ପକ୍ଷରେ ଅତ୍ୟନ୍ତ କ୍ଷତିକାରକ ।

ଜର୍ମାନ୍ ବାମପନ୍ଥୀମାନେ ତାଙ୍କର ଏହି ପ୍ରସ୍ତର ପୁସ୍ତିକାରେ ଲେଖିଛନ୍ତି— "ଆନ୍ୟାନ୍ୟ କୌଣସି ଦଳ ସହିତ ସବୁ ପ୍ରକାର ଚାଲିସକୁ···ସବୁ ପ୍ରକାର ଛକାପଞ୍ଝା ଓ ଚାଲିସ ନୀତିକୁ ଦୃଢ଼ ଭାବେ ପ୍ରତ୍ୟାଖ୍ୟାନ କରି ଦେବାକୁ ପଡ଼ିବ ।"

ବଡ଼ ଆଶ୍ଚର୍ଯ୍ୟର କଥା, ଏପରି ମତପୋଷଣ କରୁଥିବା ଏହି ବାମପନ୍ଥୀ-ମାନେ ଏପର୍ଯ୍ୟନ୍ତ କପର ବଲଶେଭିକ୍‌ବାଦକୁ ଦୃଢ଼ଭାବେ ନିନ୍ଦାକରି ନାହାନ୍ତି । କାରଣ ଏହି ଜର୍ମାନ୍ ବାମପନ୍ଥୀମାନେ ଜାଣିବା ଉଚିତ ଯେ, ଅକ୍‌ଟୋବର ବିପ୍ଳବ ପୂର୍ବରୁ ଓ ପରେ ମଧ୍ୟ ଏହି ବଲଶେଭିକବାଦର ସମଗ୍ର ଇତିହାସ ବୁର୍ଜୁଆ ଦଳମାନଙ୍କ ସମେତ ଅନ୍ୟାନ୍ୟ ଦଳମାନଙ୍କ ସହିତ ଏହିପରି ଛକାପଞ୍ଝା, ଏହିପରି ନରମ ନୀତି ଅନୁସରଣ କରିବା ଓ ଚାଲିସ କରିବାର ବହୁ ଦୃଷ୍ଟାନ୍ତରେ ଭରପୂର ।

ଆନ୍ତର୍ଜାତିକ ବୁର୍ଜୁଆଶ୍ରେଣୀର ଉଚ୍ଛେଦ ଲାଗି ଗୋଟାଏ ଯୁଦ୍ଧ ଚଳାଇଲାବେଳେ—ଯେଉଁ ଯୁଦ୍ଧ କି ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ହେଉଥିବା ସାଧାରଣ ଯୁଦ୍ଧ ଅପେକ୍ଷା ଶହେ ଗୁଣ କଷ୍ଟସାଧ୍ୟ, ଜଟିଳ, କଠୋର ଓ ସମୟ ସାପେକ୍ଷ— ଆମେ ଯଦି ଆଗରୁ ମନାକରି ଦେଉ ଯେ ଆମେ କୌଣସି ପ୍ରକାର ଛକାପଞ୍ଝା କୌଶଳ ଅବଲମ୍ବନ କରିବୁ ନାହିଁ, ଆମର ଶତ୍ରୁମାନଙ୍କର ପାରସ୍ପରିକ ସ୍ୱାର୍ଥର ସଂଘର୍ଷରୁ (ତାହା ସାମୟିକ ହେଉପଛେ ) କୌଣସି

ଫାଇଦା ଉଠାଇବୁ ନାହିଁ ଏବଂ ସମ୍ଭବ୍ୟ ( ତାହା ସାମୟିକ, ଅସ୍ଥିର, ଦୋଦୁଲ୍ୟମାନ ଓ ସର୍ତ୍ତବନ୍ଧ ହେଉପଛେ ) ମିତ୍ରମାନଙ୍କ ସହିତ କୌଣସି ପ୍ରକାର ମିଳାମିଶା ବା ସାଲିସ କରିବୁ ନାହିଁ ତାହେଲେ ତା କ'ଣ ଅତି ହାସ୍ୟାସ୍ପଦ କଥା ହେବନାହିଁ ? ଗୋଟାଏ ଅତି ଦୁର୍ଗମ ଓ ଅନାବିଷ୍କୃତ ଗିରିଶୃଙ୍ଗ ଆରୋହଣ କରିବାକୁ ଚାଲବେଲେ ଆମେ ଯଦି ଆଗରୁମନା କରିଦେଉ ଯେ, ଆମେ କୌଣସି ବଙ୍କାଟଙ୍କା ରାସ୍ତାରେ କେବେ ଯିବୁ ନାହିଁ, ପାହୁଣ୍ଡେ ପୁଛା ପଛକୁ କେବେ ପାଦ ଫେରାଇବୁ ନାହିଁ, ଯେଉଁ ପନ୍ଥାକୁ ଥରେ ବାଛି ନେଇଥିବୁ ତାହାକୁ କେବେ ପରିତ୍ୟାଗ କରିବୁ ନାହିଁ କି ଆଉ ଅନ୍ୟ କୌଣସି ପନ୍ଥାରେ ଯିବା ପାଇଁ ମଧ୍ୟ କେବେ ଚେଷ୍ଟା କରିବୁ ନାହିଁ ତାହେଲେ ଇଏ ଯେମିତି ହାସ୍ୟାସ୍ପଦ କଥା ହେବ ସିଏ ମଧ୍ୟ ସେମିତି ହାସ୍ୟାସ୍ପଦ କଥା କ'ଣ ହେବ ନାହିଁ ? ତଥାପି ଏପରି ଯୁକ୍ତି କରୁଥିବା ଅତି ଅପରିପକ୍ୱ ଓ ଓ ଅନଭିଜ୍ଞ ବ୍ୟକ୍ତିମାନଙ୍କୁ ( ଅବଶ୍ୟ ସେମାନେ ତରୁଣ ବୟସର ବ୍ୟକ୍ତି ହୋଇଥିଲେ ତାହା ଏତେ ଖରାପ ହୋଇନଥାନ୍ତା କାରଣ ଖୋଦ୍ ଭଗବାନଙ୍କ ବରଦ ଯେ ତରୁଣମାନେ କିଛି କାଳ ପାଇଁ ଏ ଏପରି ସବୁ ବାଜେ କଥା କହିଥା'ନ୍ତି ) ହଲାଣ୍ଡ କମ୍ୟୁନିଷ୍ଟ ପାର୍ଟିର କେତେକ ସଭ୍ୟ ବି ସମର୍ଥନ କରନ୍ତି—ସେ ସମର୍ଥନ ପ୍ରତ୍ୟକ୍ଷ ହେଉ ବା ପରୋକ୍ଷ ହେଉ, ପ୍ରକାଶ୍ୟ ହେଉବା ପ୍ରଚ୍ଛନ୍ନ ହେଉ, ପୂର୍ଣ୍ଣରୂପେ ହେଉ ବା ଆଂଶିକ ଭାବେ ହେଉ ସେଥିରେ ବିଶେଷ କିଛିଯାଏ ଆସେ ନାହିଁ ।

ସର୍ବହରା ଶ୍ରେଣୀର ପ୍ରଥମ ସମାଜବାଦୀ ବିପ୍ଳବ ପରେ ଓ ଗୋଟାଏ ଦେଶରେ ବୁର୍ଜୁଆଶ୍ରେଣୀ କ୍ଷମତାଚ୍ୟୁତ ହେବା ପରେ ମଧ୍ୟ ସେହି ଦେଶର ସର୍ବହରା ଶ୍ରେଣୀ ଦୀର୍ଘ ସମୟ ପାଇଁ ବୁର୍ଜୁଆଶ୍ରେଣୀ ଅପେକ୍ଷା ଦୁର୍ବଳ ହୋଇ ରହେ । ତାହାର ଅତିସରଳ କାରଣ ହେଉଛି ଯେ, ଗୋଟାଏ ଦେଶର ବୁର୍ଜୁଆଶ୍ରେଣୀ କ୍ଷମତାଚ୍ୟୁତ ହେବା ପରେ ମଧ୍ୟ ତାର ବ୍ୟାପକ ଆନ୍ତର୍ଜାତିକ ଯୋଗାଯୋଗ ସମ୍ପର୍କ ରହିଥାଏ ଆଉ ତା ଛଡ଼ା ଯେଉଁ ଦେଶ ନିଜର ବୁର୍ଜୁଆଶ୍ରେଣୀକୁ ଉଚ୍ଛେଦ କରି ଦେଇଥାଏ ସେହି ଦେଶର ଶ୍ରେଷ୍ଠ

ଶ୍ରେଷ୍ଠ ପଣ୍ୟ ଉତ୍ପାଦନକାରୀମାନଙ୍କ ଦ୍ୱାରା ପୁଞ୍ଜିବାଦ ଓ ବୁର୍ଜ୍ୱା ଶ୍ରେଣୀ ଅନ୍ତଃ ସ୍ୱତଃସ୍ଫୂର୍ତ୍ତି ଓ ଅନବରତ ଭାବେ ପୁଣି ପ୍ରତିଷ୍ଠିତ ହେଉଥାଏ, ପୁଣି ଉଦ୍ଭାବିତ ହେଉଥାଏ । ତେଣୁ ଅପେକ୍ଷାକୃତ ଅଧିକ ଶକ୍ତିଶାଳୀ ଶତ୍ରୁକୁ ପରାଜିତ କରିବାକୁ ହେଲେ ଯଥାସାଧ୍ୟ ଉଦ୍ୟମ କରିବାକୁ ହେବ । ସେଥିପାଇଁ ଆମର ଶତ୍ରୁମାନଙ୍କ ମଧ୍ୟରେ ଯେଉଁ 'ବିବାଦ' ରହିଛି, ତାହା ଅତି ସାମାନ୍ୟ ହେଉ ପଛେ ପ୍ରତ୍ୟେକଟିରୁ ଅତିପତ୍ନର ସହିତ, ଧ୍ୟାନର ସହିତ, କୌଶଳର ସହିତ ସମ୍ପୂର୍ଣ୍ଣ ଫାଇଦା ଉଠାଇବାକୁ ପଡ଼ିବ ; ବିଭିନ୍ନ ଦେଶର ବୁର୍ଜ୍ୱା ଶ୍ରେଣୀ ମଧ୍ୟରେ ଏବଂ ବିଭିନ୍ନ ଦେଶର ଭିନ୍ନ ଭିନ୍ନ ଗୋଷ୍ଠୀ ବା କିସମର ବୁର୍ଜ୍ୱା ଶ୍ରେଣୀ ମଧ୍ୟରେ ପାରସ୍ପରିକ ସ୍ୱାର୍ଥର ଯେଉଁ ଦ୍ୱନ୍ଦ୍ୱ ରହିଛି ସେଥିରୁ ପ୍ରତ୍ୟେକଟି ଦ୍ୱନ୍ଦ୍ୱରୁ ମଧ୍ୟ ଫାଇଦା ଉଠାଇବାକୁ ପଡ଼ିବ । ତା ସଙ୍ଗେ ସଙ୍ଗେ ଗଣ ଭିତ୍ତିରେ କାହାକୁ ମିତ୍ର ରୂପେ ଲାଭ କରିବାର ସୁଯୋଗ ମିଳିଲେ, ସେହି ସୁଯୋଗ ଅତି ସାମାନ୍ୟ ହେଉ ପଛେ, ସେପରି ପ୍ରତ୍ୟେକଟି ସୁଯୋଗକୁ ସଦ୍‌ବ୍ୟବହାର କରିବାକୁ ପଡ଼ିବ । ଆଉ ଏହି ସମ୍ଭାବ୍ୟ ମିତ୍ର ଦୋଦୁଲ୍ୟମାନ ଓ ଅସ୍ଥିର ହେଉପଛେ, ତା ପକ୍ଷରୁ କେତେକ ସର୍ତ୍ତ ଦିଆଯାଉ ପଛେ, ସେ ସାମୟିକ ଭାବେ ମିତ୍ର ହୋଇ ରହୁ ପଛେ ଏବଂ ସେ ବିଶେଷ ନିର୍ଭର ଯୋଗ୍ୟ ନ ହେଉ ପଛେ ସେଥିରେ ବିଶେଷ କିଛି ଯାଏ ଆସେ ନାହିଁ । ଯେଉଁମାନେ ଏକଥା ବୁଝନ୍ତି ନାହିଁ ସେମାନେ ମାର୍କ୍ସ୍‌ବାଦର 'ମ' ଅକ୍ଷର ସୁଦ୍ଧା ବୁଝନ୍ତି ନାହିଁ କିମ୍ବା ବୈଜ୍ଞାନିକ ଆଧୁନିକ ସମାଜବାଦର ଅତି ସାଧାରଣ କଥାକୁ ବି ବୁଝନ୍ତି ନାହିଁ । ଏହି ସତ୍ୟକୁ ବାସ୍ତବ କାର୍ଯ୍ୟ କ୍ଷେତ୍ରରେ ପ୍ରୟୋଗ କରିବାର ନିଜର ସାମର୍ଥ୍ୟ ଅଛି ବୋଲି ଯେଉଁମାନେ ଢେର ଅଧିକେ ଏକ ଦୀର୍ଘ ସମୟ ଧରି ଓ ଭିନ୍ନ ଭିନ୍ନ ରାଜନୈତିକ ପରିସ୍ଥିତିରେ କାର୍ଯ୍ୟତଃ ପ୍ରମାଣିତ କରିପାରି ନାହାନ୍ତି ସେମାନେ ଶୋଷକ ଶ୍ରେଣୀର କବଳରୁ ଶ୍ରମଜୀବୀ ମାନବଜାତିକୁ ମୁକ୍ତ କରିବାର ସଂଗ୍ରାମରେ ବିପ୍ଳବୀ ଶ୍ରେଣୀକୁ କିପରି ସାହାଯ୍ୟ କରିବାକୁ ହୁଏ ତାହା ଏ ପର୍ଯ୍ୟନ୍ତ ଆହୁରି ଶିକ୍ଷା କରି ପାରିନାହାଁନ୍ତି ବୋଲି ବୁଝିବାକୁ ହେବ । ଏ କଥା ସର୍ବହରା ଶ୍ରେଣୀ ଦ୍ୱାରା ରାଜନୈତିକ କ୍ଷମତା ଦଖଲ ହେବାର ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ଉଭୟ ଯୁଗ ପାଇଁ ସମାନ ଭାବେ ପ୍ରଯୁଜ୍ୟ ।

ଆମର ତତ୍ତ୍ୱ ଏକ ମତାନ୍ଧଧର୍ମ ( dogma ) ନୁହେଁ, ଆମର ତତ୍ତ୍ୱ ହେଉଛି କର୍ମର ପଥ ପ୍ରଦର୍ଶକ । ଏକଥା ମାର୍କସ ଓ ଏଙ୍ଗେଲସ କହିଛନ୍ତି । ଆଉ କାର୍ଲ କାଉଟସ୍କି, ଅଟୋ ବାଉଏର ପ୍ରମୁଖଙ୍କ ପରି "ମାର୍କାମର୍ଗ" ମାର୍କସବାଦୀମାନେ ଯେ କଥା ବୁଝିପାରି ନାହାନ୍ତି, ସେମାନେ ଯେ ଏହି ସତ୍ୟକୁ ସର୍ବହରା ବିପ୍ଳବର ଅତି ଗୁରୁତ୍ୱପୂର୍ଣ୍ଣ ମୁହୂର୍ତ୍ତରେ ପ୍ରୟୋଗ କରିବାକୁ ଅସମର୍ଥ ହୋଇଛନ୍ତି ଏହା ସେମାନଙ୍କ ପକ୍ଷରେ କେବଳ ଏକ ମସ୍ତବଡ଼ ଭୁଲ ନୁହେଁ, ଏହା ଏକ ମସ୍ତବଡ଼ ଅପରାଧ-ମଧ୍ୟ । ପ୍ରାକ୍-ମାର୍କସୀୟ ଯୁଗର ମହାନ ରୁଷୀୟ ସୋଶାଲିଷ୍ଟ ଏନ୍. ଜି ଚେର୍ଣ୍ଣିଶେଭସ୍କି କହୁଥିଲେ, 'ରାଜନୈତିକ କର୍ମତତ୍ପରତା ନେଭସ୍କି ପ୍ରସ୍ପେକ୍ଟର ପାର୍ଶ୍ୱପଥ ନୁହେଁ," ( ଏହି ନେଭସ୍କି ପ୍ରସ୍ପେକ୍ଟ ହେଉଛି ପିଟରସ ବର୍ଗ ସହରର ପ୍ରଧାନ ରାଜପଥରେ ମସୃଣ, ପ୍ରଶସ୍ତ, ପରିଚ୍ଛନ୍ନ ଓ ଋଜୁ ପାର୍ଶ୍ୱପଥ ) । ଚେର୍ଣ୍ଣିଶେଭସ୍କିଙ୍କ ପରବର୍ତ୍ତୀ ଯୁଗର ଯେଉଁ ରୁଷୀୟ ବିପ୍ଳବୀଗଣ ଏହି ଉକ୍ତିର ସତ୍ୟତାକୁ ଅସ୍ୱୀକାର କରିଛନ୍ତି କିମ୍ବା ଭୁଲିଯାଇଛନ୍ତି ସେମାନଙ୍କୁ ସେଥିପାଇଁ ଅଶେଷ ଦାମ୍ ଦେବାକୁ ପଡ଼ିଛି । ଏହି ଅନଗ୍ରସର ରୁଷୀୟମାନଙ୍କ ପରି ଏହି ସତ୍ୟକୁ ଅସ୍ୱୀକାର କରିବା ଲାଗି ଆମର ବାମପନ୍ଥୀ କମ୍ୟୁନିଷ୍ଟ ଓ ଶ୍ରମିକଶ୍ରେଣୀ ପ୍ରତି ଅନୁରକ୍ତ ଥିବା ପଶ୍ଚିମ ୟୁରୋପ ଓ ଆମେରିକାର ବିପ୍ଳବୀମାନଙ୍କୁ ଯେପରି ଠିକ୍ ସେହିଭଳି ଅଶେଷ ଦାମ ଦେବାକୁ ନପଡ଼େ ସେଥିପାଇଁ ଆମକୁ ଯଥାସାଧ୍ୟ ଉଦ୍ୟମ କରିବାକୁ ପଡ଼ିବ ।

ଜାରସାହୀ ଶାସନର ପତନ ପୂର୍ବରୁ ରୁଷୀୟ ବିପ୍ଳବୀ ସୋଶାଲ୍-ଡେମୋକ୍ରାଟମାନେ ବାରମ୍ବାର ବୁର୍ଜୁଆ ଉଦାରପନ୍ଥୀମାନଙ୍କର ସାହାଯ୍ୟ ଗ୍ରହଣ କରୁଥିଲେ, ଅର୍ଥାତ୍ କାର୍ଯ୍ୟକ୍ଷେତ୍ରରେ ସେମାନଙ୍କ ସହିତ ବିଭିନ୍ନ ରକମର ସାଲିସ କରୁଥିଲେ । ଆଉ ବଲଶେଭିକ ବାଦର ଆବିର୍ଭାବ ପୂର୍ବରୁ ୧୯୦୧-୧୯୦୨ରେ "ଇସ୍କ୍ରା" ପ୍ରାକ୍ତନ ସମ୍ପାଦକ ମଣ୍ଡଳୀ ( ଯେଉଁଥିରେ ପ୍ଲେଖାନୋଭ, ଏକସେଲରଡ୍, ଡାସୁଲିଚ, ମାର୍ଟୋଭ,

କୋଟେରେଭ ଆଉ ମୁଁ ସଭ୍ୟ ଥିଲୁ ) ବୁର୍ଜୁଆ ଉଦାରପନ୍ଥୀମାନଙ୍କର ନେତା ଷ୍ଟ୍ରୁଭଙ୍କ ସହିତ ଆନୁଷ୍ଠାନିକ ଭାବେ ଏକ ରାଜନୈତିକ ମେଣ୍ଟ ଗଠନ କରିଥିଲେ । ଅବଶ୍ୟ ଏହି ମେଣ୍ଟ ଦୀର୍ଘକାଳ ପର୍ଯ୍ୟନ୍ତ ହୋଇ ନଥିଲା । ତଥାପି ଏହି ମେଣ୍ଟ କରିବା ସଙ୍ଗେ ସଙ୍ଗେ "ଇସ୍କ୍ରା"ର ସମ୍ପାଦକ ମଣ୍ଡଳୀ ବୁର୍ଜୁଆ ଉଦାରବାଦ ବିରୁଦ୍ଧରେ, ଶ୍ରମିକ ଶ୍ରେଣୀ ଆନ୍ଦୋଳନ ଉପରେ ଏହି ଉଦାରବାଦର ସାମାନ୍ୟତମ ପ୍ରଭାବ ବିରୁଦ୍ଧରେ ମଧ୍ୟ ଏକ ନିର୍ମମ ମତାଦର୍ଶଗତ ଓ ରାଜନୈତିକ ସଂଗ୍ରାମ ଅବ୍ୟାହତ ଭାବେ ଚଳାଇବା ପାଇଁ ସମର୍ଥ ହୋଇଥିଲେ । ବଲ୍ଶେଭିକମାନେ ସର୍ବଦା ଏହି ନୀତି ଅନୁସରଣ କରି ଆସିଛନ୍ତି । ଏପରିକି ୧୯୦୫ ଠାରୁ ମଧ୍ୟ ସେମାନେ ଜାରଶାହୀ ଶାସନ ଓ ବୁର୍ଜୁଆ ଉଦାରବାଦ ବିରୁଦ୍ଧରେ ଶ୍ରମିକଶ୍ରେଣୀ ଓ କୃଷକ ଶ୍ରେଣୀର ଓ କୃଷକ ଶ୍ରେଣୀର ମେଣ୍ଟ ଗଠନ ପାଇଁ ଧାରାବାହିକ ଭାବେ ପ୍ରଚାର କରି ଆସିଛନ୍ତି । ତା ସଙ୍ଗେ ସଙ୍ଗେ ଜାରଶାହୀ ଶାସନ ବିରୁଦ୍ଧରେ ବୁର୍ଜୁଆଶ୍ରେଣୀକୁ ସମର୍ଥନ କରିବା ପାଇଁ ସେମାନେ କେବେ ମନା କରିନାହାନ୍ତି ( ଦୃଷ୍ଟାନ୍ତ ସ୍ୱରୂପ ଦ୍ୱିତୀୟବାର ନିର୍ବାଚନ ସମୟରେ ବା ଦ୍ୱିତୀୟବାର ଭୋଟଗ୍ରହଣ ସମୟରେ ) କି "ସୋଶାଲିଷ୍ଟ-ବିପ୍ଳବୀ ପାର୍ଟି" ଅର୍ଥାତ୍ ବୁର୍ଜୁଆ ବିପ୍ଳବୀ କୃଷକ ପାର୍ଟି ବିରୁଦ୍ଧରେ ସେମାନଙ୍କର ନିର୍ମମ ମତାଦର୍ଶଗତ ଓ ରାଜନୈତିକ ସଂଗ୍ରାମକୁ ମୁହୂର୍ତ୍ତିକ ପାଇଁ ସୁଦ୍ଧା ବନ୍ଦ କରିନାହାନ୍ତି । ଏହି ତଥାକଥିତ "ସୋସାଲିଷ୍ଟ-ବିପ୍ଳବୀମାନଙ୍କୁ" ସେମାନେ ସୋଶାଲିଷ୍ଟ ମୁଖାଶିନ୍ଧା ପେଟି-ବୁର୍ଜୁଆ ଗଣତନ୍ତ୍ରବାଦୀ ବୋଲି ଜନସାଧାରଣଙ୍କ ଆଗରେ ପଦାରେ ପକାଇ ଦେଇଛନ୍ତି । ୧୯୦୭ରେ "ଡୁମା" ବା ପାର୍ଲିମେଣ୍ଟ ପାଇଁ ହୋଇଥିବା ନିର୍ବାଚନରେ ବଲ୍ଶେଭିକ-ମାନେ ଅଳ୍ପକାଳ ପାଇଁ ଏହି 'ସୋସାଲିଷ୍ଟ-ବିପ୍ଳବୀମାନଙ୍କ" ସହିତ ଆନୁଷ୍ଠାନିକ ଭାବେ ଏକ ନିର୍ବାଚନ ମେଣ୍ଟ ବାନ୍ଧିଥିଲେ । ୧୯୦୩ ଠାରୁ ୧୯୧୨ ଭିତରେ ମଝିରେ ମଝିରେ ଅନେକ ବର୍ଷ ଧରି ଆମେ ଗୋଟିଏ ସୋଶାଲ-ଡେମୋକ୍ରାଟିକ ପାର୍ଟି ଭିତରେ ମେନ୍ଶେଭିକ୍‌ମାନଙ୍କ ସହିତ ଆନୁଷ୍ଠାନିକ ଭାବେ ଐକ୍ୟବଦ୍ଧ ହୋଇ ରହିଥିଲୁ । କିନ୍ତୁ ସେମାନଙ୍କ ବିରୁଦ୍ଧରେ ଆମର ମତାଦର୍ଶଗତ ଓ ରାଜନୈତିକ ସଂଗ୍ରାମକୁ ଆମେ କେବେ

ବନ୍ଦ କରି ନଥିଲୁ, କାରଣ ସେମାନେ ଥିଲେ ସୁବିଧାବାଦୀ ଏବଂ ସର୍ବହରାଶ୍ରେଣୀ ଉପରେ ବୁର୍ଜୁଆ ପ୍ରଭାବ ବିସ୍ତାରର ବାହକ । ଯୁଦ୍ଧ ସମୟରେ ବି ଆମେ "କାଉଟସ୍କି ପନ୍ଥୀମାନଙ୍କ" ସହିତ, ବାମପନ୍ଥୀ ମେନ୍‌ଶେଭିକ୍‌ମାନଙ୍କ (ମାର୍ତୋଭ) ସହିତ ଏବଂ "ସୋସାଲିଷ୍ଟ ବିପ୍ଳବୀ-ମାନଙ୍କର" ଏକ ଅଂଶ (ଚେର୍ଣ୍ଣୋଭ ଓ ନାଟନ୍‌ସନ୍‌ଙ୍କ) ସହିତ କେତେକ ଅବସ୍ଥାରେ ସାଲିସ କରିଥିଲୁ । ଜିମ୍ମରଓ୍ୱାଲ୍ଡ ଓ କିଏନ୍ଥଲଠାରେ ମଧ୍ୟ ଆମେ ସେମାନଙ୍କ ସହିତ ଏକାଠି ହୋଇ ରହିଥିଲୁ ଏବଂ ସେମାନଙ୍କ ସହିତ ମିଳିତ ଇସ୍ତାହାର ପ୍ରକାଶ କରିଥିଲୁ । କିନ୍ତୁ ମୁହୂର୍ତ୍ତିକ ପାଇଁ ସୁଦ୍ଧା ଆମେ ଏହି "କାଉଟସ୍କି ପନ୍ଥୀମାନଙ୍କ" ବିରୁଦ୍ଧରେ ମାର୍ତୋଭ ଓ ଚେର୍ଣ୍ଣୋଭଙ୍କ ବିରୁଦ୍ଧରେ ଆମର ରାଜନୈତିକ ସଂଗ୍ରାମକୁ କେବେ ବନ୍ଦ କରି ଦେଇନଥିଲୁ କି ମୁହୂର୍ତ୍ତିକ ପାଇଁ ସଂଗ୍ରାମକୁ ଶିଥିଳ କରି ଦେଇ ନଥିଲୁ (ନାଟନ୍‌ସନ୍‌ଙ୍କର ମୃତ୍ୟୁ ଘଟିଲା ୧୯୧୯ରେ, ସେ "ବିପ୍ଳବୀ କମ୍ୟୁନିଷ୍ଟ" ନରୋଦନିକ୍ ହିସାବରେ ଆମର ଖୁବ୍ ନିକଟତର ସହଯୋଗୀ ଥିଲେ ଓ ଆମର ମତ ସହିତ ତାଙ୍କର ମତ ପ୍ରାୟ ସମାନ ଥିଲା) । ଅକ୍‌ଟୋବର ବିପ୍ଳବର ଅବ୍ୟବହିତ ମୁହୂର୍ତ୍ତରେ ବି ଆମେ ସୋସାଲିଷ୍ଟ-ବିପ୍ଳବୀ"ମାନଙ୍କର କୃଷି କାର୍ଯ୍ୟକ୍ରମକୁ ସାମାନ୍ୟତମ ପରିବର୍ତ୍ତନ ନ କରି ତାହାକୁ ପୁରାପୁରି ଭାବେ ଗ୍ରହଣ କରି ନେଇ ପେଟିବୁର୍ଜୁଆ କୃଷକ ମାନଙ୍କ ସହିତ ଏକ ରାଜନୈତିକ ମେଣ୍ଟ ବାନ୍ଧିଥିଲୁ । ତା ଅର୍ଥ, ଆମେ କୃଷକମାନଙ୍କର ମତାମତକୁ ଦଳିଦେବାକୁ ଚାହୁଁ ନାହୁଁ ଅଥବା ସେମାନଙ୍କ ସହିତ ସେ ରାଜିନାମା କରିବାକୁ ଚାହୁଁନୁ ସେକଥା କାର୍ଯ୍ୟତଃ ପ୍ରମାଣ କରିଦେବା ପାଇଁ ଆମେ ନିଃସନ୍ଦେହରେ ସେମାନଙ୍କ ସହିତ ସାଲିସ କରିନେଲୁ । ଆମର ଏହି ରାଜନୈତିକ ମେଣ୍ଟ ମୌଖିକ ଭାବେ ହୋଇଥିଲେ ମଧ୍ୟ ତାହା ଖୁବ୍ ଗୁରୁତ୍ୱପୂର୍ଣ୍ଣ ଓ ଫଳପ୍ରଦ ମେଣ୍ଟ ହୋଇଥିଲା । ତା ସଙ୍ଗେ ସଙ୍ଗେ ଆନୁଷ୍ଠାନିକ ଭାବେ ଏକ ରାଜନୈତିକ ମେଣ୍ଟ ଗଠନ କରିବା ପାଇଁ ମଧ୍ୟ ଆମେ ପ୍ରସ୍ତାବ କଲୁ (ଏବଂ ପରେ ପରେ ତାହାକୁ କାର୍ଯ୍ୟରେ ମଧ୍ୟ ପରିଣତ କଲୁ) ଏପରିକି "ବାମପନ୍ଥୀ ସୋଶାଲିଷ୍ଟ ବିପ୍ଳବୀମାନଙ୍କୁ

ସରକାର ହାତରେ ରଖିବ ପାଇଁ ମଧ୍ୟ ଆମେ ରାଜିହୋଇଥିଲୁ । ଅବଶ୍ୟ "ବାମପନ୍ଥୀ ସୋସାଲିଷ୍ଟ ବିପ୍ଳବୀମାନେ" ଏହି ମେଣ୍ଟକୁ ବ୍ରେଷ୍ଟଲିଟୋଭସ୍କ ଶାନ୍ତି ସନ୍ଧି ପରେ ଭାଙ୍ଗିଦେଲେ ଏବଂ ୧୯୧୮ ଜୁଲାଇରେ ସଶସ୍ତ୍ର ବିଦ୍ରୋହ ଆରମ୍ଭ କରିବା ପର୍ଯ୍ୟନ୍ତ ଚାଲିଗଲେ ଓ ତାପରେ ଆମ ବିରୁଦ୍ଧରେ ମଧ୍ୟ ସଶସ୍ତ୍ର ଯୁଦ୍ଧ ଆରମ୍ଭ କରି ଦେଲେ ।

ସୁତରାଂ, ଜର୍ମାନୀର "ସ୍ୱାଧୀନ ଦଳ" (ଜର୍ମାନୀର ସ୍ୱାଧୀନ ସୋଶାଲ ଡେମୋକ୍ରାଟିକ ପାର୍ଟି, ଅର୍ଥାତ କାଉଟ୍‌ସ୍କି ପନ୍ଥୀମାନଙ୍କ ) ସହିତ ମେଣ୍ଟ ଗଠନ କରିବା କଥା ବିଚାର କରୁଥିବାରୁ ଜର୍ମାନ୍ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟି ଉପରେ ଜର୍ମାନ୍ ବାମପନ୍ଥୀମାନେ ଯେଉଁ ଆକ୍ରମଣ ଚଳାଉଛନ୍ତି ତାହା ଅତି ଚପଳ ମନୋଭାବର ପରିଚାୟକ ଏବଂ ତଦ୍ଦ୍ୱାରା ଏହି "ବାମପନ୍ଥୀମାନେ', ଯେ ନିହାତ ଭୁଲ କାମ କରୁଛନ୍ତି ତାହାର ସୁସ୍ପଷ୍ଟ ପ୍ରମାଣ । "ବାମପନ୍ଥୀମାନଙ୍କର" ଏହି କାର୍ଯ୍ୟକୁ ଆମେ ଏପରି କାହିଁକି ଭାବୁଛୁ ତାହା ସହଜେ ଅନୁମେୟ । ଜର୍ମାନୀର ସିଡ଼ମ୍ୟାନ ଗୋଷ୍ଠୀ ପରି ଆମର ରୁଷିଆରେ ମଧ୍ୟ ଦକ୍ଷିଣପନ୍ଥୀ ମେନ୍‌ଶେଭିକ୍ ନାମରେ ଏକ ଗୋଷ୍ଠୀ ଥିଲେ ( ଯେଉଁମାନେ କି କେରେନ୍‌ସ୍କି ସରକାରରେ ଅଂଶ ଗ୍ରହଣ କରିଥିଲେ ) ଏବଂ ଜର୍ମାନୀର କାଉଟ୍‌ସ୍କି ପନ୍ଥୀମାନଙ୍କ ପରି ଆମର ଏଠାରେ ବାମପନ୍ଥୀ ମେନ୍‌ଶେଭିକ ଗୋଷ୍ଠୀ ( ମାର୍ତ୍ତୋଭ ) ରହିଥିଲେ ଯେଉଁମାନେ କି ଦକ୍ଷିଣ ପନ୍ଥୀ ମେନ୍‌ଶେଭିକମାନଙ୍କୁ ବିରୋଧ କରୁଥିଲେ କିନ୍ତୁ ରୁଷିଆର ଶ୍ରମିକ ଜନତା କିପରି କ୍ରମେ କ୍ରମେ ମେନଶେଭିକ୍‌ମାନଙ୍କ ପ୍ରଭାବରୁ ମୁକ୍ତ ହୋଇ ବଲ୍‌ଶେଭିକ୍‌ମାନଙ୍କ ପଟକୁ ଆସିଲେ ତାହା ୧୯୧୭ର ଘଟଣାବଳୀରୁ ସ୍ପଷ୍ଟଭାବେ ପ୍ରତୀୟମାନ ହୁଏ । ୧୯୧୭ ଜୁନ୍‌ମାସରେ ଅନୁଷ୍ଠିତ ହୋଇଥିବା ପ୍ରଥମ ନିଖିଳ ରୁଷିଆ ସୋଭିଏତ୍ ସମ୍ମିଳନୀରେ ଆମ ସପକ୍ଷରେ କେବଳ ଶତକଡ଼ା ୧୩ ଭାଗ ଭୋଟହୋଇଥିଲା ଏବଂ ସୋସାଲିଷ୍ଟ-ବିପ୍ଳବୀ ଓ ମେନ୍‌ଶେଭିକ୍‌ମାନେ ସଂଖ୍ୟାଗରିଷ୍ଠ ଭୋଟ ପାଇଥିଲେ । ୧୯୧୭ ଅକ୍‌ଟୋବର ୨୫ ତାରିଖରେ ଯେଉଁ ଦ୍ୱିତୀୟ

ସୋଭିଏତ୍ ସନ୍ଧି କଲା ହେଲା ସେଥିରେ ଆମେ ଶତକଡ଼ା ୫୧ ଭାଗ ଭୋଟ ଲାଭ କଲୁ । ତାହେଲେ ଜର୍ମାନୀରେ ଅନୁରୂପ ଭାବେ ଶ୍ରମିକମାନେ ଯେତେବେଳେ ଦକ୍ଷିଣପନ୍ଥୀମାନଙ୍କୁ ପରିତ୍ୟାଗ କରି ବାମପନ୍ଥୀମାନଙ୍କ ଆଡ଼କୁ ଆସିଲେ ସେତେବେଳେ ସେହି ପ୍ରକ୍ରିୟା ଆଉ କମ୍ୟୁନିଷ୍ଟମାନଙ୍କୁ ଶକ୍ତି-ଶାଳୀ ନ କରି ମଝି ମଝିଆ "ସ୍ୱାଧୀନ" ପାର୍ଟିକୁ କାହିଁକି ଶକ୍ତିଶାଳୀ କଲା, ଯଦିଓ ଏହି ତଥାକଥିତ ସ୍ୱାଧୀନ ପାର୍ଟିର କୌଣସି ସ୍ୱାଧୀନ ଭାବଧାରା ବା କୌଣସି ସ୍ୱତନ୍ତ୍ର ନୀତି ନଥିଲା ଏବଂ ଏହି ପାର୍ଟି କେବଳ ସିଡ଼ିମ୍ୟାନ ଗୋଷ୍ଠୀ ଓ କମ୍ୟୁନିଷ୍ଟମାନଙ୍କ ମଧ୍ୟରେ ଦୋହଲମୋହଲ ହେଉଥିଲା ?

ଏହାର ଏକ ସ୍ପଷ୍ଟ କାରଣ ହେଉଛି ଜର୍ମାନ୍ କମ୍ୟୁନିଷ୍ଟମାନଙ୍କର ଭ୍ରାନ୍ତ ସଂଗ୍ରାମ କୌଶଳ । ଜର୍ମାନ କମ୍ୟୁନିଷ୍ଟମାନେ ସେମାନଙ୍କର ଏହି ଭୁଲକୁ ଅତି ନିର୍ଭୀକ ଓ ନିଷ୍କପଟ ଭାବେ ମାନି ନେବା ଉଚିତ ଓ ଏହି ଭୁଲକୁ କିପରି ସଂଶୋଧନ କରିବାକୁ ହେବ ତାହା ଶିକ୍ଷା କରିବା ଉଚିତ । ସେମାନଙ୍କର ଭୁଲ ହେଉଛି ସେମାନେ ପ୍ରତିକ୍ରିୟାଶୀଳ ବୁର୍ଜୁଆ ପାର୍ଲାମେଣ୍ଟରେ ଏବଂ ପ୍ରତିକ୍ରିୟାଶୀଳ ଟ୍ରେଡ଼ ୟୁନିଅନ ସଂଗଠନଗୁଡ଼ିକରେ କାର୍ଯ୍ୟ କରିବାର ପ୍ରୟୋଜନୀୟତାକୁ ସ୍ୱୀକାର କଲେ ନାହିଁ । "ବାମପନ୍ଥୀ" ଶିଶୁ ସୁଲଭ ବିଶୃଙ୍ଖଳତାର ଅଗଣିତ ଦୃଷ୍ଟାନ୍ତ ସେମାନଙ୍କର କାର୍ଯ୍ୟକଳାପରୁ ଦେଖାଯାଏ—ଏ ସବୁ ବିଶୃଙ୍ଖଳ କାର୍ଯ୍ୟ ଭିତରେ ହିଁ ସେମାନଙ୍କର ଭୁଲ ନିହିତ । ବର୍ତ୍ତମାନ ଏହି ଶିଶୁ ସୁଲଭ ବିଶୃଙ୍ଖଳାର ବ୍ୟାଧି ପରିସ୍ଫୁଟ ହୋଇ ଚଲିଣି । ତେଣୁ ତାହାକୁ ଆହୁରି ଦ୍ରୁତଭାବେ, ଆହୁରି ଭଲ ଭାବେ ଚିକିତ୍ସା କରି ଆରୋଗ୍ୟ କରାଯାଇ ପାରିବ ଏବଂ ତଦ୍ୱାରା ସମଗ୍ର ସଂସ୍ଥାର ଅଧିକ ଉପକାର ସାଧନ କରାଯାଇ ପାରିବ ।

ଜର୍ମାନୀର ଏହି "ସ୍ୱାଧୀନ ସୋସାଲ-ଡେମୋକ୍ରାଟିକ ପାର୍ଟି" ଯେ ଏକ ସୁସଂହତ ଓ ଏକ ଭାବାପନ୍ନ ପାର୍ଟି ନୁହେଁ ? ସେ କଥା ଅତି ସ୍ପଷ୍ଟ । କାରଣ ଏହି ଦଳ ଭିତରେ ପୁରାତନ ସୁବିଧାବାଦୀ ନେତୃବୃନ୍ଦ (କାଉଟସ୍କି

ହିଲ୍‌ଫେରଡ଼ିଙ୍ଗ ଏବଂ ଅନେକ ପରିମାଣରେ କିଓ ପିଏନ୍, ଲେଡ଼େବୁରଙ୍କ ପରି ମଧ୍ୟ ଅନ୍ୟାନ୍ୟମାନେ ) ଅଛନ୍ତି—ଯେଉଁମାନେ କି ସୋଭିଏତ୍ କ୍ଷମତା ଓ ସର୍ବହରା ଅଧିନାୟକତ୍ୱର ତାତ୍ପର୍ଯ୍ୟକୁ ହୃଦୟଙ୍ଗମ କରିବା ପାଇଁ ଅସମର୍ଥ ଓ ସର୍ବହରାଶ୍ରେଣୀର ବୈପ୍ଳବିକ ସଂଗ୍ରାମକୁ ନେତୃତ୍ୱ ଦେବା ପାଇଁ ମଧ୍ୟ ଅସମର୍ଥ । ତା ସାଙ୍ଗକୁ ଏହି ଦଳ ଭିତରେ ଏକ ବାମପନ୍ଥୀ ଗୋଷ୍ଠୀ ବି ମୁଣ୍ଡ ଟେକି ଉଠିଛନ୍ତି, ଯେଉଁମାନେ ହେଉଛନ୍ତି ଦଳଭିତରେ ସର୍ବହରା ଶ୍ରେଣୀର ଏକ ଶାଖା । ସେମାନେ ଅତି ଦ୍ରୁତ ଭାବେ ବଢ଼ି ଉଠୁଛନ୍ତି । ଏହି ଦଳର ମୋଟ ସଭ୍ୟ ସଂଖ୍ୟା ପ୍ରାୟ ସାତ ଆଠ ଲକ୍ଷ ହେବ ବୋଲି ମୋର ମନେହୁଏ । କିନ୍ତୁ ସେଥି ମଧ୍ୟରୁ ଲକ୍ଷ ଲକ୍ଷ ସଭ୍ୟ ହେଉଛନ୍ତି ସର୍ବହରାଶ୍ରେଣୀର ଯେଉଁମାନେ କି ବର୍ତ୍ତମାନ ସିଡ଼ିମ୍ୟାନଙ୍କୁ ତ୍ୟାଗ କରି କମ୍ୟୁନିଜମ ଆଡ଼କୁ ଦ୍ରୁତଭାବେ ଆଗେଇ ଆସୁଛନ୍ତି । ଦଳ ଭିତରର ଏହି ସର୍ବହରା ସଭ୍ୟ ଗୋଷ୍ଠୀ ଇତିମଧ୍ୟରେ ଏହି ସ୍ୱାଧୀନ ସୋଶାଲଡେମୋକ୍ରାଟିକ ପାର୍ଟିର ଲିପ୍‌ଜିଗ୍ ( ୧୯୧୯ ) କଂଗ୍ରେସରେ ତୃତୀୟ ଆନ୍ତର୍ଜାତିକ ସହିତ ତୁରନ୍ତ ଓ ବିନାସର୍ତ୍ତରେ ସାମିଲ ହୋଇଯିବା ଲାଗି ପ୍ରସ୍ତାବ କରି ସାରିଲେଣି । ଏହି ସର୍ବହରା ଗୋଷ୍ଠୀ ସହିତ "ଆପୋଷ" କରିବାକୁ ଭୟକରିବା ଅତ୍ୟନ୍ତ ହାସ୍ୟାସ୍ପଦ କଥା ହେବ । ବରଂ ଅପରପକ୍ଷରେ, କମ୍ୟୁନିଷ୍ଟମାନଙ୍କର କର୍ତ୍ତବ୍ୟ ହେଉଛି ସେମାନଙ୍କ ସହିତ କିପରି ଠିକ୍ ଭାବେ ଆପୋଷ ହୋଇ ପାରିବ ତାହାର ଉପାୟ ଖୋଜି ବାହାର କରିବା । ସେମାନଙ୍କ ସହିତ ଏପରି ଏକ ଉପଯୁକ୍ତ ଆପୋଷ ହୋଇ ପାରିଲେ ଏକ ପକ୍ଷରେ ଏହି ଗୋଷ୍ଠୀ ସହିତ କମ୍ୟୁନିଷ୍ଟମାନଙ୍କର ପୂର୍ଣ୍ଣ ମିଶ୍ରଣର ପ୍ରକ୍ରିୟା ତ୍ୱରାନ୍ୱିତ ହୋଇ ପାରିବ ଏବଂ ଅନ୍ୟ ପକ୍ଷରେ "ସ୍ୱାଧୀନ" ସୋଶାଲ-ଡେମୋକ୍ରାଟିକ ପାର୍ଟିର ଦକ୍ଷିଣ ପନ୍ଥୀ ସୁବିଧାବାଦୀ ଗୋଷ୍ଠୀ ବିରୋଧରେ ମତାଦର୍ଶଗତ ଓ ରାଜନୈତିକ ସଂଗ୍ରାମ ଚଳାଇବା ଲାଗି କମ୍ୟୁନିଷ୍ଟମାନଙ୍କ ପାଇଁ ବିଶେଷ ଅସୁବିଧା ହେବ ନାହିଁ । ଅବଶ୍ୟ ଏହି ଆପୋଷର ଉପଯୁକ୍ତ ରୂପ କ'ଣ ହେବ ତାହା ଆବିଷ୍କାର କରିବା ହୁଏତ ସହଜ ହେବ ନାହିଁ । କିନ୍ତୁ

ଜର୍ମାନ୍ ବୁର୍ଜୁଆମାନଙ୍କୁ ଓ ଜର୍ମାନ କମ୍ୟୁନିଷ୍ଟମାନଙ୍କୁ "ହଜ୍ଜ" ବିଜୟର ପ୍ରତିଶ୍ରୁତି ଦେବା ଜଣେ ନିର୍ବୋଧ ବ୍ୟକ୍ତି ବ୍ୟତୀତ ଅନ୍ୟ କାହା ପକ୍ଷରେ ସମ୍ଭବ ନୁହଁ।

"ନବେଲା" ସର୍ବହରାଶ୍ରେଣୀର ଚତୁର୍ଦ୍ଦିଗକୁ ଘେରି ଯଦି ବହୁ ସଂଖ୍ୟକ ବିଭିନ୍ନ କିସମର ମିଶ୍ର ମିଶ୍ରିଆ ଲୋକେ ରହି ନଥାନ୍ତେ, ଯେଉଁମାନେ କି ହେଉଛନ୍ତି ସର୍ବହରା ଓ ଅର୍ଦ୍ଧ ସର୍ବହରାର (ଆଂଶିକ ଭାବେ ନିଜର ଶ୍ରମଶକ୍ତି ବିକ୍ରୟ କରି ଜୀବିକା ଅର୍ଜନ କରୁଥିବା ବ୍ୟକ୍ତି) ମଧ୍ୟବର୍ତ୍ତୀ ସ୍ତରର ଲୋକ, ଅର୍ଦ୍ଧ ସର୍ବହରା ଓ କ୍ଷୁଦ୍ର କୃଷୀର (ଏବଂ କ୍ଷୁଦ୍ର କାରିଗର, କ୍ଷୁଦ୍ର କ୍ଷୁଦ୍ର ଦୋକାନୀ ଓ ହାତକାମ କରୁଥିବା ବ୍ୟକ୍ତି) ମଧ୍ୟବର୍ତ୍ତୀ ସ୍ତରର ଲୋକ, କ୍ଷୁଦ୍ର କୃଷୀ ଓ ମଧ୍ୟବିତ୍ତ କୃଷୀର ଅନ୍ତର୍ବର୍ତ୍ତୀ ସ୍ତରର ଲୋକ, ଆଉ ସର୍ବହରା ଶ୍ରେଣୀ ଯଦି ନିଜେ ଅପେକ୍ଷାକୃତ ଉନ୍ନତ ଓ ଅନୁନ୍ନତ ସ୍ତରରେ ବିଭକ୍ତ ହୋଇ ରହି ନ ଥାନ୍ତା ଏବଂ ଅଞ୍ଚଳଗତ, ଧନ୍ଦାଗତ ଓ ବେଳେ ବେଳେ ଧର୍ମଗତ ଇତ୍ୟାଦି ବିଭିନ୍ନ ପାର୍ଥକ୍ୟ ଦ୍ୱାରା ବିଭକ୍ତ ହୋଇ ପଡ଼ି ନଥାନ୍ତା ତାହେଲେ ଏହି ପୁଂଜିବାଦ ଆଉ ପୁଂଜିବାଦ ହୋଇ ନଥାନ୍ତା। ତେଣୁ ଏହି ବିଭିନ୍ନ ଗୋଷ୍ଠୀର ସର୍ବହରାମାନଙ୍କ ସହିତ ଏବଂ ଶ୍ରମିକ ଓ କ୍ଷୁଦ୍ର କ୍ଷୁଦ୍ର ମାଲିକମାନଙ୍କର ଏହି ବହୁବିଧ ଦଳ ସହିତ ଛକାପଞ୍ଝା ନୀତି ଅନୁସରଣ କରିବା, ବୁଝାମଣାର ବ୍ୟବସ୍ଥା କରିବା ଓ ସାଲିସ କରିବା ସର୍ବହରାଶ୍ରେଣୀର ଗ୍ରମୁବାହିନୀ, ତାର ଶ୍ରେଣୀସଚେତନ ଅଂଶ, ତାର କମ୍ୟୁନିଷ୍ଟ ପାର୍ଟି ପକ୍ଷରେ ପ୍ରୟୋଜନ, ଏକାନ୍ତ ପ୍ରୟୋଜନ। କିନ୍ତୁ ଏସବୁ କୌଶଳକୁ ଏପରି ଭାବେ ପ୍ରୟୋଗ କରିବାକୁ ହେବ ଯାହି ଦ୍ୱାରା ସର୍ବହରା ଶ୍ରେଣୀର ଶ୍ରେଣୀଗତ ଚେତନାର ସାଧାରଣ ସ୍ତର, ତାର ବୈପ୍ଲବିକ ସାଧନା, ତାର ସଂଗ୍ରାମୀ ଶକ୍ତି ଓ ତାର ଜୟଲାଭ କରିବାର ସାମର୍ଥ୍ୟ ହ୍ରାସ ନ ପାଇ ବୃଦ୍ଧି ପାଇବ ଓ ଉନ୍ନତ ହୋଇ ଉଠିବ। ଏହି କୌଶଳ ପ୍ରୟୋଗର ବିଧିକୁ ଜାଣିବା ହିଁ ହେଉଛି ଅସଲ କଥା। ଏ ପ୍ରସଙ୍ଗରେ ଏଠାରେ ଏ ବିଷୟ ଉଲ୍ଲେଖ କରିବା ଦରକାର ଯେ,

ମେନଶେଭିକମାନଙ୍କ ଉପରେ ବଲଶେଭିକମାନଙ୍କ ବିଜୟ ହାସଲ କରିବା ପାଇଁ ଛକ ପଞ୍ଝା ନୀତି, ବୁଝାମଣାର ବ୍ୟବସ୍ଥା ଓ ସାଲିସ ଇତ୍ୟାଦି ସବୁ ପ୍ରକାର କୌଶଳ ପ୍ରୟୋଗ କରିବାକୁ ପଡ଼ିଥିଲା । ଏହା କେବଳ ୧୯୧୭ର ଅକ୍ଟୋବର ବିପ୍ଳବ ପୂର୍ବରୁ ନୁହେଁ ତାପରେ ମଧ୍ୟ ଏହି ପନ୍ଥା ଅବଲମ୍ବନ କରିବାକୁ ହୋଇଥିଲା । କିନ୍ତୁ ସେମାନଙ୍କୁ ଏପରି ସବୁ କୌଶଳ ଓ ସାଲିସର ଆଶ୍ରୟ ନେବାକୁ ପଡ଼ିଥିଲା ଯାହା ଦ୍ଵାରା ମେନଶେଭିକମାନଙ୍କର ବିନିମୟରେ ବଲଶେଭିକମାନଙ୍କୁ ଆହୁରି ଶକ୍ତିଶାଳୀ କରିବାରେ, ସେମାନଙ୍କର ଅଗ୍ରଗତିକୁ ଆହୁରି ତ୍ଵରାନ୍ୱିତ କରିବାରେ ଓ ସେମାନଙ୍କୁ ଆହୁରି ସଂହତ କରିବାରେ ତାହା ସହାୟକ ହୋଇଥିଲା । ପେଟିବୁର୍ଜୁଆ ଗଣତନ୍ତ୍ରବାଦୀମାନେ ( ମେନଶେଭିକମାନେ ମଧ୍ୟ ) ନିଶ୍ଚିତ ଭାବେ ବୁର୍ଜୁଆ ଶ୍ରେଣୀ ଓ ସର୍ବହରା ଶ୍ରେଣୀ ମଝିରେ, ବୁର୍ଜୁଆ ଗଣତନ୍ତ୍ର ଓ ସୋଭିଏତ୍ ପ୍ରଥା ମଝିରେ, ସଂସ୍କାର ଓ ବିପ୍ଳବ ମଝିରେ ଏବଂ ଶ୍ରମିକ ଶ୍ରେଣୀ ପ୍ରତି ମମତା ଓ ସର୍ବହରାର ଅଧିନାୟକତ୍ୱ ପ୍ରତି ଭୟ ମଧ୍ୟରେ ଦୋହଲି ମୋହଲି ହୁଅନ୍ତି । ଏପରି ପରିସ୍ଥିତିରେ କମ୍ୟୁନିଷ୍ଟମାନଙ୍କ ପକ୍ଷରେ ସଂଗ୍ରାମର ଉପଯୁକ୍ତ କୌଶଳ ହେଉଛି ସେମାନଙ୍କର ଏତାଦୃଶ ଦୋହଲିମୋହଲି ଭାବକୁ ଅସ୍ୱୀକାର କରି ନଦେଇ ତାହାକୁ କାମରେ ଲଗାଇବା । ଆଉ ଏସବୁ ଦୋହଲି ମୋହଲି ଭାବକୁ କାମରେ ଲଗାଇବାକୁ ହେଲେ ଯେଉଁମାନେ ସର୍ବହରା ପକ୍ଷକୁ ଢଳୁଛନ୍ତି ସେମାନଙ୍କୁ କିଛି ସୁବିଧା ସୁଯୋଗ ଦେବାକୁ ପଡ଼ିବ— ସେମାନେ ଯେତେବେଳେ ସର୍ବହରା ଶ୍ରେଣୀ ପକ୍ଷକୁ ଢଳୁଥିବେ ଓ ଯେଉଁ ପରିମାଣରେ ଢଳୁଥିବେ ସେହି ଅନୁଯାୟୀ ସେମାନଙ୍କୁ ସୁବିଧା ସୁଯୋଗ ଦେବାକୁ ପଡ଼ିବ—ଏବଂ ତା ସଙ୍ଗେ ସଙ୍ଗେ ଯେଉଁମାନେ ବୁର୍ଜୁଆଶ୍ରେଣୀ ପକ୍ଷକୁ ଢଳୁଥିବେ ସେମାନଙ୍କ ବିରୁଦ୍ଧରେ ସଂଗ୍ରାମ ଚଳାଇବାକୁ ପଡ଼ିବ ଆମ ଦେଶରେ ଏସବୁ ନିର୍ଭୁଲ କୌଶଳ ପ୍ରୟୋଗ ଫଳରେ ମେନ୍‌ଶେଭିକ-ବାଦ ଛିନ୍ନଛତ୍ର ହୋଇଯାଇଛି ଏବଂ କ୍ରମେ କ୍ରମେ ଆହୁରି ଅଧିକରୁ ଅଧିକ ଛିନ୍ନଛତ୍ର ହୋଇଯାଉଛି, ନଗ୍ରେଡ଼ବନ୍ଦୀ ସୁବିଧାବାଦୀ ନେତାମାନେ କ୍ରମଶଃ ବିଚ୍ଛିନ୍ନ ହୋଇ ଯାଉଛନ୍ତି ଆଉ ଶ୍ରମିକଶ୍ରେଣୀର ଶ୍ରେଷ୍ଠ ବ୍ୟକ୍ତିଗଣ

ଓ ପେଟିବୁର୍ଜୁଆ ଗଣତନ୍ତ୍ରବାଦୀମାନଙ୍କ ମଧ୍ୟରେ ଥିବା ଭଲ ଲୋକମାନେ ଆମ ଶିବିର ଭିତରକୁ ଆସିଯାଉଛନ୍ତି । ଏହା ଏକ ସୁଦୀର୍ଘ ପ୍ରକ୍ରିୟା । ଏ କ୍ଷେତ୍ରରେ ତରତରରେ କୌଣସି ପ୍ରକାର "ସିଦ୍ଧାନ୍ତ" ଗ୍ରହଣ କରି ନେଲେ କିମ୍ବା "ସାଲିସ ନାହିଁ କି କୌଶଳ ନାହିଁ" ନୀତିକୁ ଧରି ବସିଲେ ତଦ୍ଦ୍ୱାରା ବିପ୍ଳବୀ ସର୍ବହରା ଶ୍ରେଣୀର ପ୍ରଭାବକୁ ସୁଦୃଢ଼ କରିବାର ଓ ତାର ଶକ୍ତିକୁ ବୃଦ୍ଧି କରିବାର କାର୍ଯ୍ୟ ବ୍ୟାହତ ହେବ ଓ କ୍ଷତିଗ୍ରସ୍ତ ହେବ ।

ଶେଷରେ, ଜର୍ମାନୀର "ବାମପନ୍ଥୀମାନଙ୍କର" ଗୋଟେ ମସ୍ତବଡ଼ ଭୁଲ ହୋଇଛି ଭର୍ସାଇଲ୍ ଶାନ୍ତି ଚୁକ୍ତିକୁ ସ୍ୱୀକାର ନ କରିବାପାଇଁ ଜିଦ୍ ଧରି ବସିବା। ଏହି ଜିଦଖୋର ନୀତିକୁ ସେମାନେ (ଦୃଷ୍ଟାନ୍ତ ସ୍ୱରୂପ କେ. ହର୍ଣ୍ଣର ) ଯେତେ 'ଦୃଢ଼ଭାବେ' ଯେତେ 'ଆଡ଼ମ୍ବର ପୂର୍ଣ୍ଣ' ଭାବେ ଓ ଯେତେ ମତାନ୍ଧଭାବେ ଉପସ୍ଥାପିତ କରନ୍ତୁ ସେମାନଙ୍କର ନୀତି ସେତିକି ଅର୍ଥହୀନ ମନେହୁଏ । ଆନ୍ତର୍ଜାତିକ ସର୍ବହରା ବିପ୍ଳବର ଉପସ୍ଥିତ ପରିସ୍ଥିତିରେ "ଜାତୀୟ ବଲ୍-ଶେଭିକମାନେ" (ଲୌଫେନ୍‌ବର୍ଗ ଓ ଅନ୍ୟମାନେ ) ଯେ ମିତ୍ର ଶକ୍ତିମାନଙ୍କ ବିରୁଦ୍ଧରେ ଯୁଦ୍ଧ ଚଳାଇବା ଉଦ୍ଦେଶ୍ୟରେ ଜର୍ମାନ୍ ବୁର୍ଜୁଆ ଶ୍ରେଣୀ ସହିତ ମେଣ୍ଟ ବାନ୍ଧିବା ପାଇଁ ପ୍ରସ୍ତୁତ କରୁଛନ୍ତି ତାହା ଏକ ଅତି ଅବାସ୍ତବ ଓ ଅସମ୍ଭବ ନୀତି । ସେମାନଙ୍କର ଏହି ନୀତିକୁ କେବଳ ପ୍ରତ୍ୟାଖ୍ୟାନ ଓ ଖଣ୍ଡନ କରିଦେଲେ ଯଥେଷ୍ଟ ହେବ ନାହିଁ । ଆମକୁ ବୁଝିବାକୁ ହେବ ଯେ, ଜର୍ମାନୀରେ ଯଦି ଏକ ସୋଭିଏତ୍ ରିପବ୍ଲିକ ପ୍ରତିଷ୍ଠିତ ହୁଏ ତାହେଲେ ସେହି ସୋଭିଏତ୍ ଜର୍ମାନୀ ପକ୍ଷରେ ଭର୍ସାଇଲ୍ ଶାନ୍ତି ଚୁକ୍ତିକୁ କିଛି କାଳ ପାଇଁ ସ୍ୱୀକାର କରିନେବା ଓ ତାହାକୁ ମାନି ଚଳିବା ଏକାନ୍ତ ପ୍ରୟୋଜନ । ଏହି ପ୍ରୟୋଜନୀୟତାକୁ ସ୍ୱୀକାର ନ କରିବାର କୌଶଳ ମୌଳିକ ଭାବେ ଭୁଲ । କିନ୍ତୁ ଏଥିରୁ ଧରିନେବା ଅନୁଚିତ ଯେ—ଯେତେ-ବେଳେ କି ସିଡ଼ମ୍ୟାନ୍ ଗୋଷ୍ଠୀ ସରକାରରେ ରହିଥିଲେ, ଯେତେବେଳେ କି ହଙ୍ଗେରୀରେ ସୋଭିଏତ୍ ସରକାର ଆହୁରି ଭାଙ୍ଗି ପଡ଼ି ନଥିଲା ଆଉ ଯେତେବେଳେ କି ସୋଭିଏତ୍ ହଙ୍ଗେରୀର ସମର୍ଥନରେ ଭିଏନାରେ

ସୋଭିଏତ୍ ବିପ୍ଳବ ହେବାର ସମ୍ଭାବନା ଆହୁରି ଦୂର ହୋଇ ଯାଉନଥିଲା—ସେପରି ପରିସ୍ଥିତିରେ ଏହି "ସ୍ୱାଧୀନ ସୋଶାଲ ଡେମୋକ୍ରାଟମାନେ" ଭର୍ସାଇଲ୍ ଶାନ୍ତି ଚୁକ୍ତିରେ ସ୍ୱାକ୍ଷର କରିବାକୁ ବୋଲି ଯେଉଁ ଦାବୀ କରୁଥିଲେ ତାହା ଏକ ଠିକ୍ ଦାବୀ । ସେତେବେଳେ ଏହି "ସ୍ୱାଧୀନମାନେ" ଯେଉଁ କୌଶଳ ଅବଲମ୍ବନ କଲେ ତାହା ଅତି କଦର୍ଯ୍ୟ କୌଶଳ । କାରଣ ସେମାନେ ବିଶ୍ୱାସଘାତକ ସିଡ଼େମ୍ୟାନ୍ ଗୋଷ୍ଠୀ ପାଇଁ ଉଣା ଅଧିକେ ନିଜେ ଦାୟିତ୍ୱ ଗ୍ରହଣ କଲେ ଏବଂ ସିଡ଼େମ୍ୟାନ ଗୋଷ୍ଠୀ ବିରୁଦ୍ଧରେ ଅତି ନିର୍ମମ ( ଆଉ ଅତି ନୃଶଂସ ) ଶ୍ରେଣୀ ସଂଗ୍ରାମ ଚଳାଇବା ପ୍ରଶ୍ନରୁ ଓହରି ଯାଇ ଏକ "ଶ୍ରେଣୀସ୍ୱାର୍ଥ" ଓ "ଶ୍ରେଣୀଉର୍ଦ୍ଧ୍ୱ" ଦୃଷ୍ଟିକୋଣ ପ୍ରସ୍ତୁତ କରିବାର ନୀଚ ସ୍ତରକୁ ଖସିଗଲେ ।

କିନ୍ତୁ ବର୍ତ୍ତମାନର ପରିସ୍ଥିତି ଯାହା ସେଥିରେ ଜର୍ମାନ୍ କମ୍ୟୁନିଷ୍ଟମାନେ କମ୍ୟୁନିଜମର ବିଜୟ ହେଲେ ଭର୍ସାଇଲ ଶାନ୍ତିଚୁକ୍ତିକୁ ନିଶ୍ଚିତ ଭାବେ ନାକଚ କରିଦେବେ ବୋଲି ନିର୍ଭର ପ୍ରତିଶ୍ରୁତି ଦେଇ ନିଜର ହାତଗୋଡ଼କୁ ବାନ୍ଧି ଦେବା ଅନୁଚିତ । ସେପରି ପ୍ରତିଶ୍ରୁତି ଦେବା ଚରମ ନିର୍ବୋଧତା ହେବ । ସେମାନେ କହିବା ଉଚିତ—ଏହି ସିଡ଼େମ୍ୟାନ୍‌ପନ୍ଥୀ ଓ କାଉଟ୍‌ସ୍କି ପନ୍ଥୀମାନେ ଏପରି ଅନେକ ବିଶ୍ୱାସଘାତକ କାର୍ଯ୍ୟ କରିଛନ୍ତି ଯାହାଦ୍ୱାରା ସେମାନେ ସୋଭିଏତ୍ ରୁଷିଆ ଓ ସୋଭିଏତ ହଙ୍ଗେରୀ ସହିତ ମୈତ୍ରୀ ସ୍ଥାପିତ ହେବାର ସମ୍ଭାବନାକୁ ବାଧା ଦେଇଛନ୍ତି (ଏବଂ ଅନେକାଂଶରେ ନଷ୍ଟ କରିଦେଇଛନ୍ତି ମଧ୍ୟ) ଏପରି ମୈତ୍ରୀ ଗଠନର ପଥକୁ ଉନ୍ମୁକ୍ତ ଓ ପ୍ରଶସ୍ତ କରି ଦେବା ଲାଗି ଆମେ କମ୍ୟୁନିଷ୍ଟମାନେ ଯଥାସାଧ୍ୟ ଉଦ୍ୟମ କରିବୁ, କିନ୍ତୁ ତା ସଙ୍ଗେ ସଙ୍ଗେ ଯଦି ହେଉନା କାହିଁକି ଭର୍ସାଇଲ ଶାନ୍ତିଚୁକ୍ତିକୁ ସଙ୍ଗେ ସଙ୍ଗେ ରଦ୍ଦ କରିଦେବା ପାଇଁ ଆମେ କୌଣସିମତେ ବାଧ୍ୟ ନହୁଁ ପାରିବୁ ନାହିଁ । ଏହି ଚୁକ୍ତିକୁ ସଫଳଭାବେ ରଦ୍ଦ କରିଦେବାର ସମ୍ଭାବନା କେବଳ ଜର୍ମାନ୍ ଆନ୍ଦୋଳନ ଉପରେ ନିର୍ଭର କରେ ନାହିଁ, ତାହା ସୋଭିଏତ୍ ଆନ୍ଦୋଳନରେ ଆନ୍ତର୍ଜାତିକ ସାଫଲ୍ୟ ଉପରେ ମଧ୍ୟ ନିର୍ଭର କରେ । ସିଡ଼େମ୍ୟାନ୍‌ପନ୍ଥୀ ଓ

କାଉଟସ୍କି ପନ୍ଥୀମାନେ ଏହି ଆନ୍ଦୋଳନକୁ ବ୍ୟାହତ କରି ଆସିଛନ୍ତି, କିନ୍ତୁ ଆମେ ତାକୁ ଆଗେଇ ନେଇଯିବୁ । ଏହା ହିଁ ହେଉଛି ସମସ୍ୟାର ସାର ମର୍ମ, ଏହାହିଁ ହେଉଛି ମୌଳିକ ପାର୍ଥକ୍ୟ । ଆଜି ଆମର ଶ୍ରେଣୀ ଶତ୍ରୁମାନେ ଅର୍ଥାତ୍ ଶୋଷକ ଶ୍ରେଣୀ ଓ ତାଙ୍କର ଅନୁଚରମାନେ, ସିଡ଼େମ୍ୟାନ୍ ପନ୍ଥୀ ଓ କାଉଟସ୍କି ପନ୍ଥୀମାନେ , ଯଦି ଜର୍ମାନ ତଥା ଆନ୍ତର୍ଜାତିକ ସୋଭିଏତ୍ ଆନ୍ଦୋଳନକୁ, ଜର୍ମାନ ତଥା ଆନ୍ତର୍ଜାତିକ ସୋଭିଏତ୍ ବିପ୍ଳବକୁ ଶକ୍ତିଶାଳୀ କରିବାର ସୁଯୋଗମାନ ଦେଇଥାନ୍ତି ତାହେଲେ ସେଥିପାଇଁ ସେଇମାନେ ହିଁ ଦୋଷୀ । ଜର୍ମାନୀରେ ସୋଭିଏତ୍ ବିପ୍ଳବ ହେଲେ ତାହା ଆନ୍ତର୍ଜାତିକ ସୋଭିଏତ୍ ବିପ୍ଳବକୁ ଅଧିକ ଶକ୍ତିଶାଳୀ କରିଦେବ । ଏହି ଆନ୍ତର୍ଜାତିକ ସୋଭିଏତ୍ ବିପ୍ଳବ ହେଉଛି ଭର୍ସାଇଲ ଶାନ୍ତିଚୁକ୍ତି ବିରୁଦ୍ଧରେ ଏବଂ ସାଧାରଣ ଭାବେ ଆନ୍ତର୍ଜାତିକ ସାମ୍ରାଜ୍ୟବାଦ ବିରୁଦ୍ଧରେ ଏକ ଶକ୍ତିଶାଳୀ ଦୁର୍ଗ— ଏହାହିଁ ଏକମାତ୍ର ନିର୍ଭରଯୋଗ୍ୟ ଓ ଅପରାଜେୟ ବିଶ୍ୱବ୍ୟାପୀ ଦୁର୍ଗ । କେବଳ ସାମ୍ରାଜ୍ୟବାଦ ଦ୍ୱାରା ନିର୍ଯାତିତ ହେଉଥିବା ଓ ସାମ୍ରାଜ୍ୟବାଦ ଦ୍ୱାରା ଶୃଙ୍ଖଳିତ ହୋଇ ରହିଥିବା ଅନ୍ୟ ଦେଶମାନଙ୍କୁ ମୁକ୍ତ କରିବାର ସମସ୍ୟା ଅପେକ୍ଷା ଭର୍ସାଇଲ ଶାନ୍ତିଚୁକ୍ତିରୁ ମୁକ୍ତିଲାଭ କରିବାର ସମସ୍ୟାକୁ ଯଦି ବିନା ସର୍ତ୍ତରେ, ତୁରନ୍ତ ଓ ନିରଙ୍କୁଶ ଭାବେ ଅଧିକ ପ୍ରାଧାନ୍ୟ ଦିଆଯାଏ ଅଗ୍ରାଧିକାର ଦିଆଯାଏ ତେବେ ତାହା ବୈପ୍ଳବିକ ଆନ୍ତର୍ଜାତୀୟତାବାଦ ନହୋଇ ପେଟିବୁର୍ଜୁଆ ଜାତୀୟତାବାଦ ହେବ (ଯାହା କାଉଟସ୍କି, ହିଲ୍‌ଫେରଡିଙ୍ଗ, ଅଟୋ ବାଉଏର୍ ପ୍ରମୁଖଙ୍କୁ ଶୋଭାପାଏ) । ଜର୍ମାନୀ ସମେତ ୟୁରୋପର ଯେକୌଣସି ଏକ ବଡ଼ ଦେଶରେ ବୁର୍ଜୁଆଶ୍ରେଣୀକୁ କ୍ଷମତାଚ୍ୟୁତ କରାଯାଇପାରିଲେ ତଦ୍ଦ୍ୱାରା ଆନ୍ତର୍ଜାତିକ ବିପ୍ଳବର ଏତେ ଲାଭ ହେବ ଯେ, ସେଥିପାଇଁ ଭର୍ସାଇଲ ଶାନ୍ତିଚୁକ୍ତିର ଅପେକ୍ଷାକୃତ ଦୀର୍ଘକାଳବ୍ୟାପୀ ସ୍ଥାୟୀତ୍ୱକୁ ବରଦାସ୍ତ କରାଯାଇ ପାରେ ଏବଂ ପ୍ରୟୋଜନ ହେଲେ ବରଦାସ୍ତ କରିବାକୁ ପଡ଼ିବ ମଧ୍ୟ । ବିପ୍ଳବର ସୁବିଧା ଦୃଷ୍ଟିରୁ ରୁଷିଆ ନିଜେ ଯଦି ବ୍ରେଷ୍ଟ-ଲିଟୋଭସ୍କ ଶାନ୍ତିଚୁକ୍ତିକୁ କିଛିମାସ ଧରି ବରଦାସ୍ତ କରିପାରିଲା ତା ହେଲେ ସେହି ବିପ୍ଳବର ସ୍ୱାର୍ଥ ଦୃଷ୍ଟିରୁ ସୋଭିଏତ୍ ରୁଷିଆ ସହିତ ମୈତ୍ରୀ

ବନ୍ଧନରେ ଆବଦ୍ଧ ହୋଇଥିବା ସୋଭିଏତ ଜର୍ମାନୀ ପକ୍ଷରେ ଭର୍ସାଇଲ ଶାନ୍ତିଚୁକ୍ତିର ଅସ୍ତ୍ର ଭିତ୍ତିରୁ ଅପେକ୍ଷାକୃତ ଆହୁରି ଅଧିକ କାଳ ପର୍ଯ୍ୟନ୍ତ ବରଦାସ୍ତ କରିବା କିଛି ଅସମ୍ଭବ କଥା ନୁହେଁ ।

ଫ୍ରାନ୍ସ, ଇଂଲଣ୍ଡ ପ୍ରଭୃତି ଦେଶର ସାମ୍ରାଜ୍ୟବାଦୀମାନେ ଜର୍ମାନ୍ କମ୍ୟୁନିଷ୍ଟମାନଙ୍କୁ ପ୍ରରୋଚିତ କରି ଦେଇ ସେମାନଙ୍କୁ ଫାନ୍ଦରେ ପକାଇ ଦେବାକୁ ଚେଷ୍ଟା କରୁଛନ୍ତି । ତେଣୁ ସେମାନେ ଉସ୍କେଇବାକୁ କହୁଛନ୍ତି— "ଭର୍ସାଇଲ ଶାନ୍ତି ଚୁକ୍ତିରେ ସ୍ୱାକ୍ଷର କରିବୁ ନାହିଁ ବୋଲି କହୁ ନା ତୁମେ !" ଆଉ ଆମର ଏହି ବାମପନ୍ଥୀ କମ୍ୟୁନିଷ୍ଟମାନେ ଏହି ଧୂର୍ତ୍ତ ଶତ୍ରୁ ଓ ବର୍ତ୍ତମାନ ମୁହୂର୍ତ୍ତରେ ଅପେକ୍ଷାକୃତ ଅଧିକ ଶକ୍ତିଶାଳୀ ଶତ୍ରୁ ବିରୁଦ୍ଧରେ ଆବଶ୍ୟକୀୟ କୌଶଳ ଓ ଛକାପଞ୍ଝା ନୀତି ଅନୁସରଣ ନକରି ଏବଂ "ହଁ, ଆମେ ଏଥର ଭର୍ସାଇଲ ଶାନ୍ତି ଚୁକ୍ତିରେ ସ୍ୱାକ୍ଷର କରିବୁ" ବୋଲି ସେମାନଙ୍କୁ ନକହି ନିର୍ବୋଧ ପରି ସେମାନଙ୍କର ଫାନ୍ଦରେ ଯାଇ ପଡୁଛନ୍ତି । ଆଗରୁ ସ୍ୱ ନିଜର ହାତଗୋଡ଼କୁ ବାନ୍ଧିଦେବା ଏବଂ ଯେଉଁ ଶତ୍ରୁ ବର୍ତ୍ତମାନ ଆମ ଅପେକ୍ଷା ଅଧିକ ଅସ୍ତ୍ରସଜ୍ଜିତ ହୋଇ ରହିଛି ତା ବିରୁଦ୍ଧରେ ଆମେ ସଂଗ୍ରାମ କରିବୁ କି ନାହିଁ ଏବଂ କେବେ ସଂଗ୍ରାମ କରିବୁ ସେକଥା ତାକୁ ପ୍ରକାଶ୍ୟ ଭାବେ ଜଣାଇ ଦେବା, ଏହା ବୈପ୍ଳବିକତା ନୁହେଁ, ଏହା ଚରମ ନିର୍ବୋଧତା । ଯେଉଁ ମୁହୂର୍ତ୍ତଟି ଅତି ସ୍ପଷ୍ଟ ଭାବେ ଶତ୍ରୁ ପକ୍ଷରେ ସୁବିଧା ଜନକ ଓ ଆମ ପକ୍ଷରେ ସୁବିଧାଜନକ ନୁହେଁ ସେହି ମୁହୂର୍ତ୍ତରେ ଯୁଦ୍ଧର ଆହ୍ୱାନକୁ ଗ୍ରହଣ କରିନେବା ଏକ ଅପରାଧ । ଏହି ଅତି ଅସୁବିଧା ଜନକ ଯୁଦ୍ଧକୁ ଏଡ଼ି ଦେବା ପାଇଁ ଆବଶ୍ୟକୀୟ" 'କୌଶଳ, ଛକପଞ୍ଝା ନୀତି ଓ ସାଲିସ ନୀତି " ଅବଲମ୍ବନ କରିବା ପାଇଁ ଯେଉଁମାନେ ଅସମର୍ଥ ସେମାନେ ଏକ ବୈପ୍ଳବିକ ଶ୍ରେଣୀର ରାଜନୈତିକ ନେତା ହେବା ପାଇଁ ସମ୍ପୂର୍ଣ୍ଣ ଅଯୋଗ୍ୟ ।

[ ୯ମ ପରିଚ୍ଛେଦ ]

# ଗ୍ରେଟ୍ ବ୍ରିଟେନରେ "ବାମପନ୍ଥୀ" କମ୍ୟୁନିଜମ

ଗ୍ରେଟ୍ ବ୍ରିଟେନରେ ଏପର୍ଯ୍ୟନ୍ତ କୌଣସି କମ୍ୟୁନିଷ୍ଟ ପାର୍ଟି ନାହିଁ । କିନ୍ତୁ ସେଠାର ଶ୍ରମିକମାନଙ୍କ ମଧ୍ୟରେ ଖୁବ୍ ଶକ୍ତିଶାଳୀ, ସତେଜ, ବ୍ୟାପକ ଓ ଦ୍ରୁତଭାବେ ବଢ଼ିଉଠୁଥିବା ଏକ କମ୍ୟୁନିଷ୍ଟ ଆନ୍ଦୋଳନ ରହିଛି ଯାହାର ସମ୍ମୁଖରେ ଉଜ୍ଜ୍ୱଳ ଭବିଷ୍ୟତ ବିଦ୍ୟମାନ । ସେଠାରେ ଅନେକ ରାଜନୈତିକ ଦଳ ଓ ସଂଗଠନ (ବ୍ରିଟିଶ ସୋସାଲିଷ୍ଟ ପାର୍ଟି, ସୋସ ଲିଷ୍ଟ ଲେବର ପାର୍ଟି, ଦକ୍ଷିଣ ୱେଲସ ସୋସାଲିଷ୍ଟ ସମାଜ, ଓ୍ୱାର୍କରସ ସୋସ ଲିଷ୍ଟ ଫେଡେରେସନ ) ରହିଛନ୍ତି ଯେଉଁମାନେ ଗୋଟିଏ କମ୍ୟୁନିଷ୍ଟ ପାର୍ଟି ଗଠନ କରିବାକୁ ଚାହୁଁଛନ୍ତି ଏବଂ ସେହି ଲକ୍ଷ୍ୟ ନେଇ ପରସ୍ପର ମଧ୍ୟରେ ଆଳାପ ଆଲୋଚନା ଚଳାଇଛନ୍ତି । ଶେଷୋକ୍ତ ସଂଗଠନର ସାପ୍ତାହିକ ମୁଖପତ୍ର "ଦ ଓ୍ୱାର୍କରସ ଡ୍ରେଡ୍ନଟ୍"ର ୧୯୨୦, ଫେବୃଆରୀ ୨୧ ତାରିଖ ୬ଷ୍ଠଖଣ୍ଡ ୪୮ ସଂଖ୍ୟାରେ ତାର ସଂପାଦିକା କମ୍ରେଡ୍ ସିଲ୍ଭିଆ ପାଙ୍କହର୍ଷ୍ଟଙ୍କର ଏକ ପ୍ରବନ୍ଧ ପ୍ରକାଶ ପାଇଛି । ଏହି ପ୍ରବନ୍ଧର ନାମ ହେଉଛି, "ଗୋଟିଏ କମ୍ୟୁନିଷ୍ଟ ପାର୍ଟି ଗଠନର ପଥେ" ଏହି ପ୍ରବନ୍ଧରେ ସେ ଗୋଟିଏ ଐକ୍ୟବଦ୍ଧ କମ୍ୟୁନିଷ୍ଟ ପାର୍ଟି ଗଠନ ସମ୍ପର୍କରେ ଉପରୋକ୍ତ ଚାରୋଟି ପାର୍ଟି ମଧ୍ୟରେ ଚାଲିଥିବା ଆପୋଷ ଆଲୋଚନା କେଉଁଠିକି ଅଗ୍ରସର ହୋଇଛି, କେଉଁ ଭିତ୍ତିରେ ତୃତୀୟ ଆନ୍ତର୍ଜାତିକ ସହିତ ଏହି କମ୍ୟୁନିଷ୍ଟ ପାର୍ଟି ସାମିଲ ହୋଇ ପାରିବ, ପାର୍ଲିମେଣ୍ଟାରୀ ପ୍ରଥା ପରିବର୍ତ୍ତେ ସୋଭିଏତ୍ ଶାସନ ପ୍ରଣାଳୀକୁ ସ୍ୱୀକାର କରିବା ବିଷୟ ଏବଂ ସର୍ବହରା-ଶ୍ରେଣୀର ଅଧିନାୟକତ୍ୱ ଇତ୍ୟାଦି ପ୍ରଶ୍ନ ସମ୍ପର୍କରେ ନିଜର ମତାମତ ବ୍ୟକ୍ତ କରିଛନ୍ତି । ଏହି ପ୍ରବନ୍ଧରୁ ଯାହା ଜଣାପଡ଼ୁଛି ତାହା ଗୋଟିଏ

ସାଇଂବଜ କମ୍ୟୁନିଷ୍ଟ ପାର୍ଟି ଗଠନ କରିବା ପଥରେ ସବୁଠାରୁ ବଡ଼ ପ୍ରତିବନ୍ଧକ ହେଉଛି ପାର୍ଲାମେଣ୍ଟାରୀ କାର୍ଯ୍ୟକଳାପର ପ୍ରଶ୍ନ ସଂପର୍କରେ ମତଭେଦ ଏବଂ ଯେଉଁ ନୂତନ କମ୍ୟୁନିଷ୍ଟ ପାର୍ଟି ଗଠନ କରାଯିବ ତାହା ସେହି ପୁରାତନ, ଟ୍ରେଡ୍ ୟୁନିଅନ ପନ୍ଥୀ, ସୁବିଧାବାଦୀ ଓ ଉଗ୍ରଜାତୀୟତାବାଦୀ ଲେବର ପାର୍ଟି ଯାହାକି ମୁଖ୍ୟତଃ ଟ୍ରେଡ୍ ୟୁନିଅନ ସଂଗଠନଗୁଡ଼ିକୁ ନେଇ ଗଠିତ ହୋଇଛି ତାହା ସହିତ ସାମିଲ ହେବ କି ନାହିଁ ସେହି ପ୍ରଶ୍ନ ଉପରେ ମତଭେଦ । ଓ୍ୱାର୍କର୍ସ ସୋସାଲିଷ୍ଟ ଫେଡ଼େରେଶନ ଓ ସୋସାଲିଷ୍ଟ ଲେବର ପାର୍ଟି * ପାର୍ଲାମେଣ୍ଟାରୀ ନିର୍ବାଚନ ଓ ପାର୍ଲାମେଣ୍ଟରେ ଅଂଶ ଗ୍ରହଣ କରିବାର ବିରୋଧୀ ଏବଂ ଲେବର ପାର୍ଟି ସହିତ ସାମିଲ ହେବାର ମଧ୍ୟ ବିରୋଧୀ । ଏ ସମ୍ପର୍କରେ ସେମାନେ ବ୍ରିଟିଶ ସୋସାଲିଷ୍ଟ ପାର୍ଟିର ସବୁ ସଭ୍ୟ କିମ୍ବା ଅଧିକାଂଶ ସଭ୍ୟଙ୍କ ସହିତ ଏକମତ ନୁହନ୍ତି । ସେମାନଙ୍କ ମତରେ ଏହି ବ୍ରିଟିଶ ସୋଶାଲିଷ୍ଟ ପାର୍ଟି ହେଉଛି ଗ୍ରେଟ ବ୍ରିଟେନର "କମ୍ୟୁନିଷ୍ଟ ପାର୍ଟିମାନଙ୍କର ଦକ୍ଷିଣପନ୍ଥୀ ଗୋଷ୍ଠୀ" । ( ସିଲ୍‌ଭିଆ ପ୍ୟାଙ୍କ୍ ହାର୍ଷ୍ଟଙ୍କ ପ୍ରବନ୍ଧର ୫ମ ପୃଷ୍ଠା ଦ୍ରଷ୍ଟବ୍ୟ ) ।

ସୁତରାଂ, ଏହି ମତଭେଦର ଅଭିବ୍ୟକ୍ତିର ରୂପରେ ଏବଂ ଅନ୍ୟାନ୍ୟ କେତେକ ବିଷୟରେ ଜର୍ମାନୀ ଓ ଗ୍ରେଟ ବ୍ରିଟେନ ମଧ୍ୟରେ ଅତ୍ୟଧିକ ପାର୍ଥକ୍ୟ ରହିଥିଲେ ମଧ୍ୟ ଉଭୟ ଦେଶର ମୁଖ୍ୟ ବିଭେଦ ପ୍ରାୟ ସମାନ ( ଜର୍ମାନୀରେ ମତଭେଦର ଅଭିବ୍ୟକ୍ତିର ରୂପ ରୁଷିଆ ସହିତ ପ୍ରାୟ ସମାନ, କିନ୍ତୁ ଗ୍ରେଟବ୍ରିଟେନର ନୁହେଁ ) । ତେଣୁ ବାମପନ୍ଥୀମାନଙ୍କର ଯୁକ୍ତିଗୁଡ଼ିକୁ ଏଥର ବିଚାର କରାଯାଉ ।

---

* ମୋର ବିଶ୍ୱାସ ଏହି ପାର୍ଟି ଲେବର ପାର୍ଟି ସହିତ ସାମିଲ ହେବାର ବିରୋଧୀ କିନ୍ତୁ ଏହି ପାର୍ଟିର ସବୁ ସଭ୍ୟ ପାର୍ଲାମେଣ୍ଟାରୀ କାର୍ଯ୍ୟର ବିରୋଧୀ ନୁହନ୍ତି ।

ପାର୍ଲିମେଣ୍ଟାରି କାର୍ଯ୍ୟ ସମ୍ପର୍କରେ କମ୍ରେଡ୍ ସିଲ୍ଭିଆ ପ୍ୟାଙ୍କହର୍ଷ୍ଟ ଏହି ସଂଖ୍ୟାରେ ପ୍ରକାଶିତ ହୋଇଥିବା କମ୍ରେଡ୍ ଉଇଲ୍ୟମଗାଲକାରଙ୍କର ଏକ ପ୍ରବନ୍ଧ କଥା ଉଲ୍ଲେଖ କରିଛନ୍ତି । କମ୍ରେଡ୍ ଗାଲକାର ତାଙ୍କର ଏହି ପ୍ରବନ୍ଧଟିକୁ ଗ୍ଲାସ୍‌ଗୋର ସ୍କଟିଶ ଶ୍ରମିକ ପରିଷଦ ନାମରେ ଲେଖିଛନ୍ତି ।

ସେଥିରେ ସେ ଲେଖିଛନ୍ତି, ଉପରୋକ୍ତ ପରିଷଦ ହେଉଛି ନିର୍ଦ୍ଦିଷ୍ଟ ଭାବେ ପାର୍ଲିମେଣ୍ଟାରି ପ୍ରଥାର ବିରୋଧୀ ଏବଂ ଏହି ପରିଷଦ ପଛରେ ବିଭିନ୍ନ ରାଜନୈତିକ ସଂସ୍ଥାର ବାମପନ୍ଥୀମାନଙ୍କର ସମର୍ଥନ ରହିଛି ।

"ଆମ୍ଭେମାନେ ସ୍କଟଲଣ୍ଡର ବିପ୍ଳବୀ ଆନ୍ଦୋଳନର ପ୍ରତିନିଧିତ୍ୱ କରୁଛୁ ଏବଂ ସମସ୍ତ ଦେଶରେ ସାମାଜିକ କମିଟିଗୁଡ଼ିକୁ ଭିତ୍ତି କରି ଶିଳ୍ପସଂସ୍ଥାମାନଙ୍କରେ ଏକ ବୈପ୍ଳବିକ ସଂଗଠନ ଗଢ଼ିତୋଳିବା ପାଇଁ ଓ ଗୋଟିଏ କମ୍ୟୁନିଷ୍ଟ ପାର୍ଟି ଗଠନ କରିବା ପାଇଁ ଅନବରତ ଉଦ୍ୟମ ଚଳାଇଛୁ । ପାର୍ଲିମେଣ୍ଟାରି ପ୍ରଥାର ଆନୁଷ୍ଠାନିକ ସମର୍ଥକମାନଙ୍କୁ ଆମେ ଯଥେଷ୍ଟ କାଳ ବରଦାସ୍ତ କରି ଆସିଛୁ । ସେମାନଙ୍କ ବିରୁଦ୍ଧରେ ପ୍ରକାଶ୍ୟ ଯୁଦ୍ଧ ଘୋଷଣା ପ୍ରୟୋଜନ ବୋଲି ଆମେ ଏପର୍ଯ୍ୟନ୍ତ ବିଚାର କରିନାହୁଁ ଏବଂ ଆମ ଉପରେ ପ୍ରକାଶ୍ୟ ଆକ୍ରମଣ ଚଳାଇବା ପାଇଁ ସେମାନେ ଭୟ କରୁଛନ୍ତି ।

"କିନ୍ତୁ ଏପରି ଅବସ୍ଥିତି ଆଉ ବେଶିକାଳ ତିଷ୍ଠି ରହିବ ନାହିଁ । ଆମେ ସତତ ଜୟ ଲାଭ କରି ଆଗେଇ ଚାଲିଛୁ ।

"ସ୍କଟଲଣ୍ଡରେ ଥିବା ସ୍ୱାଧୀନ ଲେବର ପାର୍ଟିର ସାଧାରଣ ସଭ୍ୟମାନେ ପାର୍ଲିମେଣ୍ଟ ନାମ ଶୁଣିଲେ ଆଗକରୁ ଅଧିକ ବିରକ୍ତ ହୋଇ ଉଠୁଛନ୍ତି ଏବଂ ସୋଭିଏତ୍ ବା ଶ୍ରମିକ ପରିଷଦର ଧାରଣାକୁ ପ୍ରାୟ ପ୍ରତ୍ୟେକ ଶାଖା ସଂଗଠନ ସମର୍ଥନ କରୁଛନ୍ତି ।

"ଯେଉଁସବୁ ଭଦ୍ରଲୋକ ରାଜନୀତିକୁ ଗୋଟାଏ ବେଉସା ହିସାବରେ ଗ୍ରହଣ କରିଛନ୍ତି ସେମାନଙ୍କ ପକ୍ଷରେ ଏହା ଅବଶ୍ୟ ଏକ ଗୁରୁତର ବ୍ୟାପାର । ତେଣୁ ସେମାନେ ତାଙ୍କ ଲୋକଙ୍କୁ ପାର୍ଲିମେଣ୍ଟାରି ପ୍ରଥା ଭିତରକୁ ଫେରାଇ ନେବା ପାଇଁ ଆପ୍ରାଣ ଉଦ୍ୟମ କରୁଛନ୍ତି ।

"ବିପ୍ଳବୀ କମ୍ରେଡ୍‌ମାନେ ଏହି ଗୋଷ୍ଠୀକୁ କୌଣସି ପ୍ରକାର ସମର୍ଥନ ଦେବା ଅନୁଚିତ । ଏ କ୍ଷେତ୍ରରେ ଆମକୁ ଏକ କଠୋର ସଂଗ୍ରାମର ସମ୍ମୁଖୀନ ହେବାକୁ ପଡ଼ିବ । ଏହି ସଂଗ୍ରାମ ପଥରେ ଗୋଟାଏ ବଡ଼ ପ୍ରତିବନ୍ଧକ ହେଉଛି ସେହିସବୁ ବ୍ୟକ୍ତିଙ୍କର ବିଶ୍ୱାସଘାତକତା ଯେଉଁମାନେ ବିପ୍ଳବ ଅପେକ୍ଷା ନିଜର ବ୍ୟକ୍ତିଗତ ଅଭିଳାଷକୁ ଉଚ୍ଚତର ସ୍ଥାନ ଦିଅନ୍ତି ।

"ପାର୍ଲିମେଣ୍ଟାରୀ ପ୍ରଥାପ୍ରତି କୌଣସି ପ୍ରକାର ସମର୍ଥନ ଦେବା ଅର୍ଥ ବ୍ରିଟେନର ହିଣ୍ଡମ୍ୟାନ୍ ଓ ନୋଲ୍‌କେମାନଙ୍କ ହାତରେ କ୍ଷମତା ସମର୍ପଣ କରିଦେବାରେ କେବଳ ସହାୟକ ହେବା । ହେଣ୍ଡରସନ, କ୍ଲାଇନେସ୍ ଓ ତାଙ୍କ ଗୋଷ୍ଠୀର ନେତାମାନେ ହେଉଛନ୍ତି ଅତିମାତ୍ରାରେ ପ୍ରତିକ୍ରିୟାଶୀଳ ଲୋକ । ଆନୁଷ୍ଠାନିକ ସ୍ୱାଧୀନ ଲେବର ପାର୍ଟି କ୍ରମାଧିକଭାବେ ମଧ୍ୟବିତ୍ତ ଉଦାରପନ୍ଥୀମାନଙ୍କ ନିୟନ୍ତ୍ରଣାଧୀନକୁ ଚାଲି ଯାଉଛି । ଉଦାରପନ୍ଥୀଦଳ ଭାଙ୍ଗିଯିବା ପରଠାରୁ ଏହି ମଧ୍ୟବିତ୍ତ ଉଦାରପନ୍ଥୀମାନେ ମ୍ୟାକ୍‌ଡୋନାଲ୍ଡ଼, ସ୍ନୋଡ଼େନ ଏଣ୍ଡ କମ୍ପାନୀର ଶିବିରରେ ଯାଇ ଆଶ୍ରୟ ନେଇଛନ୍ତି । ସ୍ୱାଧୀନ ଲେବର ପାର୍ଟିର ନେତୃବୃନ୍ଦ ତୃତୀୟ ଆନ୍ତର୍ଜାତିକର ଘୋର ବିରୋଧୀ, କିନ୍ତୁ ଏହି ଦଳର ସାଧାରଣ କର୍ମୀମାନେ ତୃତୀୟ ଆନ୍ତର୍ଜାତିକର ସପକ୍ଷରେ । କେଣୁ ଏହି ପାର୍ଲିମେଣ୍ଟାରୀ ସୁବିଧାବାଦୀମାନଙ୍କୁ କୌଣସି ପ୍ରକାର ସୁବିଧା ଦେବା ଅର୍ଥ ଉପରୋକ୍ତ ସ୍ୱାଧୀନ ଲେବର ପାର୍ଟିର ନେତାମାନଙ୍କର ହାତରେ ଖେଳନା ହୋଇ ପଡ଼ିବା ।

"ଏକ୍ଷେତ୍ରରେ ବ୍ରିଟିଶ ସୋସାଲିଷ୍ଟ ପାର୍ଟି କଥା ଆଦୌ ବିଚାର୍ଯ୍ୟ ନୁହେଁ ..........ଏ କ୍ଷେତ୍ରରେ ଏକମାତ୍ର ପ୍ରୟୋଜନ ହେଉଛି ଏକ ଅଭ୍ରାନ୍ତ ବିପ୍ଳବୀ ଶିଳ୍ପ ସଂଗଠନ ଏବଂ ଏକ କମ୍ୟୁନିଷ୍ଟ ପାର୍ଟି ଯିଏ କି ସୁଦୃଢ଼, ସୁନିର୍ଦ୍ଦିଷ୍ଟ ଓ ବୈଜ୍ଞାନିକ ପ୍ରଣାଳୀରେ କାର୍ଯ୍ୟ କରିଯିବ । ଏହାକୁ ଗଠନ କରିବାରେ ଆମର କମ୍ରେଡ୍‌ମାନେ ଯଦି ଆମକୁ ସାହାଯ୍ୟ କରନ୍ତି ତାହେଲେ ଆନନ୍ଦର ସହିତ ଆମେ ସେମାନଙ୍କର ସାହାଯ୍ୟ ଗ୍ରହଣ କରିବୁ ଆଉ ସେମାନେ ଯଦି ସାହାଯ୍ୟ ନକରି ପାରିବେ ତାହେଲେ ସେମାନେ ଦୟା କରି ଆମଠାରୁ

ପୁରସ୍କୃତ ହୁଏରେଇ ରହନ୍ତୁ, କାରଣ ତା ନହେଲେ ସେମାନେ ସନ୍ଦେହ ସ୍ୱାମୀଙ୍କ ଶତ୍ରୁମାନଙ୍କୁ ଯେଉଁମାନେ କି ପାର୍ଲମେଣ୍ଟାରୀ ସମ୍ମାନ ଅର୍ଜନ କରିବା ପାଇଁ (?) ବ୍ୟାକୁଳ ଭାବେ ଚକାର କରିବାରେ ଲାଗି ପଡ଼ିଛନ୍ତି ଏବଂ ଯେଉଁମାନେ କି ଖୋଦ ମାଲିକଶ୍ରେଣୀର ରାଜନୀତିଜ୍ଞମାନଙ୍କ ପରି ଭଲକରି ଶାସନ କରି ପାରିବେ ବୋଲି ପ୍ରମାଣ କରିଦେବାକୁ ବ୍ୟାକୁଳ ଭାବେ ଅନେକ ରହିଛନ୍ତି ସେହିମାନଙ୍କୁ ସାହାଯ୍ୟ କରି ବିପ୍ଳବ ପ୍ରତି ବିଶ୍ୱାସଘାତକତା କରିବେ ।"

ମୋ ମତରେ ଏହି ଚିଠିଟି ତରୁଣ କମ୍ୟୁନିଷ୍ଟମାନଙ୍କର ବା କମ୍ୟୁନିଜମ୍‌ ଆଡ଼କୁ ଢଳୁଥିବା ସାଧାରଣ ଶ୍ରମିକ କର୍ମୀମାନଙ୍କର ମେଜାଜ୍ ଓ ଦୃଷ୍ଟି-କୋଣକୁ ଅତି ଚମତ୍କାର ଭାବେ ବ୍ୟକ୍ତ କରୁଛି । ଏପରି ମେଜାଜ୍ ଥିବା ବଡ଼ ଆନନ୍ଦର କଥା ଆଉ ତାହା ଖୁବ୍ ମୂଲ୍ୟବାନ ମଧ୍ୟ । ଏପରି ମେଜାଜ୍‌କୁ ସ୍ୱାଗତ କରିବାକୁ ପଡ଼ିବ ଏବଂ ତାହାକୁ ସମର୍ଥନ କରିବାକୁ ପଡ଼ିବ । କାରଣ ତା ବିନା ପ୍ରୋଲେଟାରିଏଟ ଜାତିକ, ଯେ କୌଣସି ଦେଶରେ ମଧ୍ୟ ସର୍ବହରା ବିପ୍ଳବର ବିଜୟୀ ହେବ ବୋଲି ଆଶା କରିବା ଏକାନ୍ତ ଅର୍ଥହୀନ । ଜନସାଧାରଣଙ୍କର ଏପରି ମେଜାଜ୍‌କୁ ଯେଉଁମାନେ ରକ୍ଷା ଦିଅନ୍ତି, ଜନ-ସାଧାରଣଙ୍କ ମଧ୍ୟରେ ଏପରି ମେଜାଜ୍‌କୁ ଯେଉଁମାନେ ଜାଗ୍ରତ କରି ପାରନ୍ତି (ଅନେକ ସମୟରେ ଜନସାଧାରଣଙ୍କ ମଧ୍ୟରେ ଏପରି ମେଜାଜ ସୁପ୍ତ, ଅଜାଗ୍ରତ ଓ ଅବଚେତନ ଭାବେ ରହିଥାଏ) ସେମାନଙ୍କୁ ପ୍ରଶଂସା କରିବାକୁ ପଡ଼ିବ ଏବଂ ସେମାନଙ୍କୁ ସବୁ ପ୍ରକାର ସାହାଯ୍ୟ ଦେବାକୁ ପଡ଼ିବ, କିନ୍ତୁ ତା ସଙ୍ଗେ ସଙ୍ଗେ ସେମାନଙ୍କୁ ପ୍ରକାଶ୍ୟରେ ଓ ଅକପଟ ଭାବେ ଆମକୁ କହିଦେବାକୁ ପଡ଼ିବ ଯେ, ଜନସାଧାରଣଙ୍କୁ ସେମାନଙ୍କର ମହାନ ବୈପ୍ଳବିକ ସଂଗ୍ରାମ ପଥରେ ଆଗେଇ ନେବା ପାଇଁ ଏହି ମେଜାଜ କେବଳ ଯଥେଷ୍ଟ ନୁହେଁ ଆଉ ବିପ୍ଳବର ଏହି ଅନୁଗତ କର୍ମୀମାନେ ଯେଉଁ କେତେକ ଭୁଲ କରିବାକୁ ଯାଉଛନ୍ତି କିମ୍ବା କରୁଛନ୍ତି ତାହା ବିପ୍ଳବର କ୍ଷତି ଘଟାଇପାରେ । ବର୍ତ୍ତମାନ ଜର୍ମାନୀର "ବାମପନ୍ଥୀ" କମ୍ୟୁନିଷ୍ଟମାନେ ଯେଉଁସବୁ ଭୁଲ କରୁଛନ୍ତି ଏବଂ ବ୍ରିଟିଶର "ବାମପନ୍ଥୀ"

ଲେନିନ୍ୱାଦୀମାନେ ୧୯୦୮ ଓ ୧୯୧୮ରେ ଯେଉଁସବୁ ଭୁଲ କରିଥିଲେ ସେ ସବୁ ଭୁଲର ବୀଜ କମରେଡ଼ ଗାନ୍ଧିଜରଙ୍କର ଏହି ପତ୍ରରେ ଅନ୍ତର୍ନିହିତ ହୋଇ ରହିଛି ।

ବୁର୍ଜୁଆ ଶ୍ରେଣୀର "ରାଜନୀତିଜ୍ଞମାନଙ୍କ" ପ୍ରତି ଏହି ପତ୍ରର ଲେଖକଙ୍କର ଯେଉଁ ଘୃଣା ରହିଛି ତାହା ଏକ ମହାନ ଓ ସର୍ବହରା ଶ୍ରେଣୀ ଯୋଗ୍ୟ ଘୃଣା ( ଏହି ଘୃଣାକୁ କେବଳ ସର୍ବହରାମାନେ ନୁହଁ, ସବୁ ଶ୍ରମଜୀବୀ ଜନସାଧାରଣ ଆଉ ଜର୍ମାନଭଙ୍ଗୀରେ କହିବାକୁ ଗଲେ ସବୁ "ଶ୍ରେଷ୍ଠ ଲୋକମାନେ" ମଧ୍ୟ ହୃଦୟଙ୍ଗମ କରନ୍ତି ଓ ପସନ୍ଦ କରନ୍ତି ) । ନିର୍ଯାତିତ ଓ ଶୋଷିତ ଜନତାର ଏହି ପ୍ରତିନିଧିଙ୍କର ଏତାଦୃଶ ଘୃଣା ହେଉଛି "ସକଳ ବିଜ୍ଞତାର ଉତ୍ସ" ଏବଂ ପ୍ରତ୍ୟେକ ସୋଶାଲିଷ୍ଟ ଓ କମ୍ୟୁନିଷ୍ଟ ଆନ୍ଦୋଳନର ଭିତ୍ତି ଓ ତାର ସାଫଲ୍ୟର ମଧ୍ୟ ଭିତ୍ତି । କିନ୍ତୁ ଯାହା ମନେହୁଏ ଏହି ପତ୍ରର ଲେଖକ ଆହୁରି ଭଲରୂପେ ହୃଦୟଙ୍ଗମ କରିପାରିନାହାନ୍ତି ଯେ, ରାଜନୀତି ହେଉଛି ଏକ ବିଜ୍ଞାନ ଓ ଏକ କଳା, ଏହା ଆକାଶରୁ ଖସିପଡ଼େ ନାହିଁ କି ବିନା ମୂଲ୍ୟରେ ମିଳି ଯାଏ ନାହିଁ ଏବଂ ସର୍ବହରାଶ୍ରେଣୀ ଯଦି ବୁର୍ଜୁଆଶ୍ରେଣୀକୁ ଜୟ କରିବାକୁ ଚାହେଁ ତାହେଲେ ସର୍ବହରା ଶ୍ରେଣୀକୁ ତାର ନିଜର ଓ ନିଜ ଶ୍ରେଣୀର "ରାଜନୀତିଜ୍ଞମାନଙ୍କୁ" ତାଲିମ ଦେବାକୁ ପଡ଼ିବ ଏବଂ ଏପରିଭାବେ ତାଲିମ ଦେବାକୁ ପଡ଼ିବ ଯେପରି ସେମାନେ ବୁର୍ଜୁଆ ରାଜନୀତିଜ୍ଞମାନଙ୍କ ଠାରୁ କୌଣସି ଗୁଣରେ କମ ହେବେ ନାହିଁ ।

ଏହି ପତ୍ରର ଲେଖକ ଭଲଭାବେ ହୃଦୟଙ୍ଗମ କରିଛନ୍ତି ଯେ, ସର୍ବହରା ଶ୍ରେଣୀର ଲକ୍ଷ୍ୟ କେବଳ ଶ୍ରମିକମାନଙ୍କର ସୋଭିଏତ୍ ଦ୍ୱାରା ହାସଲ ହୋଇ ପାରିବ, ତାହା ପାର୍ଲାମେଣ୍ଟ ଦ୍ୱାରା ହାସଲ ହୋଇ ପାରିବ ନାହିଁ । ଆଉ ଯେଉଁମାନେ ଏକଥା ଏପର୍ଯ୍ୟନ୍ତ ହୃଦୟଙ୍ଗମ କରି ପାରି-ନାହାନ୍ତି ସେମାନେ ଅବଶ୍ୟ ନିହାତି ପ୍ରତିକ୍ରିୟାଶୀଳ ବ୍ୟକ୍ତି—ସେମାନେ ଯେତେବଡ଼ ଶିକ୍ଷିତ ବ୍ୟକ୍ତି, ଯେତେ ବେଶି ଅଭିଜ୍ଞ ରାଜନୀତିଜ୍ଞ, ଯେତେ-ବେଶି ନିଷ୍ଠାପର ସୋଶାଲିଷ୍ଟ, ଯେତେବଡ଼ ମାର୍କସ୍‌ବାଦୀ ପଣ୍ଡିତ ଏବଂ

ସେତେବେଳେ ସାଧୁ ସଚ୍ଚୋଟ ନାଗରିକ ଓ ନିଷ୍ଠାପର ହୁଅନ୍ତୁ ନା କାହିଁକି ସେଥିରେ କିଛି ଯାଏ ଆସେ ନାହିଁ। କିନ୍ତୁ "ସୋଭିଏତ୍ ପକ୍ଷପାତୀ" ରାଜନୀତିଜ୍ଞ-ମାନଙ୍କୁ ପାର୍ଲମେଣ୍ଟ ଭିତରକୁ ନପଠାଇ, ପାର୍ଲମେଣ୍ଟାରୀ ପ୍ରଥାକୁ ଉଗ୍ରପନ୍ଥୀ ବିଭେଦବାଦୀ ନକରି ଏବଂ ପାର୍ଲମେଣ୍ଟକୁ ଲୋପ କରି ଦେବାର କର୍ତ୍ତବ୍ୟ ସମ୍ପାଦନ ଉଦ୍ଦେଶ୍ୟରେ ସୋଭିଏତ୍ ପ୍ରଥାର ସଫଳତା ଲାଗି ପାର୍ଲମେଣ୍ଟ ଭିତରେ କାମ ନ କରି ପାର୍ଲମେଣ୍ଟ ଉପରେ ସୋଭିଏତ୍ ପ୍ରଣାଳୀର ବିଜୟ ହାସଲ କରିବା ସମ୍ଭବ କି ନୁହେଁ ସେ କଥା ଏହି ପତ୍ରର ଲେଖକ ଆଉ ପରଖୁନାହାନ୍ତି କି ଦେଖିବା ପ୍ରୟୋଜନ ବୋଲି ମଧ୍ୟ ମନେ କରି ନାହାନ୍ତି। ତଥାପି ଏହି ପତ୍ରର ଲେଖକ ଅତି ନିର୍ଭୁଲ ଭାବେ କହୁଛନ୍ତି ଯେ ଗ୍ରେଟ ବ୍ରିଟେନରେ କମ୍ୟୁନିଷ୍ଟ ପାର୍ଟିକୁ ବୈଜ୍ଞାନିକ ନୀତି ଅନୁଯାୟୀ କାମ କରିବାକୁ ପଡ଼ିବ। ଏହି ବିଜ୍ଞାନ ସମ୍ମତ ନୀତି ଅନୁସରଣ କରିବାକୁ ହେଲେ ପ୍ରଥମତଃ ଅନ୍ୟାନ୍ୟ ଦେଶର ଅଭିଜ୍ଞତାକୁ ହିସାବକୁ ନେବାକୁ ହେବ, ବିଶେଷ କରି ଏହି ସବୁ ଅନ୍ୟ ଦେଶ, ପୁଞ୍ଜିବାଦୀ ଦେଶ ମଧ୍ୟ, ଯେଉଁ ଅନୁରୂପ ଅଭିଜ୍ଞତା ଭିତର ଦେଇ ଗତି କରୁଅଛନ୍ତି କିମ୍ବା ସମ୍ପ୍ରତି ଗତି କରିଅଛନ୍ତି; ଦ୍ୱିତୀୟତଃ, ସଂପୃକ୍ତ ଦେଶର ସକଳ ଶକ୍ତି, ଗୋଷ୍ଠୀ, ଦଳ, ଶ୍ରେଣୀ ଓ ଜନତାକୁ ଆଖି ଆଗରେ ରଖି କାର୍ଯ୍ୟ କରିବାକୁ ହେବ ଏବଂ କେବଳ ଗୋଟିଏ ଗୋଷ୍ଠୀ ବା ଗୋଟିଏ ପାର୍ଟିର କାମନା ଓ ମତାମତ, ତାର ଶ୍ରେଣୀ ସଚେତନତା ଓ ସଂଗ୍ରାମ ଲାଗି ତାର ପ୍ରସ୍ତୁତିର ସ୍ତର ଦ୍ୱାରା ପାର୍ଟିର ନୀତିକୁ ନିର୍ଦ୍ଧାରଣ କରିବାକୁ ହେବ ନାହିଁ।

ଏକଥା ଅବଶ୍ୟ ସତ୍ୟ ଯେ, ହେଣ୍ଡରସନ, କ୍ଲାଇନ୍, ମ୍ୟାକଡୋନାଲଡ୍ ସ୍ନୋଡେନ୍ ପ୍ରମୁଖ ବ୍ୟକ୍ତିମାନେ ହେଉଛନ୍ତି ଅଧମାଧମ ପ୍ରତିକ୍ରିୟାଶୀଳ ବ୍ୟକ୍ତି। ତା ସଙ୍ଗେ ସଙ୍ଗେ ଏକଥା ମଧ୍ୟ ସମାନ ଭାବେ ସତ୍ୟ ଯେ, ସେମାନେ ନିଜ ହାତକୁ କ୍ଷମତା ନେଇ ଆସିବା ପାଇଁ ଚାହାନ୍ତି (ଯଦିଓ ସେମାନେ ବୁର୍ଜୁଆ ଶ୍ରେଣୀ ସହିତ ମିଳିତ ସରକାର ଗଠନର ପକ୍ଷପାତୀ), ସେମାନେ ପୁରାତନ ବୁର୍ଜୁଆ ପନ୍ଥାରେ "ଶାସନ" କରିବାକୁ

ଚାହାଁନ୍ତି ଆଜି ଯେମାନେ ଦେଶ କ୍ଷମତାର ଅଧିକାରୀ ହୋଇଯିବେ ସେମାନେ ନିର୍ଦ୍ଦିଷ୍ଟ ଭାବେ ସିଡ୍‌ନୱାନ ଓ ନୋଜନଙ୍କ ପଥ ଆଚରଣ କରିବେ । ଏସବୁ କଥା ଅବଶ୍ୟ ସତ୍ୟ । କିନ୍ତୁ ତା ଅର୍ଥ ନୁହେଁ ଯେ, ସେମାନଙ୍କୁ ସମର୍ଥନ କରିବା ଅର୍ଥ ବିପ୍ଳବ ପ୍ରତି ବିଶ୍ୱାସଘାତକତା କରିବା । ବରଂ ଶ୍ରମିକ ଶ୍ରେଣୀର ବିପ୍ଳବୀମାନେ ବିପ୍ଳବର ସ୍ୱାର୍ଥ ଦୃଷ୍ଟିରୁ ଏହି ଭଦ୍ରବ୍ୟକ୍ତି-ମାନଙ୍କୁ କିଛି ମାତ୍ରାରେ ପାର୍ଲିମେଣ୍ଟାରୀ ସମର୍ଥନ ଦେବା ଦରକାର। କଥାଟାକୁ ଆହୁରି ସ୍ପଷ୍ଟ କରିଦେବା ପାଇଁ ବ୍ରିଟେନରେ ଦୁଇଟି ରାଜନୈତିକ ଦଳର ବକ୍ତବ୍ୟ ମୁଁ ଏଠାରେ ଉଲ୍ଲେଖ କରୁଛି—(୧) ୧୯୨୦, ମାର୍ଚ୍ଚ ୧୮ ତାରିଖରେ ପ୍ରଧାନ ମନ୍ତ୍ରୀ ଲଏଡ଼ ଜର୍ଜଙ୍କ ଦ୍ୱାରା ପ୍ରଦତ୍ତ ଭାଷଣ ( ମାଞ୍ଚେଷ୍ଟର ଗାର୍ଡିଅନ ଦୈନିକ ସମ୍ବାଦପତ୍ରର ୧୯୨୦ ମାର୍ଚ୍ଚ ୧୯ ତାରିଖ ସଂଖ୍ୟାରେ ପ୍ରକାଶିତ ) ଏବଂ (୨) ଉପରେ ଉଲ୍ଲେଖ କରା ଯାଇଥିବା ପ୍ରବନ୍ଧରେ କମେଡ଼ ସିଲଭିଆ ପ୍ୟାଙ୍କହାର୍ଷ୍ଟ ନାମକ ଜଣେ କମ୍ୟୁନିଷ୍ଟଙ୍କର ଯୁକ୍ତି ।

ଆସ୍‌କୁଇଥ୍ ( ଯେଉଁ ଏହି ବୈଠକକୁ ନିମନ୍ତ୍ରିତ ହୋଇଥିଲେ କିନ୍ତୁ ଯୋଗ ଦେବା ପାଇଁ ରାଜି ହୋଇନଥିଲେ ) ଓ ଉଦାରପନ୍ଥୀମାନେ ଯେଉଁମାନେ କି ଜାଠଦଳ ସହିତ ମିଳିତ ସରକାର ଗଠନ କରିବାକୁ ଚାହାଁନ୍ତି ନାହିଁ, କିନ୍ତୁ ଲେବର ପାର୍ଟି ସହିତ ଘନିଷ୍ଠ ସଂପର୍କ ରକ୍ଷା କରିବାକୁ ଚାହାଁନ୍ତି ) କମ୍ରେଡ଼ ଗାଲାଚର, ତାଙ୍କ ପତ୍ରରେ ଉଦାରପନ୍ଥୀମାନେ ସ୍ୱାଧୀନ ଲେବର ପାର୍ଟିରେ ଯୋଗ ଦେଉଥିବା କଥା ଉଲ୍ଲେଖ କରିଛନ୍ତି ) ସେମାନଙ୍କ ବିରୁଦ୍ଧରେ କେତେକ ଯୁକ୍ତି ଦର୍ଶାଇ ଲଏଡ଼୍ ଜର୍ଜ କହିଲେ ଯେ, ଜାଠଦଳ ଓ ଉଦାରପନ୍ଥୀମାନଙ୍କ ମଧ୍ୟରେ କେବଳ ମିଳନ ନୁହେଁ, ଘନିଷ୍ଠ ମିଳନ ଏକାନ୍ତ ପ୍ରୟୋଜନ ତା ନହେଲେ ଲେବର ପାର୍ଟି ଜୟଲାଭ କରିଯାଇପାରେ । ଏହି ଲେବର ପାର୍ଟିକୁ ଲଏଡ଼ ଜର୍ଜ ସୋସାଲିଷ୍ଟ ପାର୍ଟି ବୋଲି "କହିବାକୁ ପସନ୍ଦ କରନ୍ତି", ଏବଂ ତାଙ୍କ ମତରେ ଏହି ପାର୍ଟି ଉତ୍ପାଦନର ଉପକରଣକୁ

ସାମ୍ପ୍ରତିକ ମାଲିକାନା "ଅଧୀନଙ୍କୁ ନେଇ ଆସିବା ପାଇଁ ଉଦ୍ୟମ କରୁଛୁ :"
"ଏହାକୁ ଫ୍ରାନସ୍‌ରେ କମ୍ୟୁନିଜମ୍ ବୋଲି କହନ୍ତି, ଜର୍ମାନୀରେ ସୋସାଲିଜମ
ବୋଲି କୁହନ୍ତି, ରୁଷିଆରେ ବଲ୍‌ଶେଭିଜମ୍ ବୋଲି କହନ୍ତି।" ଏକଥା
କହିଛନ୍ତି, ବ୍ରିଟିଶ ବୁର୍ଜୁଆ ଶ୍ରେଣୀର ସେହି ନେତା ଲର୍ଡ଼୍ ଜର୍ଜ—
ତାଙ୍କର ଶ୍ରୋତୃବର୍ଗ, ପାର୍ଲିମେଣ୍ଟର ଉଦାରପନ୍ଥୀ ସଭ୍ୟଗଣ, ଯେଉଁମାନେ
ବୋଧହୁଏ ଏକଥା ଆଗରୁ ଜାଣି ନଥିଲେ ସେମାନଙ୍କୁ ସ୍ପଷ୍ଟ ଭାବେ ବୁଝାଇ
ଦେବା ଉଦ୍ଦେଶ୍ୟରେ ସେ କଥାଟାକୁ ଏପରି ସରଳ ଭାବେ ବ୍ୟକ୍ତ
କରିଛନ୍ତି । ସେ ଆହୁରି ବ୍ୟାଖ୍ୟା କରି କହିଛନ୍ତି—ଏସବୁ ହେଉଛି
ଉଦାରପନ୍ଥୀ ମତର ବିରୋଧୀ, କାରଣ ଉଦାରବାଦ ହେଉଛି ନୀତିଗତ
ଦୃଷ୍ଟିରୁ ବ୍ୟକ୍ତିଗତ ସମ୍ପତ୍ତିର ସମର୍ଥକ । "ସଭ୍ୟତା ଆଜି ବିପନ୍ନ," ଘୋଷଣା
କରିଛନ୍ତି ଏହି ବକ୍ତା, ତେଣୁ ଉଦାରପନ୍ଥୀ ଓ ରକ୍ଷଣଶୀଳମାନଙ୍କୁ ଐକ୍ୟବଦ୍ଧ
ହେବାକୁ ପଡ଼ିବ...... ।

ଲର୍ଡ଼୍ ଜର୍ଜ ଆହୁରି କହିଛନ୍ତି,...ଆପଣମାନେ ଯଦି କୃଷି
ଅଞ୍ଚଳକୁ ଯିବେ ତା ହେଲେ ଅବଶ୍ୟ ଆପଣମାନେ ସେଠାରେ ସେଇ
ପୁରାତନ ଦଳଗତ ବିଭାଗକୁ ଦେଖିବେ, ଏହି ଦଳଗତ ବିଭାଗ ପୂର୍ବପରି
ସେମିତି ଶକ୍ତିଶାଳୀ ହୋଇ ରହିଛି ଏବଂ ଏହି ବିପଦ ଠାରୁ ଖୁବ୍ ଦୂରରେ
ରହିଛି । ସେସବୁ ଅଞ୍ଚଳରେ ଏହି ବିପଦର ଆଭାସ ନାହିଁ । କିନ୍ତୁ ସେମାନେ
ଯେତେବେଳେ ଏହି ବିପଦକୁ ଦେଖିବେ ସେମାନେ ଏହି ଶିଳ୍ପଗତ
ନିର୍ବାଚନ ମଣ୍ଡଳୀଗୁଡ଼ିକ ପରି ମଧ୍ୟ ବିଳମ୍ବ ହୋଇ ଉଠିବେ । ଏହି
ଦେଶରେ ପାଞ୍ଚଭାଗରୁ ଚାରିଭାଗ ଅଞ୍ଚଳ ହେଉଛି ଶିଳ୍ପ ଓ ବାଣିଜ୍ୟ ଅଞ୍ଚଳ ।
ପାଞ୍ଚଭାଗରୁ ଏକଭାଗ ମାତ୍ର ହେଉଛି କୃଷି ଅଞ୍ଚଳ । ଭବିଷ୍ୟତର ବିପଦ
ବିଷୟ ଚିନ୍ତା କଲାବେଳେ ଏକଥା ବରାବର ମୋ ମନରେ ରହିଥାଏ ।
ଫ୍ରାନସ୍‌ର ଅଧିକାଂଶ ଜନସାଧାରଣ ହେଉଛନ୍ତି କୃଷିଜୀବୀ । ତେଣୁ ସେଠାରେ
ଏକ ସୁଦୃଢ଼ ଜନମତ ରହିଛି ଯାହାକି ଦ୍ରୁତଭାବେ ପରିବର୍ତ୍ତିତ ହୁଏ ନାହିଁ
ଏବଂ ବିପ୍ଳବୀ ଆନ୍ଦୋଳନ ଦ୍ୱାରା ସହଜରେ ଉତ୍ତେଜିତ ହୋଇ ଉଠେ
ନାହିଁ କିନ୍ତୁ ଏଠାର ଅବସ୍ଥା ସେଇଆ ନୁହେଁ । ଏଦେଶର ଶୀର୍ଷଭାଗ ପୃଥିବୀର

ଅନ୍ୟ ଦେଶ ଅପେକ୍ଷା ଖୁବ୍ ବେଶି ଓଜନଥା, ତେଣୁ ଏ ଦେଶ ଯଦି କେବେ ଟଲମଲ ହୋଇ ଉଠିବ ତାହେଲେ ତାର ପତନ ଅନ୍ୟାନ୍ୟ ଦେଶ ଅପେକ୍ଷା ଆହୁରି ଭୟାବହ ଓ ପ୍ରଚଣ୍ଡ ହୋଇ ଉଠିବ ।"

ଏଥିରୁ ପାଠକମାନେ ସ୍ପଷ୍ଟ ଦେଖିପାରିବେ ଯେ, ମିଷ୍ଟର ଲଏଡ୍ ଜର୍ଜ କେବଳ ଜଣେ ଚତୁର ବ୍ୟକ୍ତି ନୁହଁନ୍ତି, ସେ ମାର୍କସବାଦୀମାନଙ୍କ ଠାରୁ ଅନେକ କିଛି ମଧ୍ୟ ଶିକ୍ଷା କରିଛନ୍ତି । ତେଣୁ ଲଏଡ୍ ଜର୍ଜଙ୍କ ଠାରୁ କିଛି ଶିକ୍ଷା କରିବା ଆମ୍ଭମାନଙ୍କ ପକ୍ଷରେ ପାପ ହେବ ନାହିଁ ।

ଲଏଡ୍ ଜର୍ଜଙ୍କ ଭାଷଣ ପରେ ଯେଉଁ ବୈଠକରେ ହୋଇଥିବା ଆଲୋଚନା ସମୟରେ ନିମ୍ନଲିଖିତ ଯେଉଁ ଘଟଣାଟି ଘଟିଲା ତାହା ମଧ୍ୟ ଆଗ୍ରହର ସହିତ ଲକ୍ଷ୍ୟ କରିବାର କଥା:—

ମିଷ୍ଟର ଓ୍ୱାଲେସ୍, ଏମ୍.ପି.—ଶିଳ୍ପଗତ ନର୍ବାଚନ ମଣ୍ଡଳୀ ଗୁଡ଼ିକରେ ଥିବା ଶିଳ୍ପ ଶ୍ରମିକମାନେ, ଯେଉଁମାନଙ୍କ ଭିତରୁ ଅଧିକାଂଶ ବର୍ତ୍ତମାନ ହେଉଛନ୍ତି ଉଦାରପନ୍ଥୀ ଓ ଯେଉଁମାନଙ୍କ ଠାରୁ ଆମେ ଏତେ ସମର୍ଥନ ପାଉଛୁ, ସେମାନଙ୍କ ଉପରେ ଏହାର କି ପ୍ରଭାବ ପଡ଼ିବ ବୋଲି ପ୍ରଧାନମନ୍ତ୍ରୀ ମହାଶୟ ଚିନ୍ତା କରୁଛନ୍ତି ? ଯେଉଁମାନେ ଆମର ଆନ୍ତରିକ ସମର୍ଥକ ସେମାନଙ୍କ ମଧ୍ୟରୁ ଅଧିକାଂଶ କ'ଣ ଏହା ଫଳରେ ସଙ୍ଗେ ସଙ୍ଗେ ଲେବର ପାର୍ଟି ଅଡ଼କୁ ଆଉଜି ଯିବେ ନାହିଁ ?

"ପ୍ରଧାନ ମନ୍ତ୍ରୀ—ଏ ବିଷୟରେ ମୁଁ ସମ୍ପୂର୍ଣ୍ଣ ଭିନ୍ନ ମତ ପୋଷଣ କରେ । ଉଦାରପନ୍ଥୀମାନେ ପରସ୍ପର ମଧ୍ୟରେ ଯେଉଁ ବିବାଦ ଓ ଝଗଡ଼ା ଲଗାଇଛନ୍ତି ତା ଫଳରେ ଅବଶ୍ୟ ବହୁ ସଂଖ୍ୟକ ଉଦାରପନ୍ଥୀ ହତାଶ ହୋଇ ଲେବର ପାର୍ଟି ଅଡ଼କୁ ଚାଲିଯାଉଛନ୍ତି । ଏହା ଦ୍ୱାରା ଲେବର ପାର୍ଟି ଭିତରେ ବହୁ ସଂଖ୍ୟକ ଉଦାରପନ୍ଥୀ ପଶିଯାଉଛନ୍ତି ଯେଉଁମାନଙ୍କ ମଧ୍ୟରେ ଖୁବ୍ ସୁଦକ୍ଷ ବ୍ୟକ୍ତି ମଧ୍ୟ ଅଛନ୍ତି ଏବଂ ସେମାନଙ୍କର କାମ ହେଉଛି ସରକାରଙ୍କର ବଦନାମ କରିବା । ଏହା ଫଳରେ ଲେବର ପାର୍ଟି ସପକ୍ଷରେ ଜନମତ ନିଶ୍ଚୟ ବୃଦ୍ଧି ପାଉଛି । ଏହି ଜନସମର୍ଥନ

ବାହାରେଥିବା ଉଦାରପନ୍ଥୀମାନଙ୍କ ସପକ୍ଷରେ ଯାଉନାହିଁ, ଏହା ଲେବର ପାର୍ଟି ସପକ୍ଷରେ ଯାଉଛି । ସାଧାରଣ ଉପନିର୍ବାଚନ ଗୁଡ଼ିକରୁ ହିଁ ଏହା ସ୍ପଷ୍ଟଭାବେ ଜଣାଯାଏ" ।

ପ୍ରକାଶନ୍ତରେ ମୁଁ ଏଠାରେ କହି ଦେବାକୁ ଚାହେଁ ଯେ, ବୁର୍ଜୁଆଶ୍ରେଣୀର ଅତି ଚତୁର ବ୍ୟକ୍ତିମାନେ ମଧ୍ୟ କେବଳ ଚନ୍ଦା ଭୋଟର ଶୀକାର ହୁଅନ୍ତି ଏବଂ ଅତି ନିର୍ବୋଧ କାମ ମଧ୍ୟ କରନ୍ତି ତାହା ଏହି ସୂତ୍ରରୁ ସ୍ପଷ୍ଟ ପ୍ରତୀୟମାନ ହୁଏ । ତାହା ଅବଶ୍ୟ ବୁର୍ଜୁଆଶ୍ରେଣୀକୁ ତା'ର ପତନ ଆଡ଼କୁ ଟାଣି ନେଉଥିବ । କିନ୍ତୁ ଆମ ଲୋକେ ବି ଏପରି ନିର୍ବୋଧ କାମ କରି ପାରନ୍ତି ଏବଂ ତା ସତ୍ତ୍ୱେ ପରିଶେଷରେ ବିଜୟ ଲାଭ କରନ୍ତି ( ଅବଶ୍ୟ ଏହି ସବୁ ଭୁଲକାମ ସେତେ ଅତି ଗୁରୁତର ହୋଇ ନଥାଏ ଓ ତାହାକୁ ଯଥା ସମୟରେ ସଂଶୋଧନ କରାଯାଏ ) ।

ଦ୍ୱିତୀୟ ରାଜନୈତିକ ଭୁଲଟି ହେଉଛି "ବାମପନ୍ଥୀ" କମ୍ୟୁନିଷ୍ଟ କମ୍ରେଡ୍ ସିଲଭିଆ ପାଙ୍କହାର୍ଷ୍ଟଙ୍କ ଦ୍ୱାରା ଉପସ୍ଥାପିତ ହୋଇଥିବା ନିମ୍ନଲିଖିତ ସୂତ୍ର:—

"………କମ୍ରେଡ୍ ଇଙ୍କ୍‌ପିନ୍ ( ବ୍ରିଟିଶ ସୋଶାଲିଷ୍ଟ ପାର୍ଟିର ସାଧାରଣ ସମ୍ପାଦକ ) ଲେବର ପାର୍ଟିକୁ ଶ୍ରମିକ ଶ୍ରେଣୀ ଆନ୍ଦୋଳନର ମୁଖ୍ୟ ସଙ୍ଗଠନ ବୋଲି ଉଲ୍ଲେଖ କରିଛନ୍ତି । ଏହି ବ୍ରିଟିଶ ସୋଶାଲିଷ୍ଟ ପାର୍ଟିର ଆଉ ଜଣେ ସଭ୍ୟ ତୃତୀୟ ଆନ୍ତର୍ଜାତିକର ସଂପ୍ରତିଷ୍ଠା ସମ୍ମିଳନୀରେ ନିଜ ଦଳର ମତାମତ ଅତ୍ୟନ୍ତ ବଳିଷ୍ଠ ଭାବେ ବ୍ୟକ୍ତ କରିଛନ୍ତି । ସେ କହିଛନ୍ତି, 'ଏହି ଲେବର ପାର୍ଟିକୁ ଆମେ ସଙ୍ଗଠିତ ଶ୍ରମିକଶ୍ରେଣୀ ବୋଲି ସ୍ୱୀକାର କରୁ ।'

'କିନ୍ତୁ ଲେବର ପାର୍ଟି ସମ୍ପର୍କରେ ଆମେ ଏପରି ମତାମତ ପୋଷଣ କରୁନାହୁଁ । ସଂଖ୍ୟା ଦୃଷ୍ଟିରୁ ଦେଖିଲେ ଲେବର ପାର୍ଟି ଏକ ବୃହତ ପାର୍ଟି । କିନ୍ତୁ ଏହି ପାର୍ଟିର ସଭ୍ୟମାନେ ହେଉଛନ୍ତି ଅନେକ ପରିମାଣରେ ନିଷ୍କ୍ରିୟ ଓ ନିସ୍ପୃହ । ସେମାନଙ୍କ ମଧ୍ୟରୁ ଅନେକ କେବଳ ଟ୍ରେଡ୍ ୟୁନିଅନ

ସଙ୍ଗଠନରେ ଯୋଗ ଦେଇଛନ୍ତି କାରଣ ସେମାନଙ୍କର ବନ୍ଧୁମାନେ ଟ୍ରେଡ଼ ୟୁନିଅନ ସଙ୍ଗଠନ ଭିତରେ ରହିଛନ୍ତି ଏବଂ ଟ୍ରେଡ଼ ୟୁନିଅନରେ ସଭ୍ୟ ହେଲେ ସେମାନେ କିଛି ସୁବିଧା ପାଇ ପାରିବେ"।

"କିନ୍ତୁ ଆମେ ସ୍ୱୀକାର କରୁଛୁ ଯେ, ବ୍ରିଟେନର ଲେବର ପାର୍ଟି ଏପରି ଏକ ବିରାଟ ପାର୍ଟି ହୋଇଛି କାରଣ ଯେଉଁ ଚିନ୍ତାଧାରାରୁ ଏହି ପାର୍ଟି ପ୍ରସୂତ ସେହି ଚିନ୍ତାଧାରାର ପରିସର ଭିତରେ ବ୍ରିଟିଶ ଶ୍ରମିକଶ୍ରେଣୀର ଅଧିକାଂଶ ସଭ୍ୟ ଆବଦ୍ଧ ହୋଇ ରହିଛନ୍ତି, ଏହି ଚିନ୍ତାଧାରାର ପରିସର ଭିତରୁ ସେମାନେ ଆହୁରି ବାହାରିଯାଇ ପାରିନାହାନ୍ତି। ତଥାପି ଜନସାଧାରଣଙ୍କ ମନ ଭିତରେ ବର୍ତ୍ତମାନ ଏକ ବିରାଟ ପରିବର୍ତ୍ତନ ପ୍ରକ୍ରିୟା ଆରମ୍ଭ ହୋଇଛି ଯାହା ଫଳରେ କି ଏପରି ପରିସ୍ଥିତି ନିକଟରେ ନିଶ୍ଚୟ ପରିବର୍ତ୍ତିତ ହୋଇଯିବ.........'।

"ଅନ୍ୟାନ୍ୟ ଦେଶର ବିଭିନ୍ନ ସାମାଜିକ ଦେଶପ୍ରେମୀ ସଙ୍ଗଠନମାନଙ୍କ ପରି ଏହି ବ୍ରିଟିଶ ଲେବର ପାର୍ଟି ମଧ୍ୟ ସମାଜର ପ୍ରାକୃତିକ ବିକାଶ ଧାରାରେ ଅନିବାର୍ଯ୍ୟ ଭାବେ କ୍ଷମତାର ଅଧିକାରୀ ହେବ। ତେଣୁ ଏହି ସାମାଜିକ ଦେଶପ୍ରେମୀମାନଙ୍କୁ କ୍ଷମତାଚ୍ୟୁତ କରିବା ପାଇଁ ଯେଉଁ ଶକ୍ତି ପ୍ରୟୋଜନ ସେହି ଶକ୍ତି କମ୍ୟୁନିଷ୍ଟମାନଙ୍କୁ ଗଢ଼ିତୋଳିବାକୁ ପଡ଼ିବ। ଅତଏବ ଆମର ଏ ଦେଶର ଏ କାମରେ ଆଦୌ ବିଳମ୍ବ କରିବା କିମ୍ବା ଦ୍ୱିଧାଗ୍ରସ୍ତ ହେବା ଆଦୌ ଉଚିତ ନୁହେଁ'।

"ଲେବର ପାର୍ଟିର ଶକ୍ତିକୁ ବୃଦ୍ଧି କରିବାକୁ ଯାଇ ଆମର ନିଜ ଶକ୍ତିକୁ ଅପଚୟ କରିଦେବା ଅନୁଚିତ। ଲେବର ପାର୍ଟି ହାତରେ କ୍ଷମତା ପଡ଼ିବା ଅନିବାର୍ଯ୍ୟ। ତେଣୁ ତାକୁ ପରାସ୍ତ କରିବାପାଇଁ ଆମକୁ ଏକ କମ୍ୟୁନିଷ୍ଟ ଆନ୍ଦୋଳନ ଗଢ଼ିତୋଳିବାକୁ ହେବ ଏବଂ ସେଥିପାଇଁ ସମସ୍ତ ଶକ୍ତି ନିୟୋଜିତ କରିବାକୁ ହେବ।

"ଲେବର ପାର୍ଟି ଖୁବ୍ ଶୀଘ୍ର ସରକାର ଗଠନ କରିବ, ତେଣୁ ତାକୁ ଆକ୍ରମଣ କରିବା ପାଇଁ ବିପ୍ଳବୀ ବିରୋଧୀ ଶକ୍ତିମାନଙ୍କୁ ପ୍ରସ୍ତୁତ ହେବାକୁ ପଡ଼ିବ......"।

ସୁତରାଂ, ଉଦାରପନ୍ଥୀ ଦୃଢ଼ ଭାବରେ ବିଶ୍ୱାସ କରନ୍ତି ଯେ ଆମାନେ ଆଜ ଏହିପରି ଭାବେ ବ୍ରିଟେନର ଐତିହାସିକ "ଦୁଇ ପାର୍ଟି" (ଶୋଷକମାନଙ୍କର) ପ୍ରଥାକୁ ପରିତ୍ୟାଗ କରିଦେଉଛନ୍ତି, ଯେଉଁପଥ କି ଯୁଗଯୁଗର ଅଭିଜ୍ଞତା ଦ୍ୱାରା ପବିତ୍ର ହୋଇ ଉଠିଛି ଏବଂ ଯେଉଁ ପ୍ରଥା କି ଶୋଷକମାନଙ୍କ ପାଇଁ ଖୁବ୍ ସୁବିଧାଜନକ ହୋଇ ରହିଛି। ତା ସଙ୍ଗେ ସଙ୍ଗେ ସେମାନେ ଲେବର ପାର୍ଟି ବିରୁଦ୍ଧରେ ସଂଗ୍ରାମ ଚଳାଇବା ଲାଗି ପରସ୍ପର ମଧ୍ୟରେ ଏକତା ପ୍ରତିଷ୍ଠା କରିବା ପ୍ରୟୋଜନ ବୋଲି ବିଚାର କରୁଛନ୍ତି। ବୁଢ଼ାଯାଉଥିବା ତାଙ୍କୁ ମନ୍ତ୍ରୀମାନେ ପଳାଇଗଲା ପରେ ଆଜି ବହୁସଂଖ୍ୟକ ଉଦାରପନ୍ଥୀ ନିଜର ଦଳ ତ୍ୟାଗ କରି ଲେବର ପାର୍ଟି ପକ୍ଷକୁ ଚାଲିଯାଉଛନ୍ତି। ବାମପନ୍ଥୀ କମ୍ୟୁନିଷ୍ଟମାନେ ବିଶ୍ୱାସ କରୁଛନ୍ତି ଯେ, ଲେବର ପାର୍ଟି କ୍ଷମତାର ଅଧିକାରୀ ହୋଇ ଉଠିବା ଅନିବାର୍ଯ୍ୟ ଆଉ ସେମାନେ ସ୍ୱୀକାର କରୁଛନ୍ତି ଯେ ବର୍ତ୍ତମାନ ଏହି ଲେବର ପାର୍ଟି ପଛରେ ଅଧିକାଂଶ ଶ୍ରମିକଙ୍କର ସମର୍ଥନ ରହିଛି। ଏଥିରୁ ସେମାନେ ଏକ ଅଦ୍ଭୁତ ଉପସଂହାରରେ ଆସି ଉପନୀତ ହୋଇଛନ୍ତି ଯାହାକୁ କମେଡ୍ ସିଲ୍‌ଭିଆ ପ୍ୟାଙ୍କହାର୍ଷ୍ଟ ନିମ୍ନମତେ ଉପସ୍ଥାପିତ କରିଛନ୍ତି :—

"କମ୍ୟୁନିଷ୍ଟ ପାର୍ଟି କୌଣସି ଆପୋଷ କରିବା ଅନୁଚିତ......କମ୍ୟୁନିଷ୍ଟ ପାର୍ଟିକୁ ନିଜର ତତ୍ତ୍ୱକୁ ଅନାବିଳ ଓ ପବିତ୍ରକରି ରଖିବାକୁ ପଡ଼ିବ ଏବଂ ସଂସ୍କାରବାଦରୁ ନିଜକୁ ସଂପୂର୍ଣ୍ଣରୂପେ ମୁକ୍ତ ରଖିବାକୁ ପଡ଼ିବ, ତାର ଲକ୍ଷ୍ୟ ହେଉଛି କେଉଁଠି ନଅଟିକି ବା ମୋଡ଼ ନବୁଲି ସିଧାସଳଖ ରାସ୍ତାରେ କମ୍ୟୁନିଷ୍ଟ ବିପ୍ଳବ ପଥରେ ଅଗେଇ ଯିବା।"

ବରଂ ଅପରପକ୍ଷରେ, ଗ୍ରେଟବ୍ରିଟେନର ଅଧିକାଂଶ ଶ୍ରମିକ ଯେତେ ଏପର୍ଯ୍ୟନ୍ତ ବି ବ୍ରିଟିଶ ଭେରେନ୍ସ୍ ଓ ସିଡ଼ନ୍ୟାନଙ୍କର ନେତୃତ୍ୱକୁ ଅନୁସରଣ କରୁଛନ୍ତି ଆଉ ଏପରି ବ୍ୟକ୍ତିମାନଙ୍କୁ ନେଇ ଗଠିତ ହୋଇଥିବା ଏକ ସରକାର ସଂପର୍କରେ ଏପର୍ଯ୍ୟନ୍ତ କୌଣସି ଅଭିଜ୍ଞତା ଅର୍ଜନ କରିନାହାନ୍ତି— ଯେଉଁ ଅଭିଜ୍ଞତା କି ରୁଷିଆ ଓ ଜର୍ମାନୀରେ ଶ୍ରମିକଶ୍ରେଣୀକୁ କମ୍ୟୁନିଜମ ଆଡ଼କୁ ଆଣିବା ପାଇଁ ପ୍ରୟୋଜନ ହୋଇଥିଲା—ତେବେ ସେଥିରୁ ଏହି

କଥା ନିଃସନ୍ଦେହରେ ପ୍ରମାଣିତ ହୁଏ ଯେ, ବ୍ରିଟିଶ କମ୍ୟୁନିଷ୍ଟମାନେ ପାର୍ଲିଆମେଣ୍ଟାରୀ କାର୍ଯ୍ୟକଳାପରେ ଅଂଶ ଗ୍ରହଣ କରିବା ଉଚିତ ଏବଂ ହେଣ୍ଡରସନ ଓ ସ୍ନୋଡ଼େନଙ୍କର ସରକାର ବାସ୍ତବକ୍ଷେତ୍ରରେ କିପରି କାର୍ଯ୍ୟ କରୁଛି ତାହାର ଫଳାଫଳ ଶ୍ରମିକମାନେ ଯେପରି ପ୍ରତ୍ୟକ୍ଷ ଭାବେ ଦେଖିପାରିବେ ସେଥିପାଇଁ ସେମାନେ ପାର୍ଲିମେଣ୍ଟ ଭିତରେ ଓ ବାହାରେ ଶ୍ରମିକମାନଙ୍କୁ ସାହାଯ୍ୟ କରିବା ଦରକାର ଆଉ ତାଛଡ଼ା ସେମାନେ ଲଏଡ୍ ଜର୍ଜ ଓ ଚର୍ଚ୍ଚିଲଙ୍କର ସମ୍ମିଳିତ ଶକ୍ତିକୁ ପରାସ୍ତ କରିବା ଦିଗରେ ହେଣ୍ଡରସନ ଓ ସ୍ନୋଡ଼େନ ଗୋଷ୍ଠୀକୁ ସାହାଯ୍ୟ କରିବା ଦରକାର । ତା ନ କରି ତାର ବିପରୀତ କାମ କରିବା ଅର୍ଥ ବିପ୍ଳବର ପଥରେ ପ୍ରତିବନ୍ଧକ ଓ ବାଧାବିଘ୍ନ ସୃଷ୍ଟି କରିବା । କାରଣ ଶ୍ରମିକଶ୍ରେଣୀର ଅଧିକାଂଶଙ୍କର ଦୃଷ୍ଟିକୋଣରେ ପରିବର୍ତ୍ତନ ନ ଘଟିଲେ ବିପ୍ଳବ ସଂଘଟିତ ହୋଇ ପାରିବ ନାହିଁ । ଆଉ ଏହି ପରିବର୍ତ୍ତନ କେବଳ ପ୍ରଚାର ଦ୍ୱାରା ଆଣାଯାଇପାରିବ ନାହିଁ, ଏହି ପରିବର୍ତ୍ତନ ଜନସାଧାରଣଙ୍କର ରାଜନୈତିକ ଅଭିଜ୍ଞତା ଦ୍ୱାରା କେବଳ ଆଣାଯାଇପାରିବ । “ସାଲିସ ନାହିଁ, କୌଣସି ନ ଅଟକ ବା କୌଣସି ମୋଡ଼ ନ ବୁଲି ସିଧା ସଳଖ ଆଗେଇ ଯିବାକୁ ପଡ଼ିବ”—ଶ୍ରମିକଶ୍ରେଣୀର ଏକ ଅସହାୟ ସଂଖ୍ୟାଲଘୁ ଅଂଶ, ଯେଉଁମାନେ ଜାଣନ୍ତି (ଅଥବା ଯେ କୌଣସିମତେ ଜାଣିବା ମଧ୍ୟ ଉଚିତ) ଯେ, ହେଣ୍ଡରସନ୍ ଓ ସ୍ନୋଡ଼େନ ଯଦି ଲଏଡ଼ ଜର୍ଜ ଓ ଚର୍ଚ୍ଚିଲଙ୍କୁ ପରାସ୍ତ କରି ଜୟଲାଭ କରନ୍ତି ତାହେଲେ ଅଧିକାଂଶ ଶ୍ରମିକ ସେମାନଙ୍କର ନେତାମାନଙ୍କ ସଂପର୍କରେ ହତାଶ ହୋଇ ପଡ଼ିବେ ଓ କମ୍ୟୁନିଜମ୍‌କୁ ସମର୍ଥନ କରିବାକୁ ଆରମ୍ଭ କରିବେ (କିମ୍ବା କମ୍ୟୁନିଷ୍ଟମାନଙ୍କ ସଂପର୍କରେ ନିରପେକ୍ଷ ରହିବେ ଯାହାକି ମୁଖ୍ୟତଃ ଏକପ୍ରକାର ସହାନୁଭୂତିଶୀଳ ନିରପେକ୍ଷତା ହେବ), ସେମାନେ ଯଦି ଏକଥା କହନ୍ତି ତାହେଲେ ବୁଝିବାକୁ ହେବ ସେମାନଙ୍କର ଉପରୋକ୍ତ ସ୍ଲୋଗାନ ଏକ ଭ୍ରାନ୍ତ ସ୍ଲୋଗାନ । ଏହା ଶତ୍ରୁପକ୍ଷର ୫୦ ହଜାର ସୈନ୍ୟଙ୍କ ବିରୁଦ୍ଧରେ ନିଜ ପକ୍ଷର ମାତ୍ର ୧୦ ହଜାର ସୈନ୍ୟଙ୍କୁ ଲଗାଇଦେବାର ନିର୍ବୋଧତା ବୁଝା ହେବ । ଯେଉଁଠି ଶତ୍ରୁପକ୍ଷର ଶକ୍ତି ବହୁତ ବେଶି ସେ କ୍ଷେତ୍ରରେ

ଏକମାତ୍ର ବିଜ୍ଞଗଣ ହେଉଛି ସମ୍ମୁଖ ଲଢ଼େଇକୁ ଡେଇଁ ନ ପଡ଼ି ଟିକିଏ "ଅଟକିଯିବା," ଟିକିଏ "ମୋଡ଼ ବୋଲି" କିଛି ସମୟ ରହିଯିବା ନହେଲେ ନିହାତି ଦରକାର ପଡ଼ିଲେ ଏମିତିକି "ସାଲିସ" ମଧ୍ୟ କରିନେବା ଏବଂ ନିଜର ଅନ୍ତତ ୧ଲକ୍ଷ ସାହାଯ୍ୟକାରୀ ସୈନ୍ୟ, ଯେଉଁମାନେ କି ରଣାଙ୍ଗନ ଅଭିମୁଖେ ଯାତ୍ରା ଆରମ୍ଭ କରିସାରିଛନ୍ତି ଅଥଚ ଯେଉଁମାନଙ୍କୁ ସଙ୍ଗେ ସଙ୍ଗେ ଯୁଦ୍ଧକ୍ଷେତ୍ରରେ ଠିଆ କରାଇଦେବା ସମ୍ଭବ ନୁହଁ, ସେମାନେ ସମସ୍ତେ ରଣାଙ୍ଗନରେ ଆସି ପହଞ୍ଚିବା ପର୍ଯ୍ୟନ୍ତ ପ୍ରତୀକ୍ଷା କରି ହେବା । ତା ନ କରି ସିଧାସଳଖ ସମ୍ମୁଖ ଲଢ଼େଇକୁ ଡେଇଁ ପଡ଼ିବା ହେଉଛି ବୌଦ୍ଧିକ ଚପଳତା, ଏହା ଏକ ବିପ୍ଳବୀଶ୍ରେଣୀର ଗୁରୁତ୍ୱପୂର୍ଣ୍ଣ ସଂଗ୍ରାମ କୌଶଳ ନୁହଁ ।

ବିପ୍ଳବର ମୌଳିକ ନିୟମ, ଯାହାକି ପ୍ରତ୍ୟେକଟି ବିପ୍ଳବ ଏବଂ ବିଶେଷ କରି ଏହି ବିଂଶ ଶତାବ୍ଦୀର ତିନୋଟି ରୁଷୀୟ ବିପ୍ଳବ ଦ୍ୱାରା ସତ୍ୟ ବୋଲି ପ୍ରମାଣିତ ହୋଇସାରିଛି, ସେହି ନିୟମ ହେଉଛି—ପୁରାତନ ପନ୍ଥାରେ ବଞ୍ଚିରହିବା ଆଉ ସମ୍ଭବ ନୁହଁ ବୋଲି ଶୋଷିତ ଓ ନିର୍ଯ୍ୟାତିତ ଜନସାଧାରଣ ହୃଦୟଙ୍ଗମ କରିବା ଓ ତାର ପରିବର୍ତ୍ତନ ପାଇଁ ଦାବୀ କରିବା ବିପ୍ଳବ ଲାଗି ଯଥେଷ୍ଟ ନୁହଁ, ବିପ୍ଳବ ଲାଗି ଏକାନ୍ତ ଅପରିହାର୍ଯ୍ୟ ଜିନିଷ ହେଉଛି ଯେ, ପୁରାତନ ପନ୍ଥାରେ ବଞ୍ଚିରହିବା ପାଇଁ ଓ ଶାସନ କରିବା ପାଇଁ ଶୋଷକ-ମାନେ ଅସମର୍ଥ ହୋଇ ପଡ଼ିଥିବା ଦରକାର । କେବଳ ଯେତେବେଳେ ନିମ୍ନସ୍ତରର ଶ୍ରେଣୀମାନେ ପୁରାତନ ପନ୍ଥାକୁ ଆଉ ଚାହିଁବେ ନାହିଁ ଏବଂ ଯେତେବେଳେ "ଉଚ୍ଚସ୍ତରର ଶ୍ରେଣୀମାନେ" ପୁରାତନ ପନ୍ଥାକୁ ଆଉ ଚାଲୁ ରଖି ପାରିବେ ନାହିଁ ସେତେବେଳେ ଯାଇ ବିପ୍ଳବ ଜୟଯୁକ୍ତ ହୋଇ ପାରିବ । ଏହି ସତ୍ୟକୁ ଅନ୍ୟ ଭାବେ ବ୍ୟକ୍ତ କରାଯାଇପାରେ —( ଶୋଷିତ ତଥା ଶୋଷକ ଉଭୟଙ୍କୁ କବଳିତ କରୁଥିବା ) ଏକ ଦେଶବ୍ୟାପୀ ସଂକଟ ବିନା ବିପ୍ଳବ ଅସମ୍ଭବ । ତେଣୁ ବିପ୍ଳବ ପାଇଁ ଏକାନ୍ତ ପ୍ରୟୋଜନ କଥା ହେଉଛି— ପ୍ରଥମତଃ ଅଧିକାଂଶ ଶ୍ରମିକ ( ଅନ୍ତତଃପକ୍ଷେ ଅଧିକାଂଶ

ଶ୍ରେଣୀ ସଚେତନ, ଚିନ୍ତାଶୀଳ ଓ ରାଜନୈତିକ ଭାବେ ସକ୍ରିୟଥିବା ଶ୍ରମିକ) ସମ୍ପୂର୍ଣ୍ଣରୂପେ ହୃଦୟଙ୍ଗମ କରିବା ଉଚିତ ଯେ, ବିପ୍ଳବ ଏକାନ୍ତ ପ୍ରୟୋଜନ ଆଉ ସେଥିପାଇଁ ଦରକାର ପଡ଼ିଲେ ନିଜର ଜୀବନ ବଳି ଦେବାପାଇଁ ସେମାନଙ୍କୁ ପ୍ରସ୍ତୁତ ରହିବାକୁ ପଡ଼ିବ, ଦ୍ୱିତୀୟତଃ, ଶାସକ ଶ୍ରେଣୀବର୍ଗ ଏକ ସରକାରୀ ସଙ୍କଟ ଭିତର ଦେଇ ଗତି କରୁଥିବା ଦରକାର ଯେଉଁ ସଙ୍କଟ କି ଅତି ଅନୁନ୍ନତ ଜନସାଧାରଣଙ୍କୁ ବି ରାଜନୀତି ଭିତରକୁ ଟାଣିନେଇ ଆସେ (ପ୍ରକୃତ ବିପ୍ଳବର ଏକ ଲକ୍ଷଣ ହେଉଛି ଏପର୍ଯ୍ୟନ୍ତ ନିସ୍ପୃହ ହୋଇ ରହିଥିବା ଅଥଚ ରାଜନୈତିକ ସଂଗ୍ରାମ ଚଳାଇବା ପାଇଁ ସମର୍ଥ ଥିବା ଶ୍ରମଜୀବୀ ଓ ନିର୍ଯ୍ୟାତିତ ଲୋକଙ୍କର ସଂଖ୍ୟାରେ ଦ୍ରୁତ ବୃଦ୍ଧି, କେବଳ ଦଶଗୁଣ ନୁହେଁ ଶତଗୁଣ ବୃଦ୍ଧି ମଧ୍ୟ), ଏବଂ ସରକାରକୁ ଦୁର୍ବଳ କରିଦିଏ ଆଉ ତା ସଙ୍ଗେ ସଙ୍ଗେ ସେହି ସରକାରକୁ ଶୀଘ୍ର ଉଚ୍ଛେଦ କରିବା ପାଇଁ ବିପ୍ଳବୀମାନଙ୍କୁ ସମର୍ଥ କରିଦିଏ।

ଲଏଡ଼ ଜର୍ଜଙ୍କ ଭାଷଣରୁ ଜଣାଯାଏ ଯେ, ଗ୍ରେଟବ୍ରିଟେନରେ ସର୍ବହରା ବିପ୍ଳବର ବିଜୟ ଲାଗି ପ୍ରୟୋଜନୀୟ ଏହି ଦୁଇଟି ଯାକ ସର୍ତ୍ତ ବେଶ୍ ସ୍ପଷ୍ଟ ଭାବେ ପରିପକ୍ୱ ହୋଇ ଉଠୁଛି। ଆଉ ଏପରି ସମୟରେ ବାମପନ୍ଥୀ କମ୍ୟୁନିଷ୍ଟମାନଙ୍କର ଭୁଲ ହେଉଛି ବିଶେଷ ବିପଜ୍ଜନକ। କାରଣ ଏହି ଦୁଇଟି ସର୍ତ୍ତ ସମ୍ପର୍କରେ କେତେକ ବିପ୍ଳବୀ ଯଥେଷ୍ଟ ଆଗ୍ରହୀ ଓ ଯଥେଷ୍ଟ ସଜାଗ ଥିଲାପରି ମନେ ହେଉନାହିଁ, ସେମାନେ ଏ ବିଷୟ ପ୍ରତି ଯଥେଷ୍ଟ ଧ୍ୟାନ ଦେଉନାହାଁନ୍ତି। ଆମେ ଯଦି ଏକ ବିପ୍ଳବୀ ଶ୍ରେଣୀର ପାର୍ଟି ଏବଂ ଏକ ବିପ୍ଳବୀ ଗୋଷ୍ଠୀର ପାର୍ଟି କେବଳ ନୋହୁଁ, ଆମେ ଯଦି ଚାହୁଁ ଯେ ଜନସାଧାରଣ ଆମର ଅନୁସରଣ କରିବେ (ତା ନ ଚାହିଁଲେ ଆମେ କେବଳ ମୁଷ୍ଟିମେୟ ବକ୍ତୃତା ସର୍ବସ୍ୱ ରାଜନୀତିଜ୍ଞରେ ପରିଣତ ହୋଇଯିବା) ତାହେଲେ ଆମକୁ ପ୍ରଥମତଃ ଲଏଡ଼ ଜର୍ଜ ଓ ଚର୍ଚ୍ଚିଲଙ୍କୁ ପରାସ୍ତ କରିବା ଲାଗି ହେଣ୍ଡରସନ ଓ ସ୍ନୋଡ଼େନଙ୍କୁ ସାହାଯ୍ୟ କରିବାକୁ ହେବ (ଅର୍ଥାତ୍ ପ୍ରଥମ ଦୁଇଜଣଙ୍କୁ ପରାସ୍ତ କରିବା ଲାଗି ଦ୍ୱିତୀୟ-

ଦୁଇଜଣଙ୍କୁ ହାର ଭଣ୍ଡିବାକୁ ହେବ କାରଣ ସେମାନେ ନିଜର ବିଜୟକୁ ଖୁବ୍ ଭୟ କରନ୍ତି ! ); ଦ୍ୱିତୀୟତଃ, ଆମେ ଯେ ଠିକ କଥା କହୁଛୁ ଅର୍ଥାତ୍ ଏହି ହେଣ୍ଡରସନ ଓ ସ୍ନୋଡେନମାନେ ହେଉଛନ୍ତି ଅତି ଅପଦାର୍ଥ ବ୍ୟକ୍ତି, ସେମାନଙ୍କର ପ୍ରକୃତି ହେଉଛି ପେଟି ବୁର୍ଜୁଆ ପ୍ରକୃତି ଓ ବିଶ୍ୱାସ-ଘାତୀ ପ୍ରକୃତି ଆଉ ସେମାନଙ୍କର ଅନ୍ତଃସାର ଶୂନ୍ୟତା ଅନାବୃତ, ସେ କଥା ଶ୍ରମିକଶ୍ରେଣୀର ଅଧିକାଂଶ ଯେପରି ନିଜର ଅଭିଜ୍ଞତା ଦ୍ୱାରା ହୃଦୟଙ୍ଗମ କରିପାରିବେ ସେ ଦଗରେ ସେମାନଙ୍କୁ ସାହାଯ୍ୟ କରିବାକୁ ପଡ଼ିବ; ତୃତୀୟତଃ ଆମକୁ ସେହି ମୁହୂର୍ତ୍ତକୁ ଆହୁରି ନିକଟତର କରି ଆଣିବାକୁ ପଡ଼ିବ ଯେତେବେଳେ କି ହେଣ୍ଡରସନମାନଙ୍କ ଉପରେ ଅଧିକାଂଶ ଶ୍ରମିକ ନିରାଶ ହୋଇ ପଡ଼ିବେ ଆଉ ତାକୁହିଁ ଭିତ୍ତିକରି ହେଣ୍ଡରସନମାନଙ୍କର ସରକାରକୁ ସଙ୍ଗେ ସଙ୍ଗେ ସଫଳତାର ସହିତ ଉଚ୍ଛେଦ କରିଦେବା ସମ୍ଭବ ହୋଇ ଉଠିବ । କାରଣ ଲଏଡ଼ ଜର୍ଜଙ୍କ ଭଳି ଜଣେ ଅତି ଧୂର୍ତ୍ତ ଓ ନିପଟ ବଡ଼ ବୁର୍ଜୁଆ, ପେଟି ବୁର୍ଜୁଆ ନୁହଁ, ଯଦି ଏତେ ଅସ୍ତବ୍ୟସ୍ତ ହୋଇ ପଡ଼ୁଛି ଆଉ ଅଳ ଚର୍ଚ୍ଚିଲଙ୍କ ସହିତ "ଭଲ" କରି, କାଲ୍ ଆସ୍-କୁଇଥ୍ଙ୍କ ସହିତ "ଭଲ" କରି ନିଜକୁ ( ଏବଂ ସମଗ୍ର ଭାବେ ବୁର୍ଜୁଆ ଶ୍ରେଣୀକୁ ମଧ୍ୟ ) ଦୁର୍ବଳ କରି ଦେଉଛି ତାହାହେଲେ ଗୋଟାଏ ହେଣ୍ଡରସନ ସରକାରର ଅବସ୍ଥା ଯେ କେତେ ଶୋଚନୀୟ ହୋଇ ଉଠିବ ତାହା ସହଜେ ଅନୁମେୟ !

କଥାଟାକୁ ଆହୁରି ପରିଷ୍କାର ଭାବେ ମୁଁ ବୁଝାଇ ଦେଉଛି । ମୋ ମତରେ ବ୍ରିଟିଶ କମ୍ୟୁନିଷ୍ଟମାନେ ସେମାନଙ୍କର ଚାରୋଟି ପାର୍ଟି ଓ ଗୋଷ୍ଠୀକୁ ( ସବୁତକ ତ ଖୁବ୍ ଦୁର୍ବଳ ଆଉ ସେମାନଙ୍କ ମଧ୍ୟରୁ କେତେକ ଖୁବ୍ ବେଶି ଦୁର୍ବଳ ) ଏକାଠି କରି ତୃତୀୟ ଆନ୍ତର୍ଜାତିକର ନୀତି ନିୟମର ଭିତ୍ତିରେ ଏବଂ ପାର୍ଲାମେଣ୍ଟରେ ବାଧ୍ୟତାମୂଳକ ଭାବେ ଅଂଶ ଗ୍ରହଣ କରିବାର ଭିତ୍ତିରେ ବ୍ରିଟେନରେ ଗୋଟିଏ ମାତ୍ର କମ୍ୟୁନିଷ୍ଟ ପାର୍ଟି ଗଠନ କରିବା ଉଚିତ । ଏହି କମ୍ୟୁନିଷ୍ଟ ପାର୍ଟି ପକ୍ଷରୁ ହେଣ୍ଡରସନ ଓ

ସ୍ନୋଡ଼େନ୍‌ମାନଙ୍କ ସହିତ "ସାଲିସ" କରିବା ପାଇଁ, ଏକ ନିର୍ବାଚନ
ସମଝଉତା କରିବା ପାଇଁ ଏହି ସର୍ତ୍ତରେ ପ୍ରସ୍ତାବ ଦେଇଥିବା ଉଚିତ:—
ଆସ ଆମେ ହାତକୁ ହାତ ମିଳେଇ ଲଏଡ ଜର୍ଜ ଓ ରକ୍ଷଣଶୀଳମାନଙ୍କର
ମେଣ୍ଟ ବିରୁଦ୍ଧରେ ଲଢ଼େଇ କରିବା. ଲେବର ପାର୍ଟି ଓ କମ୍ୟୁନିଷ୍ଟ
ପାର୍ଟି ପାଇଁ ଶ୍ରମିକମାନେ ଯଥାକ୍ରମେ ଯେଉଁ ଭୋଟ (ନିର୍ବାଚନ ଭୋଟ
ନୁହେଁ, ଏକ ସ୍ୱତନ୍ତ୍ର ଭୋଟ ଗ୍ରହଣ ବ୍ୟବସ୍ଥା ଜରିଆରେ) ଦେବେ ସେହି
ଅନୁପାତରେ ପାର୍ଲିଆମେଣ୍ଟାରି ଆସନ ଗୁଡ଼ିକୁ ନିଜ ନିଜ ମଧ୍ୟରେ
ବାଣ୍ଟି ଦେବା ଏବଂ ଆନ୍ଦୋଳନ, ପ୍ରଚାର ଓ ରାଜନୈତିକ କାର୍ଯ୍ୟକଳାପ
କ୍ଷେତ୍ରରେ ନିଜ ନିଜର ପୂର୍ଣ୍ଣ ସ୍ୱାଧୀନତାକୁ ରକ୍ଷା କରିବା । ଅବଶ୍ୟ ଏହି
ଶେଷୋକ୍ତ ସର୍ତ୍ତ ବିନା କୌଣସି ପ୍ରକାର ନିର୍ବାଚନ ମେଣ୍ଟ ଗଠନ
କରିବା ସମ୍ଭବ ହେବ ନାହିଁ, କାରଣ ତା ହେଲେ ଏହା ବିଶ୍ୱାସ ଘାତକତା
ହେବ । ହେଣ୍ଡରସନ ଓ ସ୍ନୋଡ଼େନ୍‌ମାନଙ୍କର ପ୍ରକୃତ ସ୍ୱରୂପକୁ ଉଦ୍‌ଘାଟନ
କରି ଦେବାର ପୂର୍ଣ୍ଣ ସ୍ୱାଧୀନତା ପାଇଁ ବ୍ରିଟିଶ କମ୍ୟୁନିଷ୍ଟମାନଙ୍କୁ ଦୃଢ଼
ଭାବେ ଦାବୀ କରିବାକୁ ପଡ଼ିବ ଏବଂ ସେହି ଦାବୀକୁ ଆଦାୟ କରିବାକୁ
ପଡ଼ିବ । ରୁଷିଆର ହେଣ୍ଡରସନ୍ ସ୍ନୋଡ଼େନମାନଙ୍କ ସମ୍ପର୍କରେ, ଅର୍ଥାତ୍
ମେନ୍‌ଶେଭିକ୍‌ମାନଙ୍କ ସମ୍ପର୍କରେ ମଧ୍ୟ ରୁଷୀୟ ବଲ୍‌ଶେଭିକ୍‌ମାନେ (୧୯୦୩-
'୧୭ ପନ୍ଦର ବର୍ଷ ପର୍ଯ୍ୟନ୍ତ) ଏହିପରି ସର୍ତ୍ତ ଦାବୀ କରିଥିଲେ ଓ ତାହାକୁ
ଆଦାୟ କରିନେଇଥିଲେ ।

ଏସବୁ ସର୍ତ୍ତରେ ଯଦି ମେଣ୍ଟ କରିବାକୁ ହେଣ୍ଡରସନ୍ ଓ ସ୍ନୋଡ଼େନ
ଗୋଷ୍ଠୀ ରାଜି ହୁଅନ୍ତି ତାହେଲେ ତଦ୍ୱାରା ଆମର ଲାଭ ହେବ । କାରଣ
ପାର୍ଲିଆମେଣ୍ଟାରି ଆସନର ସଂଖ୍ୟା ଆମ ପକ୍ଷରେ ଆଦୌ ଗୁରୁତ୍ୱପୂର୍ଣ୍ଣ ନୁହେଁ,
ପାର୍ଲିଆମେଣ୍ଟାରି ଆସନ ପାଇଁ ଆମେ ଲାଳାୟିତ ନୋହୁଁ, ଏ ବିଷୟରେ
ଆମେ ସେମାନଙ୍କର କଥାକୁ ମାନି ନେଲେ କିଛି କ୍ଷତି ହେବ ନାହିଁ
(କିନ୍ତୁ ହେଣ୍ଡରସନ ଗୋଷ୍ଠୀ ଏବଂ ବିଶେଷ କରି ସେମାନଙ୍କର ନୂତନ
ବନ୍ଧୁମାନେ, ବା ନୂତନ ପ୍ରଭୁମାନେ, ଅର୍ଥାତ୍ ଯେଉଁସବୁ ଉଦାରପନ୍ଥୀ

ସ୍ୱାଧୀନ ଲେବର ପାର୍ଟିରେ ଯୋଗଦେଇଛନ୍ତି, ସେମାନେ ପାର୍ଲମେଣ୍ଟାରୀ ଆସନ ପାଇଁ ଅତ୍ୟନ୍ତ ବ୍ୟାକୁଳ ) ତେଣୁ ଏହି ମେଣ୍ଟ ଦ୍ୱାରା ଆମେ ଲାଭବାନ ହେବା, କାରଣ ଲଏଡ୍ ଜର୍ଜ ନିଜେ ଯେତେବେଳେ ଜନସାଧାରଣଙ୍କୁ "ଅତ୍ୟୁକ୍ତି" ଦଶ ଦେଉଛନ୍ତି ସେତେବେଳେ ଆମେ ଜନସାଧାରଣଙ୍କ ମଧ୍ୟରେ ଆମର ପ୍ରଚାର ଓ ଆନ୍ଦୋଳନାତ୍ମକ କାର୍ଯ୍ୟ ଚଳାଇବାର ସୁଯୋଗ ପାଇବା, ଆଉ ଆମେ ଯେ କେବଳ ଲେବର ପାର୍ଟିକୁ ଆହୁରି ଶୀଘ୍ର ତାର ସରକାର ପ୍ରତିଷ୍ଠା କରିବା ପାଇଁ ସାହାଯ୍ୟ କରିବା ତା ନୁହେଁ, ତା ସଙ୍ଗେ ସଙ୍ଗେ ହେଣ୍ଡରସନମାନଙ୍କ ବିରୁଦ୍ଧରେ ଅନବରତ ଭାବେ ଓ ଦୃଢ଼ ଭାବେ ସଂଗ୍ରାମ ଚଳାଇବୁ ବୋଲି ଆମେ କମ୍ୟୁନିଷ୍ଟମାନେ ଯେଉଁ ପ୍ରଚାର କରୁଛୁ ତାହାକୁ ଜନସାଧାରଣ ଯେପରି ଆହୁରି ଶୀଘ୍ର ହୃଦୟଙ୍ଗମ କରିପାରିବେ ସେଥି ଦିଗରେ ମଧ୍ୟ ଆମେ ସେମାନଙ୍କୁ ସାହାଯ୍ୟ କରିବା ।

ଉପରୋକ୍ତ ସର୍ତ୍ତରେ ଆମ ସହିତ ମେଣ୍ଟ ଗଠନ କରିବାର ପ୍ରସ୍ତାବକୁ ହେଣ୍ଡରସନ୍ ଓ ସ୍ନୋଡ଼େନ୍ ଗୋଷ୍ଠୀ ଯଦି ପ୍ରତ୍ୟାଖ୍ୟାନ କରି ଦିଅନ୍ତି ତାହେଲେ ଆମେ ଆହୁରି ବେଶି ଲାଭବାନ ହେବା । କାରଣ ତଦ୍ଦ୍ୱାରା ଆମେ ଜନସାଧାରଣଙ୍କୁ ( ଏଠାରେ ଲକ୍ଷ୍ୟ କରିବାର କଥା ଯେ, ଖାଣ୍ଟି ମେନ୍‌ଶେଭିକ୍ ଓ କପଟ ସୁବିଧାବାଦୀ ସ୍ୱାଧୀନ ଲେବର ପାର୍ଟି ଭିତରେ ଥିବା ଜନସାଧାରଣ ମଧ୍ୟ ସୋଭିଏତ୍‌ର ପକ୍ଷପାତୀ ) ଦେଖାଇଦେଇ ପାରିବା ଯେ, ଏହି ହେଣ୍ଡରସନ୍‌ମାନେ ସବୁ ଶ୍ରମିକଙ୍କ ମଧ୍ୟରେ ଏକତା ସ୍ଥାପନ କରିବା ଅପେକ୍ଷା ପୁଞ୍ଜିବାଦୀମାନଙ୍କ ସହିତ ନିଜର ଘନିଷ୍ଠ ସମ୍ପର୍କ ସ୍ଥାପନ କରିବାକୁ ଅଧିକ ପସନ୍ଦ କରନ୍ତି । ଏହା ଦ୍ୱାରା ଜନସାଧାରଣଙ୍କ ଦୃଷ୍ଟିରେ ବି ଆମର ସମ୍ମାନ ବଢ଼ିଯିବ । କାରଣ ଲଏଡ୍ ଜର୍ଜଙ୍କର ଅତି ଚମତ୍କାର, ଅତି ନିର୍ଭୁଲ ଓ ଅତି ଉପାଦେୟ ( କମ୍ୟୁନିଜମ ପାଇଁ ) ବ୍ୟାଖ୍ୟା ପରେ ଏହି ଜନସାଧାରଣ ଲଏଡ୍ ଜର୍ଜ ଓ ରକ୍ଷଣଶୀଳମାନଙ୍କର ମେଣ୍ଟ ବିରୁଦ୍ଧରେ ସବୁ ଶ୍ରମିକଙ୍କୁ ଐକ୍ୟବଦ୍ଧ କରିବାର ଧାରଣା ପ୍ରତି ନିଶ୍ଚୟ ସହାନୁଭୂତି ପ୍ରଦର୍ଶନ କରିବେ । ତା ଛଡ଼ା ଏହା ଦ୍ୱାରା

ଆମର ଆଶୁ ଲାଭ ମଧ୍ୟ ହେବ, କାରଣ ଆମେ ଜନସାଧାରଣଙ୍କୁ ଦେଖାଇ ଦେଇ ପାରିଥିବା ଯେ ଏହି ହେଣ୍ଡରସନ୍ ଓ ସ୍ନୋଡେନ ଗୋଷ୍ଠୀ ଲଏଡ଼ ଜର୍ଜଙ୍କୁ ପରାସ୍ତ କରିବା ପାଇଁ ଭୟ କରନ୍ତି, ଏକାକୀ କ୍ଷମତା ଦଖଲ କରିବାକୁ ଭୟ କରନ୍ତି ଏବଂ ସେମାନେ ଗୋପନରେ ଲଏଡ଼ ଜର୍ଜଙ୍କର ସମର୍ଥନ ଲାଭ କରିବା ପାଇଁ ଉଦ୍ୟମ କରୁଛନ୍ତି ଯେଉଁ ଲଏଡ଼ ଜର୍ଜଙ୍କ ପ୍ରକାଶ୍ୟରେ ଲେବର ପାର୍ଟି ବିରୁଦ୍ଧରେ ରକ୍ଷଣଶୀଳମାନଙ୍କ ସହିତ ହାତ ମିଳାଇବା ପାଇଁ ଚେଷ୍ଟା କରୁଛନ୍ତି । ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ରୁଷିଆରେ ୧୯୧୭ ଫେବୃଆରୀ ୨୭ ତାରିଖର ବିପ୍ଳବ ପରେ ମେନଶେଭିକ୍ ଓ ସୋସାଲିଷ୍ଟ ରିଭଲ୍ୟୁସନାରୀମାନଙ୍କ ( ଅର୍ଥାତ୍ ରୁଷୀୟ ହେଣ୍ଡରସନ ଓ ସ୍ନୋଡେନମାନଙ୍କ ) ବିରୁଦ୍ଧରେ ବଲଶେଭିକ୍‌ମାନେ ଯେଉଁ ପ୍ରଚାର ଚଳାଇଲେ ତାହା ଠିକ୍ ଏହିପରି ଏକ ପରିସ୍ଥିତି ଯୋଗୁଁ ଖୁବ୍ ଫଳପ୍ରଦ ହୋଇଥିଲା । ଆମେ ସେତେବେଳେ ମେନ୍‌ଶେଭିକ ଓ ସୋସାଲିଷ୍ଟ ରିଭଲ୍ୟୁସନାରୀମାନଙ୍କୁ କହିଲୁ—ତୁମ୍ଭେମାନେ ବୁର୍ଜୁଆଶ୍ରେଣୀକୁ ବାଦ ଦେଇ ସମଗ୍ର କ୍ଷମତା ନିଜେ ଦଖଲ କରିଯାଅ, କାରଣ ସୋଭିଏତ୍‌ଗୁଡ଼ିକରେ ତୁମ୍ଭମାନଙ୍କର ସଂଖ୍ୟା ଗରିଷ୍ଠତା ରହିଛି (୧୯୧୭ ଜୁନ ମାସରେ ଅନୁଷ୍ଠିତ ପ୍ରଥମ ନିଖିଳ ରୁଷିୟ ସୋଭିଏତ ସମ୍ମିଳନୀରେ ବଲ୍‌ଶେଭିକମାନେ କେବଳ ଶତକଡ଼ା ୧୩ ଭାଗ ଭୋଟ ପାଇଥିଲେ ) । କିନ୍ତୁ ରୁଷୀୟାର ଏହି ହେଣ୍ଡରସନ୍ ଓ ସ୍ନୋଡେନମାନେ ବୁର୍ଜୁଆମାନଙ୍କୁ ବାଦ ଦେଇ କ୍ଷମତା ଦଖଲ କରି ନେବାକୁ ଭୟ କଲେ । ଆଉ ବୁର୍ଜୁଆମାନେ ଯେତେବେଳେ ସାମ୍ବିଧାନିକ ସଭାକୁ ନିର୍ବାଚନ କରିବାରେ ବିଳମ୍ବ କଲେ, କାରଣ ସେମାନେ ଭଲ ଭାବେ ଜାଣିଥିଲେ ଯେ ନିର୍ବାଚନ କଲେ ଅଧିକାଂଶ ଭୋଟ ସୋସାଲିଷ୍ଟ-ରିଭଲ୍ୟୁସନାରୀ ଓ ମେନ୍‌ଶେଭିକମାନଙ୍କ * ପକ୍ଷକୁ ଯିବ ( ଯେଉଁ-

---

* ୧୯୧୭ ନଭେମ୍ବର ମାସରେ ରୁଷିଆରେ ସାମ୍ବିଧାନିକ ସଭାକୁ ଯେଉଁ ନିର୍ବାଚନ ହେଲା ( ଏବଂ ଯେଉଁଥିରେ ୩୬ ନିୟୁତରୁ ଅଧିକ ଭୋଟଦାତା ଅଂଶ ଗ୍ରହଣ କରିଥିଲେ ) ତାହାର ଫଳାଫଳ ନିମ୍ନମତେ ହୋଇଥିଲା—ବଲଶେଭିକମାନେ ଶତକଡ଼ା ୨୫ ଭାଗ ଭୋଟ ପାଇଲେ;

ମାନଙ୍କ ମଧ୍ୟରେ ଏକ ଝାଣୁଆ ରାଜନୈତିକ ମେଣ୍ଟ ରହିଥିଲା ଓ ସେହିମାନେ ସେହି ଏକ ଛାଁ ପେଟିବୁର୍ଜୁଆ ଗଣତନ୍ତ୍ରର ପ୍ରତିନିଧିତ୍ୱ କରୁଥିଲେ ), ସେତେବେଳେ ଏହି ସୋଶାଲିଷ୍ଟ-ରିଭଲ୍ୟୁସନାରୀ ଓ ମେନଶେଭିକମାନେ ବୁର୍ଜୁଆଶ୍ରେଣୀର ଏତାଦୃଶ କାଳକ୍ଷେପଣ କୌଶଳକୁ ଦୃଢ଼ ଓ ଧାରାବାହିକ ଭାବେ ବିରୋଧ କରିବା ପାଇଁ ଆଉ ସମର୍ଥ ହେଲେ ନାହିଁ ।

ଏହି ହେଣ୍ଡରସନ ଓ ସ୍ନୋଡେନମାନେ ଯଦି କମ୍ୟୁନିଷ୍ଟମାନଙ୍କ ସହିତ ମେଣ୍ଟ କରିବାର ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି ଦିଅନ୍ତି ତା ହେଲେ ମଧ୍ୟ ସେମାନଙ୍କୁ ଜନସାଧାରଣଙ୍କ ଆଗରେ ବଦନାମ କରିବାରେ ଓ ଜନସାଧାରଣଙ୍କର ସହାନୁଭୂତି ଲାଭ କରିବା ଦିଗରେ କମ୍ୟୁନିଷ୍ଟମାନଙ୍କର ଆଶୁଲାଭ ହେବ । ଆଉ ତା ଫଳରେ ଯଦି ଆମେ କେତୋଟି ପାର୍ଲାମେଣ୍ଟାରୀ ଶାସନ ହରାଉ ତାହେଲେ ବି ଆମର କିଛି କ୍ଷତି ହେବ ନାହିଁ । ସେହେତୁ ଏହି ପାର୍ଲାମେଣ୍ଟାରୀ ଶାସନ ଆମ ପକ୍ଷରେ ବିଶେଷ କିଛି ଗୁରୁତ୍ୱପୂର୍ଣ୍ଣ ନୁହେଁ । ଆମେ ଖୁବ୍ କମ ସଂଖ୍ୟକ ପ୍ରାର୍ଥୀ ଠିଆ କରାଇବୁ କିନ୍ତୁ ସେମାନଙ୍କୁ ସୁବୁପୁର ନିରାପଦ ନିର୍ବାଚନ ମଣ୍ଡଳୀଗୁଡ଼ିକରେ ଠିଆ କରାଇବୁ ଅର୍ଥାତ ଯେଉଁ ନିର୍ବାଚନ ମଣ୍ଡଳୀଗୁଡ଼ିକରେ ଆମ ପକ୍ଷରୁ ପ୍ରାର୍ଥୀ ଠିଆ କରାଇଲେ ତାହା ଯେପରି ଉଦାରପନ୍ଥୀମାନଙ୍କୁ ଜିତାଇବାରେ ସହାୟକ ହେବ ନାହିଁ ମାତ୍ର ଲେବର ପାର୍ଟିକୁ ଜିତାଇବାରେ ସହାୟକ ହେବ । ସେଭଳି ନିର୍ବାଚନ ମଣ୍ଡଳୀରେ ଆମେ କେବଳ ପ୍ରାର୍ଥୀ ଠିଆ କରାଇବୁ । ନିର୍ବାଚନ ପ୍ରଚାରରେ ଆମେ ଅଂଶ ଗ୍ରହଣ କରିବୁ, କମ୍ୟୁନିଜମ ସପକ୍ଷରେ ପ୍ରଚାରପତ୍ରମାନ ବାଣ୍ଟିବୁ, ଆଉ ଯେଉଁସବୁ ନିର୍ବାଚନ ମଣ୍ଡଳୀରେ ଆମର କୌଣସି ପ୍ରାର୍ଥୀ ନଥିବେ

---

ଜମିଦାର ଓ ବୁର୍ଜୁଆମାନଙ୍କର ବିଭିନ୍ନ ଦଳ ଶତକରା ୧୬ ଭାଗ ଭୋଟ ପାଇଲେ ଏବଂ ପେଟିବୁର୍ଜୁଆ ଗଣତାନ୍ତ୍ରିକ ଦଳମାନେ, ଅର୍ଥାତ ସୋଶାଲିଷ୍ଟ-ରିଭଲ୍ୟୁସନାରୀ, ମେନଶେଭିକ ଓ ଅନୁରୂପ ଆହୁରି କେତେକ କ୍ଷୁଦ୍ର କ୍ଷୁଦ୍ର ଗୋଷ୍ଠୀ ସମୁଦାୟ ଶତକରା ୬୨ ଭାଗ ଭୋଟ ପାଇଲେ ।

ସେଠାରେ ଭୁଇଁଆ ପ୍ରାର୍ଥୀମାନଙ୍କୁ ଭୋଟ ନଦେଇ ଲେବର ପାର୍ଟିର ପ୍ରାର୍ଥୀମାନଙ୍କୁ ଭୋଟ ଦେବା ପାଇଁ ଆମେ ଭୋଟଦାତାମାନଙ୍କୁ ନିବେଦନ କରିବୁ । ଏହା ଦ୍ୱାରା କମ୍ୟୁନିଜମପ୍ରତି ବିଶ୍ୱାସଘାତକତା ହେବ କିମ୍ବା ସମାଜିକ ବିଶ୍ୱାସଘାତକମାନଙ୍କ ବିରୁଦ୍ଧରେ ଅମର ସଂଗ୍ରାମ ବନ୍ଦ ହୋଇଯିବ ଏପରି ଭାବିବା କମେଡ଼ ସିଲଭିଆ ପ୍ୟାଙ୍କ ହାର୍ଷ୍ଟ ଓ କମ୍ରେଡ ଗାଲକାରଙ୍କ ପକ୍ଷରେ ଏକାନ୍ତ ଭ୍ରମାତ୍ମକ । ବରଂ, ଅପର ପକ୍ଷରେ ଏହା ଦ୍ୱାରା ନିଃସନ୍ଦେହରେ କମ୍ୟୁନିଷ୍ଟ ବିପ୍ଳବର ଜୟ ହେବ ।

ବର୍ତ୍ତମାନ ବ୍ରିଟିଶ କମ୍ୟୁନିଷ୍ଟମାନଙ୍କ ପକ୍ଷରେ ଅନେକ ସମୟରେ ଜନସାଧାରଣଙ୍କ ସହିତ ସଂସର୍ଗ ସ୍ଥାପନ କରିବାରେ ଏବଂ ସେମାନଙ୍କୁ ନିଜର ବକ୍ତବ୍ୟ ଶୁଣାଇବାରେ ଖୁବ୍ କଷ୍ଟକର ହେଉଛି । ମୁଁ ଯଦି ଆଜି କମ୍ୟୁନିଷ୍ଟ ହିସାବରେ ଠିଆ ହୋଇ ଲଏଡ଼ ଜର୍ଜଙ୍କ ବିରୁଦ୍ଧରେ ହେଣ୍ଡରସନଙ୍କ ପାଇଁ ଭୋଟ ଦେବାକୁ ଶ୍ରମିକମାନଙ୍କୁ ଆହ୍ୱାନ କରେ ତାହେଲେ ସେମାନେ ନିଶ୍ଚୟ ମୋ କଥା ଶୁଣିବେ । ଆଉ ମୁଁ ମଧ୍ୟ ସେମାନଙ୍କୁ ଅତି ସରଳ ଭାବେ ବୁଝାଇ ଦେଇ ପାରିବି ଯେ, ପାର୍ଲିମେଣ୍ଟାରି ବ୍ୟବସ୍ଥା ଅପେକ୍ଷା ସୋଭିଏତ୍ ବ୍ୟବସ୍ଥା କାହିଁକି ଭଲ ଏବଂ ଚର୍ଚ୍ଚିଲଙ୍କର ଏକଛତ୍ର ଶାସନ ( ଯାହାକି ଭୁଇଁଆ "ଗଣତନ୍ତ୍ର"ର ସାଇନବୋର୍ଡ ତଳେ ଆତ୍ମଗୋପନ କରି ରହିଛି ) ଅପେକ୍ଷା ସର୍ବହରା ଶ୍ରେଣୀର ଏକଛତ୍ର ଶାସନ କାହିଁକି ଭଲ । କେବଳ ସେତିକି ନୁହେଁ, ମୁଁ ମଧ୍ୟ ସେମାନଙ୍କୁ ଅନ୍ଧୁର ବୁଝାଇ ଦେଇ ପାରିବି ଯେ ଫାଶୀ ପାଉଥିବା ମଣିଷକୁ ଫାଶୀ ଦଉଡ଼ି ଯେମିତି ସାହାଯ୍ୟ କରେ ଠିକ୍ ସେମିତି ହେଣ୍ଡରସନଙ୍କୁ ମୋ ଭୋଟ ଦେଇ ମୁଁ ତାଙ୍କୁ ସାହାଯ୍ୟ କରିବାକୁ ଚାହେଁ—ଆଉ ହେଣ୍ଡରସନଙ୍କ ସରକାର ଯେ ଖୁବ୍ ଶୀଘ୍ର ପ୍ରତିଷ୍ଠିତ ହେବାକୁ ଯାଉଛି ସେକଥା ମଧ୍ୟ ମୋ କଥାକୁ ସତ୍ୟ ବୋଲି ପ୍ରମାଣ କରିଦେବ । ଏହା ଫଳରେ ଜନସାଧାରଣ ମୋ ପକ୍ଷକୁ ଢଳିବେ ଏବଂ ଏହାଦ୍ୱାରା ହେଣ୍ଡରସନ ଓ ସ୍ନୋଡେନମାନଙ୍କର ରାଜନୈତିକ ମୃତ୍ୟୁର ପ୍ରକ୍ରିୟା

ଅନ୍ତର ବିସର୍ଜିତ ହୋଇ ଉଠିବ । ରୁଷିଆ ଓ ଜର୍ମାନୀରେ ମଧ୍ୟ ଏହି ମେନ୍‌ସେଭିକ ଓ ସ୍ୱାତନ୍ତ୍ର୍ୟପନ୍ଥୀମାନଙ୍କର ଦଶା ଠିକ୍ ଏହି ଭଳି ହୋଇଥିଲା ।

ଆଉ କେହି ଯଦି ଆପତ୍ତି କରେ ଯେ, ଏସବୁ କୌଶଳ ହେଉଛି ଅତି "ସୂକ୍ଷ୍ମ" ଓ ଅତି ଜଟିଳ, ଏହାକୁ ଜନସାଧାରଣ ବୁଝିପାରିବେ ନାହିଁ, ସେମାନେ ନିଜେ ବିଭ୍ରାନ୍ତ ହୋଇ ଯିବେ ଓ ଆମର ଶକ୍ତିକୁ ମଧ୍ୟ ବିକ୍ଷିପ୍ତ କରିଦେବେ ଏବଂ ଏପରି କୌଶଳ ଅବଲମ୍ବନ କରିବା ଦ୍ୱାରା ସୋଭିଏଟ୍ ବିପ୍ଳବ ପାଇଁ ଆମର ସମସ୍ତ ଶକ୍ତିକୁ ନିୟୋଜିତ କରିବାରେ ଅସୁବିଧା ହେବ ଇତ୍ୟାଦି ଇତ୍ୟାଦି, ତାହେଲେ ଏପରି ଆପତ୍ତି ଉଠାଉଥିବା "ବାମପନ୍ଥୀମାନଙ୍କୁ" ମୁଁ କହିବି—ତୁମେ ନିଜେ ମତାନ୍ଧ ଗୋଷ୍ଠୀବାଦୀ ବୋଲି ଜନସାଧାରଣଙ୍କୁ ମଧ୍ୟ ମତାନ୍ଧ ଗୋଷ୍ଠୀବାଦୀ ବୋଲି ବିଚାର କର ନାହିଁ । ରୁଷିଆର ଜନସାଧାରଣ ଇଂଲଣ୍ଡର ଜନସାଧାରଣଙ୍କ ଅପେକ୍ଷା ଅଧିକ ଶିକ୍ଷିତ ହୁଏତ ନଥିଲେ, ବରଂ କମ୍ ଶିକ୍ଷିତ ଥିଲେ । ତଥାପି ସେମାନେ ବଲ୍‌ଶେଭିକମାନଙ୍କୁ ବୁଝିପାରିଲେ । ଆଉ ସୋଭିଏଟ୍ ବିପ୍ଳବର ଅବ୍ୟବହିତ ପୂର୍ବରୁ, ଅର୍ଥାତ୍, ୧୯୧୭ ସେପ୍ଟେମ୍ବର ମାସରେ, ବଲ୍‌ଶେଭିକମାନେ ଯେ ଗୋଟାଏ ବୁର୍ଜୁଆ ପାର୍ଲାମେଣ୍ଟ ( ସାମ୍ବିଧାନିକ ସଭା ) ପାଇଁ ପ୍ରାର୍ଥୀ ଠିଆ କରାଇଲେ ଏବଂ ସୋଭିଏଟ୍ ବିପ୍ଳବର ଠିକ୍ ପର ମୁହୂର୍ତ୍ତରେ, ଅର୍ଥାତ୍, ୧୯୧୭ ନଭେମ୍ବର ମାସରେ, ସାମ୍ବିଧାନିକ ସଭା ପାଇଁ ହେଉଥିବା ନିର୍ବାଚନରେ ଅଂଶ ଗ୍ରହଣ କଲେ ଯେଉଁ ସାମ୍ବିଧାନିକ ସଭାକୁ ବି ସେମାନେ ୧୯୧୮ ଜାନୁଆରୀ ୫ ତାରିଖରେ ଭାଙ୍ଗିଦେଲେ, ଏସବୁ କାର୍ଯ୍ୟ ବଲ୍‌ଶେଭିକମାନଙ୍କ ଉପରେ କୌଣସି ପ୍ରତିବନ୍ଧକ ସୃଷ୍ଟି କରିନାହିଁ, ବରଂ ସେମାନଙ୍କର ସହାୟକ ହେଲା ।

ବ୍ରିଟିଶ କମ୍ୟୁନିଷ୍ଟମାନଙ୍କ ମଧ୍ୟରେ ଯେଉଁ ଦ୍ୱିତୀୟ ବିଷୟଟିକୁ ଅର୍ଥାତ୍ ଲେବର ପାର୍ଟି ସହିତ ସାମିଲ ହେବାର ପ୍ରଶ୍ନକୁ, କେନ୍ଦ୍ର କରି ମତଭେଦ ଦେଖାଦେଇଛି ସେ ବିଷୟରେ ମୁଁ ଏଠାରେ ବିଶେଷ କିଛି କହି ପାରିବି ନାହିଁ । କାରଣ ଏ ସମସ୍ୟା ସମ୍ପର୍କରେ ମୋ ନିକଟରେ ବେଶି କିଛି ତଥ୍ୟ

ନାହିଁ । ଏ ପ୍ରଶ୍ନ ହେଉଛି ଏକ ଜଟିଳ ପ୍ରଶ୍ନ, କାରଣ ବ୍ରିଟିଶ ଶ୍ରମିକ ପାର୍ଟିର ଚରିତ୍ର ହେଉଛି ସମ୍ପୂର୍ଣ୍ଣ ସ୍ୱତନ୍ତ୍ର, ଏହାର ଗଠନ ପ୍ରଣାଳୀ ସହିତ ୟୁରୋପ ମହାଦେଶରେ ଥିବା ରାଜନୈତିକ ଦଳମାନଙ୍କର ଗଠନ ପ୍ରଣାଳୀର କୌଣସି ସାମଞ୍ଜସ୍ୟ ନାହିଁ । କିନ୍ତୁ ଏକଥା ନିଃସନ୍ଦେହରେ କୁହାଯାଇପାରେ ଯେ, ପ୍ରଥମତଃ ଏହି ପ୍ରଶ୍ନ ସଂପର୍କରେ ବି ଯେଉଁମାନେ "କମ୍ୟୁନିଷ୍ଟ ପାର୍ଟିକୁ ନିଜର ତତ୍ତ୍ୱକୁ ଅନାବିଳ ଓ ପବିତ୍ର କରି ରଖିବାକୁ ପଡ଼ିବ ଏବଂ ସଂସ୍କାରବାଦରୁ ନିଜକୁ ସମ୍ପୂର୍ଣ୍ଣ ରୂପେ ମୁକ୍ତ ରଖିବାକୁ ପଡ଼ିବ; ତାର ଲକ୍ଷ୍ୟ ହେଉଛି କେଉଁଠି ନ ଅଟକି ବା ମୋଡ଼ ନ ବୁଲି ସିଧା ସଳଖ ରାସ୍ତାରେ କମ୍ୟୁନିଷ୍ଟ ବିପ୍ଳବ ପଥରେ ଆଗେଇ ଯିବା",—ଏହିମତ ନିୟମକୁ ଅବଲମ୍ବନ କରି ବିପ୍ଳବୀ ସର୍ବହରାଶ୍ରେଣୀର ସଂଗ୍ରାମ କୌଶଳ ନିର୍ଦ୍ଧାରଣ କରିବାକୁ ଚେଷ୍ଟା କରନ୍ତି ସେମାନେ ଅନିବାର୍ଯ୍ୟ ଭାବେ ଭୁଲ କରି ବସନ୍ତି । କାରଣ ଏସବୁ ମତ ହେଉଛି ଫରାସୀ ବ୍ଲାଙ୍କ୍ୱିଷ୍ଟ କମ୍ୟୁନାର୍ଡ଼ମାନଙ୍କର ଦୋଷ ତ୍ରୁଟିର ପୁନରାବୃତ୍ତି ମାତ୍ର, ସେମାନେ ୧୮୭୪ ରେ ସବୁ ପ୍ରକାର ଆପୋଷ ଓ ସବୁ ପ୍ରକାର ଅନ୍ତର୍ବର୍ତ୍ତୀ ଷ୍ଟେସନକୁ "ପ୍ରତ୍ୟାଖ୍ୟାନ" କରି ଦେଇଥିଲେ । ଦ୍ୱିତୀୟତଃ, ଏ ପ୍ରଶ୍ନ ସମ୍ପର୍କରେ ବି ଆମର ପ୍ରଧାନ କର୍ତ୍ତବ୍ୟ ହେଉଛି ବିଭିନ୍ନ ଶ୍ରେଣୀ ଓ ବିଭିନ୍ନ ଦଳ ମଧ୍ୟରେ ଯେଉଁ ବିଶେଷ ସମ୍ପର୍କ ରହିଛି, କମ୍ୟୁନିଜମ୍ ଆଡ଼କୁ ଆଗେଇଯିବାର ବାସ୍ତବ ବିକାଶ ଧାରାରେ ଯେଉଁସବୁ ବିଶେଷ ଲକ୍ଷଣ ରହିଛି ସେଥିରେ କମ୍ୟୁନିଜମ୍‌ର ସାଧାରଣ ଓ ମୌଳିକ ନିୟମଗୁଡ଼ିକୁ କିପରି ପ୍ରୟୋଗ କରିବାକୁ ହୁଏ ତାହା ଶିଖିବା । ପ୍ରତ୍ୟେକ ଦେଶରେ ଏପରି ସବୁ ବୈଶିଷ୍ଟ୍ୟ ରହିଛି ଯାହାକୁ ଅନୁଧ୍ୟାନ କରିବାକୁ ହେବ, ଆବିଷ୍କାର କରିବାକୁ ହେବ ଓ ହୃଦୟଙ୍ଗମ କରିବାକୁ ହେବ ।

କିନ୍ତୁ ଏସବୁ ବିଷୟର ଆଲୋଚନା କେବଳ ବ୍ରିଟିଶ କମ୍ୟୁନିଜମ୍ ସମ୍ପର୍କରେ ସୀମିତ ନୁହେଁ । ସବୁ ପୁଞ୍ଜିବାଦୀ ଦେଶରେ କମ୍ୟୁନିଜମ୍‌ର ବିକାଶଧାରା କିପରି ଭାବେ ଅଗ୍ରସର ହେଉଛି ସେ ସମ୍ପର୍କୀୟ ବିଭିନ୍ନ ସାଧାରଣ ସିଦ୍ଧାନ୍ତ ସହିତ ମଧ୍ୟ ଏହି ଆଲୋଚନା ସଂଶ୍ଳିଷ୍ଟ । ତେଣୁ ସେ ବିଷୟରେ ଏଥର ଆମେ ଆଲୋଚନା କରିବା ।

## ୧୦ମ ପରିଚ୍ଛେଦ

# ଉପସଂହାର

୧୯୦୫ର ତୃତୀୟ ରୁଷିଆ ବିପ୍ଳବ ବିଶ୍ୱ ଇତିହାସର ଏକ ଅପୂର୍ବ ସନ୍ଧିକ୍ଷଣକୁ ଉଦ୍‌ଘାଟିତ କରିଦେଲା—ସେହି ସମୟରେ ଗୋଟାଏ ଅତି ଅନଗ୍ରସର ପୁଞ୍ଜିବାଦୀ ଦେଶରେ ଜନସାଧାରଣଙ୍କର ଧର୍ମଘଟ ଆନ୍ଦୋଳନ ଯେପରି ବ୍ୟାପକ ଓ ଶକ୍ତିଶାଳୀ ହୋଇ ଉଠିଲା ତାହା ଅଭୂତପୂର୍ବ, ତାର ଦୃଷ୍ଟାନ୍ତ ପୃଥିବୀରେ ବିରଳ । ୧୯୦୫ର ପୂର୍ବବର୍ତ୍ତୀ ଦଶବର୍ଷ ମଧ୍ୟରେ (୧୮୯୫-୧୯୦୫) ହାରାହାରି ବର୍ଷକୁ ଯେତେ ଧର୍ମଘଟ ହୋଇଥିଲା ତାହାର ଦଶଗୁଣରୁ ଅଧିକ ଧର୍ମଘଟ ୧୯୦୫ର ପ୍ରଥମ ମାସରେ କେବଳ ହୋଇଥିଲା । ଆଉ ତାପରେ ୧୯୦୫ ଜାନୁଆରୀଠାରୁ ଅକ୍‌ଟୋବର ମାସ ଭିତରେ ଧର୍ମଘଟର ସଂଖ୍ୟା ଅବ୍ୟାହତ ଭାବେ ବଢ଼ି ବଢ଼ି ଚାଲିଲା ଏବଂ କଳ୍ପନାତୀତ ଭାବେ ବ୍ୟାପକରୁ ବ୍ୟାପକତର ହୋଇ ଉଠିଲା କେତେକ ଅତି ଅସାଧାରଣ ଐତିହାସିକ ପରିସ୍ଥିତିର ପ୍ରଭାବଫଳରେ ଅନଗ୍ରସର ରୁଷିଆ ପୃଥିବୀକୁ ପ୍ରଥମ କରି ଦେଖାଇ ଦେଲା ଯେ ବିପ୍ଳବ ସମୟରେ ନିର୍ଯାତିତ ଜନସାଧାରଣଙ୍କର ସ୍ୱାଧୀନ କର୍ମତତ୍ପରତା କିପରି ହଠାତ୍ ଏକ ଲମ୍ଫଦେଇ ବୃଦ୍ଧି ପାଇଯାଏ (ଏହା ସବୁ ବଡ଼ବଡ଼ ବିପ୍ଳବ କ୍ଷେତ୍ରରେ ଘଟିଥାଏ) । କେବଳ ସେତିକି ନୁହେଁ, ଏହି ଅନଗ୍ରସର ରୁଷିଆ ଦୁନିଆକୁ ଆହୁରି ଦେଖାଇ ଦେଲା ଯେ, ମୋଟ ଜନସଂଖ୍ୟା ତୁଳନାରେ ସର୍ବହରା-ମାନଙ୍କର ସଂଖ୍ୟାର ଅନୁପାତ ଯାହା ତାହା ଅପେକ୍ଷା ସର୍ବହରାମାନଙ୍କର ତାତ୍ପର୍ଯ୍ୟ କିପରି ଢେର ବେଶି ଆଉ ଅର୍ଥନୈତିକ ଧର୍ମଘଟ ଓ ରାଜନୈତିକ ଧର୍ମଘଟ କିପରି ଏକତ୍ର ପରିଚାଳିତ ହୁଏ ଆଉ ଏହି ରାଜନୈତିକ ଧର୍ମଘଟ କିପରି ସଶସ୍ତ୍ର ଅଭ୍ୟୁତ୍ଥାନରେ ରୂପାନ୍ତରିତ ହୋଇଯାଏ ଏବଂ ପୁଞ୍ଜିବାଦ

ଦ୍ୱାରା ନିର୍ଯ୍ୟାତିତ ହେଉଥିବା ଶ୍ରେଣୀମାନଙ୍କର ସଂଗ୍ରାମର ଏକ ନୂତନ ରୂପ ଓ ଏକ ନୂତନ ସଂଗଠନ କପର ଜନ୍ମଲାଭ କରେ । ଏହି ନୂତନ ସଂଗଠନ ହେଉଛି ସୋଭିଏତ୍ ।

ତାପରେ ୧୯୧୭ ଖ୍ରୀଷ୍ଟାବ୍ଦର ଫେବ୍ରୁଆରୀ ମାସରେ ଓ ଅକ୍ଟୋବର ମାସରେ ଯେଉଁ ବିପ୍ଳବ ହେଲା ତା ଫଳରେ ସମଗ୍ର ଦେଶରେ ଏହି ସୋଭିଏତ୍ ଗୁଡ଼ିକର ସର୍ବାଙ୍ଗୀନ ବିକାଶ ଘଟିଲା ଏବଂ ସର୍ବହରା ସମାଜବାଦୀ ବିପ୍ଳବରେ ସେମାନଙ୍କର ବିଜୟ ପରିପୂର୍ଣ୍ଣ ହେଲା । ଆଉ ତାହାର ଦୁଇ ବର୍ଷରୁ କମ୍ ସମୟ ମଧ୍ୟରେ ଏହି ସୋଭିଏତ୍‌ଗୁଡ଼ିକର ଆନ୍ତର୍ଜାତିକ ଚରିତ୍ର ପରିସ୍ଫୁଟ ହୋଇ ଉଠିଲା, ସଂଗ୍ରାମ ସଂଗଠନର ଏହି ନୂତନ ରୂପ ବିଶ୍ୱ ଶ୍ରମିକଶ୍ରେଣୀ ଆନ୍ଦୋଳନ ଭିତରେ ପରିବ୍ୟାପ୍ତ ହୋଇଗଲା ଏବଂ ସାଧାରଣ ଭାବେ ବୁର୍ଜୁଆ ପାର୍ଲିମେଣ୍ଟାରୀ ପ୍ରଥା ଓ ବୁର୍ଜୁଆ ଗଣତନ୍ତ୍ରର ଉତ୍ତର ଉତ୍ତରାଧିକାରୀ, ଦାୟାଦ ଓ ଉତ୍ତରାଧିକାରୀ ରୂପେ ଏହି ସୋଭିଏତ୍ ଗୁଡ଼ିକର ଐତିହାସିକ ସ୍ୱରୂପ ଉଦ୍‌ଘାଟିତ ହୋଇଗଲା ।

କେବଳ ଏତିକି ନୁହେଁ, ଶ୍ରମିକ ଶ୍ରେଣୀ ଆନ୍ଦୋଳନର ଇତିହାସରୁ ବର୍ତ୍ତମାନ ଦେଖାଯାଏ ଯେ, ସବୁ ଦେଶରେ ଏଥର କମ୍ୟୁନିଜମ୍—ଯିଏ କି ବିକାଶ ଲାଭ କରୁଛି, ଶକ୍ତିଶାଳୀ ହୋଇ ଉଠୁଛି ଓ ବିଜୟ ପଥରେ ଆଗେଇ ଚାଲିଛି—ଏବଂ ପ୍ରଥମ ଓ ପ୍ରଧାନତଃ ( ପ୍ରତ୍ୟେକ ଦେଶରେ ) ତାର ନିଜର 'ମେନ୍‌ଶେଭିଜମ୍", ଅର୍ଥାତ ସୁବିଧାବାଦ ଓ ସାମାଜିକ ସଂକୀର୍ଣ୍ଣ ଜାତୀୟତାବାଦ ମଧ୍ୟରେ ଆଉ ଦ୍ୱିତୀୟତଃ ଏହାର ଏକ ପରିପୂରକ ରୂପେ "ବାମପନ୍ଥୀ" କମ୍ୟୁନିଜମ୍ ବିରୁଦ୍ଧରେ ସଂଗ୍ରାମ ଚାଲିବାକୁ ଯାଉଛି ( ଅବଶ୍ୟ ସଂଗ୍ରାମ ଆରମ୍ଭ ହୋଇଯାଇଛି ମଧ୍ୟ ) । ମେନ୍‌ଶେଭିଜମ୍ ବିରୁଦ୍ଧରେ କମ୍ୟୁନିଜମ୍‌ର ଏହି ସଂଗ୍ରାମ ବର୍ତ୍ତମାନ ସବୁ ଦେଶରେ ଆଗେଇ ଚାଲିଛି । କୌଣସି ଦେଶ ଏହି ସଂଗ୍ରାମରୁ ପ୍ରାୟ ବାଦ ପଡ଼ିନାହିଁ । ଏହି ସଂଗ୍ରାମ ଦ୍ୱିତୀୟ ଆନ୍ତର୍ଜାତିକ ( ଯାହା କି କାର୍ଯ୍ୟତଃ ମୃତ ) ବିରୁଦ୍ଧରେ ତୃତୀୟ ଅନ୍ତର୍ଜାତିକର ସଂଗ୍ରାମ ରୂପରେ ଚାଲିଛି । ଆଉ "ବାମପନ୍ଥୀ"

କମ୍ୟୁନିଜମ ବିରୁଦ୍ଧରେ ଏହି ସଂଗ୍ରାମ ବର୍ତ୍ତମାନ ଜର୍ମାନୀ, ଗ୍ରେଟବ୍ରିଟେନ, ଇଟାଲୀ, ଆମେରିକା (ଅନ୍ତତଃପକ୍ଷେ ଆମେରିକାର ବଡ଼ ଶିଳ୍ପ ଶ୍ରମିକ ସଂଗଠନର କେତେକ ଅଂଶ ଓ ଏନାର୍କିଷ୍ଟ–ସିଣ୍ଡିକାଲିଷ୍ଟ ଭାବାପନ୍ନ ବ୍ୟକ୍ତିମାନେ ବାମପନ୍ଥୀ କମ୍ୟୁନିଜମର ଭୁଲ ତ୍ରୁଟିକୁ ସମର୍ଥନ କରୁଛନ୍ତି ଅଥଚ ତା ସଙ୍ଗେ ସଙ୍ଗେ ସୋଭିଏତ ବ୍ୟବସ୍ଥାକୁ ପ୍ରାୟ ସଂପୂର୍ଣ୍ଣ ରୂପେ ଓ ଅକୁଣ୍ଠିତ ଚିତ୍ତରେ ଗ୍ରହଣ କରୁଛନ୍ତି) ଓ ଫ୍ରାନ୍ସରେ (ଯେଉଁଠି ଏକ ରାଜନୈତିକ ଦଳ ଓ ପାର୍ଲାମେଣ୍ଟାରୀ ବ୍ୟବସ୍ଥା ସଂପର୍କରେ ପ୍ରାକ୍ତନ ସିଣ୍ଡିକାଲିଷ୍ଟମାନଙ୍କର ଗୋଟାଏ ଗୋଷ୍ଠୀର ମନୋଭାବରୁ "ବାମପନ୍ଥୀ" କମ୍ୟୁନିଷ୍ଟ ଭାବଧାରା ପରିଲକ୍ଷିତ ହୁଏ, ଅଥଚ ସେମାନେ ମଧ୍ୟ ସୋଭିଏତ ବ୍ୟବସ୍ଥାକୁ ଗ୍ରହଣ କରନ୍ତି) ଚାଲିଛି। ଅନ୍ୟ କଥାରେ କହିବାକୁ ଗଲେ ଏହି ସଂଗ୍ରାମ କେବଳ ଆନ୍ତର୍ଜାତିକ ନୁହେଁ ବିଶ୍ୱବ୍ୟାପୀ କ୍ଷେତ୍ରରେ ମଧ୍ୟ ଚାଲିଛି।

ପ୍ରକୃତରେ ଦେଖିବାକୁ ଗଲେ ବୁର୍ଜୁଆଶ୍ରେଣୀ ବିରୁଦ୍ଧରେ ବିଜୟ ହାସଲ କରିବା ପାଇଁ ଶ୍ରମିକଶ୍ରେଣୀ ଆନ୍ଦୋଳନ କ୍ଷେତ୍ରରେ ଏହା ଏକ ପ୍ରକାର ପ୍ରସ୍ତୁତିମୂଳକ ଅଭିଜ୍ଞତା, ଏହି ଅଭିଜ୍ଞତା ଭିତର ଦେଇ ସବୁ ଦେଶର ଶ୍ରମିକ ଆନ୍ଦୋଳନକୁ ହିଁ ଆଗେ ଗତି କରିବାକୁ ପଡ଼ିବ। କିନ୍ତୁ ଶ୍ରମିକ-ଶ୍ରେଣୀର ଆନ୍ଦୋଳନ ସର୍ବତ୍ର ଏହି ପ୍ରସ୍ତୁତିମୂଳକ ଅଭିଜ୍ଞତା ଭିତରଦେଇ ଗତି କରୁଥିଲାବେଳେ ପ୍ରତ୍ୟେକ ଦେଶରେ ତାହା ନିଜସ୍ୱ ଏକ ଢଙ୍ଗରେ ଅଗ୍ରସର ହେଉଛି। ବଡ଼ ବଡ଼ ଉନ୍ନତ ପୁଂଜିବାଦୀ ଦେଶମାନେ ଏହି ଢଙ୍ଗରେ ବଲସେଭିଜମ ଅପେକ୍ଷା ଅଧିକ ଦ୍ରୁତ ଗତିରେ ଅଗ୍ରସର ହେଉଛନ୍ତି। କାରଣ ବିଜୟ ସକାଶେ ନୀତିକୁ ଏକ ସଚେତ ରାଜନୈତିକ ଭାବଧାରା ହିସାବରେ ପ୍ରସ୍ତୁତ କରିବା ପାଇଁ ବଲସେଭିଜମକୁ ଇତିହାସ ମାତ୍ର ପନ୍ଦରଟି ବର୍ଷ ମଂଜୁର କରିଥିଲା। ଏଇ ମାତ୍ର ଏବର୍ଷ ଭିତରେ ତୃତୀୟ ଆନ୍ତର୍ଜାତିକ ଏକ ନିର୍ଦ୍ଧିଷ୍ଟମୂଳକ ବିଜୟ ହାସଲ କରି ସାରିଲାଣି। ଯେଉଁ ଉଗ୍ରଜାତୀୟତାବାଦୀ କାମଲ ଦ୍ୱିତୀୟ ଆନ୍ତର୍ଜାତିକ ମାତ୍ର ଏଇ ଅଳ୍ପ

କେତେକ ମାସତଳେ ତୃତୀୟ ଆନ୍ତର୍ଜାତିକ ଅପେକ୍ଷା ଯଥେଷ୍ଟ ଶକ୍ତିଶାଳୀ ହୋଇ ରହିଥିଲ, ସ୍ଥାୟୀ ଓ ବଳିଷ୍ଠ ପଣ ମନେ ହେଉଥିଲ ଓ ସର୍ବବ୍ୟାପୀ ସମର୍ଥନ ବିଶ୍ୱ ବୁର୍ଜୁଆ ଶ୍ରେଣୀର ପ୍ରତ୍ୟକ୍ଷ ଓ ପରୋକ୍ଷ, ପାର୍ଥିବ ( ମନ୍ତ୍ରୀପଦ, ପାସପୋର୍ଟ ଓ ପ୍ରେସ ଇତ୍ୟାଦି ) ଓ ଆଦର୍ଶଗତ ସମର୍ଥନ ଲାଭ କରୁଥିଲ ତାହାକୁ ତୃତୀୟ ଆନ୍ତର୍ଜାତିକ ପରାସ୍ତ କରି ଦେଇଛି ।

ବର୍ତ୍ତମାନ ଅସଲ କଥା ହେଉଛି ପ୍ରତ୍ୟେକ ଦେଶର କମ୍ୟୁନିଷ୍ଟମାନଙ୍କୁ ଏଥର ଖୁବ୍ ସଚେତନ ଭାବେ ଦୁଇଟି ମୌଳିକ କର୍ତ୍ତବ୍ୟ ପ୍ରତି ଧ୍ୟାନ ଦେବାକୁ ପଡ଼ିବ । ଗୋଟିଏ ହେଉଛି ସୁବିଧାବାଦ ଓ "ବାମପନ୍ଥୀ" ହଠକାରୀତା ବିରୁଦ୍ଧରେ ସଂଗ୍ରାମ ଏବଂ ଅନ୍ୟଟି ହେଉଛି ପ୍ରତ୍ୟେକ ଦେଶରେ ଏହି ସଂଗ୍ରାମ କପରି ଭାବରେ ପରିସ୍ଫୁଟ ହୋଇ ଉଠୁଛି ଓ ସଂଗ୍ରାମର ବିଶେଷ ଲକ୍ଷଣଗୁଡ଼ିକ କ'ଣ । କାରଣ ପ୍ରତ୍ୟେକ ଦେଶର ଅର୍ଥନୀତି, ରାଜନୀତି, ସଂସ୍କୃତି, ଜାତୀୟ ଗଠନ ପ୍ରଣାଳୀ ( ଆୟର୍ଲଣ୍ଡ ଇତ୍ୟାଦି ), ତାର ଉପନିବେଶ, ଧର୍ମଗତ ବିଭାଗ ଇତ୍ୟାଦି ବିଶେଷ ଉପାଦାନ ଅନୁଯାୟୀ ପ୍ରତ୍ୟେକ ଦେଶରେ ଏହି ସଂଗ୍ରାମ ସ୍ୱତନ୍ତ୍ର ରୂପ ଧାରଣ କରିବ ଓ କରିବାକୁ ମଧ୍ୟ ବାଧ୍ୟ । ବର୍ତ୍ତମାନ ସବୁଠି ଆମେ ଲକ୍ଷ୍ୟ କରୁଛୁ ଯେ, ଦ୍ୱିତୀୟ ଆନ୍ତର୍ଜାତିକ ବିରୁଦ୍ଧରେ ଅସନ୍ତୋଷ ବୃଦ୍ଧି ପାଉଛି ଓ ବ୍ୟାପକ ହୋଇ ଉଠୁଛି । କାରଣ ଏହି ଦ୍ୱିତୀୟ ଆନ୍ତର୍ଜାତିକ ଏକ ସୁବିଧାବାଦୀ ନୀତି ଅନୁସରଣ କରୁଛି, ଆଉ ତା ଛଡ଼ା ସମଗ୍ର ପୃଥିବୀରେ ଏକ ସୋଭିଏତ୍ ସାଧାରଣତନ୍ତ୍ର ପ୍ରତିଷ୍ଠା କରିବା ପାଇଁ ବିପ୍ଳବୀ ସର୍ବହରା ଶ୍ରେଣୀ ଯେଉଁ ସଂଗ୍ରାମ ଚଳାଇଛି ତାହାର ଆନ୍ତର୍ଜାତିକ ରଣକୌଶଳର ଦିଗ୍‌ନିର୍ଣ୍ଣୟ କରିପାରିଲ ଭଳି ଏକ କେନ୍ଦ୍ରୀୟ ଓ ନେତୃସ୍ଥାନୀୟ ସଂସ୍ଥାଗଠନ କରିବାକୁ ଏହି ଦ୍ୱିତୀୟ ଆନ୍ତର୍ଜାତିକ ଏକାନ୍ତ ଅସମର୍ଥ ଓ ଅପାରଗ । କିନ୍ତୁ ଏକ୍ଷେତ୍ରରେ ଆମକୁ ସ୍ପଷ୍ଟଭାବେ ହୃଦୟଙ୍ଗମ କରିବାକୁ ପଡ଼ିବ ଯେ, ସଂଗ୍ରାମର ଏହି ଗତାନୁଗତିକ, ଯାନ୍ତ୍ରିକଭାବେ ସମୀକୃତ ଓ ସବୁଠି ସମାନ କୌଶଳଗତ ନିୟମାବଳୀକୁ ଭିତ୍ତି କରି ଯେପରି ଏକ ନେତୃସ୍ଥାନୀୟ କେନ୍ଦ୍ରୀୟ ସଂସ୍ଥା

କୌଣସିମତେ ଗଠନ କରାଯାଇ ପାରିବ ନାହିଁ । ଯେତେଦିନ ପର୍ଯ୍ୟନ୍ତ ଜାତି ଜାତି ଓ ଦେଶ ଦେଶ ମଧ୍ୟରେ ଜାତୀୟ ଓ ରାଷ୍ଟ୍ରଗତ ପାର୍ଥକ୍ୟ ରହିଥିବ—ଆଉ ସମସ୍ତ ପୃଥିବୀରେ ସର୍ବହରା ଏକାଧିପତ୍ୟ ଶାସନ ପ୍ରତିଷ୍ଠିତ ହେବାର ବହୁ ବର୍ଷ ପରେ ବି ଏହି ପାର୍ଥକ୍ୟ ତିଷ୍ଠି ରହିଥିବ—ସେତେଦିନ ପର୍ଯ୍ୟନ୍ତ ସବୁ ଦେଶର କମ୍ୟୁନିଷ୍ଟ ଶ୍ରମିକଶ୍ରେଣୀ ଆନ୍ଦୋଳନର ଆନ୍ତର୍ଜାତିକ ରଣକୌଶଳର ଏକତା ପ୍ରତିଷ୍ଠା କରିବାକୁ ହେଲେ ଏସବୁ ପାର୍ଥକ୍ୟ ଓ ବୈଚିତ୍ର୍ୟକୁ ଲୋପ କରିଦେବା, ଏସବୁ ଜାତୀୟ ପାର୍ଥକ୍ୟକୁ ଲୋପ କରିଦେବା ସମ୍ଭବ ନୁହଁ । ବରଂ ଏହି ଏକତା ପ୍ରତିଷ୍ଠା କରିବାକୁ ହେଲେ କମ୍ୟୁନିଜମର ମୌଳିକ ନୀତି ନିୟମକୁ ( ସୋଭିଏତ କ୍ଷମତା ଓ ସର୍ବହରା ଏକାଧିପତ୍ୟକୁ ) ଏପରି ଭାବେ ପ୍ରୟୋଗ କରିବାକୁ ହେବ ଯାହା ଦ୍ୱାରା କେତେକ ବିଶେଷ କ୍ଷେତ୍ରରେ ଏହି ନୀତି ନିୟମ ମଧ୍ୟ ନିର୍ଭୁଲ ଭାବେ ପରିବର୍ତ୍ତିତ ହୋଇ ପାରିବ ଏବଂ ତା ସଙ୍ଗେ ସଙ୍ଗେ ଏସବୁ ମୌଳିକ ନୀତି ନିୟମକୁ ଜାତିଗତ ଓ ଜାତୀୟ ରାଷ୍ଟ୍ରଗତ ପାର୍ଥକ୍ୟ ସହିତ ନିର୍ଭୁଲ ଭାବେ ଖାପ୍ ଖୁଆଇ ନେବାକୁ ପଡ଼ିବ ଓ ତଦନୁଯାୟୀ ତାକୁ ପ୍ରୟୋଗ କରିବାକୁ ପଡ଼ିବ । ବର୍ତ୍ତମାନ ଯେଉଁ ଐତିହାସିକ ଯୁଗ ଭିତର ଦେଇ ସବୁ ଉନ୍ନତ ଦେଶ ( କେବଳ ଉନ୍ନତ ଦେଶ ନୁହନ୍ତି ଅନ୍ୟମାନେ ମଧ୍ୟ ) ଗତି କରୁଛନ୍ତି ସେହି ଯୁଗର ପ୍ରଧାନ କର୍ମ ହେଉଛି—କେଉଁ ବାସ୍ତବ ପରିସ୍ଥିତିରେ ପ୍ରତ୍ୟେକ ଦେଶ କିଭଳି ସେହି ଏକକ ଆନ୍ତର୍ଜାତିକ କର୍ତ୍ତବ୍ୟ, ଅର୍ଥାତ୍, ଶ୍ରମିକ ଶ୍ରେଣୀ ଆନ୍ଦୋଳନ ଭିତରେ ଦେଖାଦେଇଥିବା ସୁବିଧାବାଦକୁ ଓ "ବାମପନ୍ଥୀ" ନୀତିବାଗୀଶତାକୁ ପରାସ୍ତ କରିବା, ବୁର୍ଜୁଆଶ୍ରେଣୀକୁ ଉଚ୍ଛେଦ କରିବା ଏବଂ ଏକ ସୋଭିଏତ୍ ସାଧାରଣତନ୍ତ୍ର ରାଷ୍ଟ୍ର ଓ ସର୍ବହରା ଏକାଧିପତ୍ୟ ଶାସନ ପ୍ରତିଷ୍ଠା କରିବାର କର୍ତ୍ତବ୍ୟ ସମ୍ପାଦନ ପଥରେ ଅଗ୍ରସର ହେଉଛନ୍ତି ସେହି ବାସ୍ତବ ପରିସ୍ଥିତିର ଜାତୀୟ ବୈଶିଷ୍ଟ୍ୟ, ଅତି ସୁନିର୍ଦ୍ଦିଷ୍ଟ ଜାତୀୟ ବୈଶିଷ୍ଟ୍ୟଗୁଡ଼ିକୁ ଅନ୍ୱେଷଣ କରିବା, ଅନୁସନ୍ଧାନ କରିବା, ଅନୁଧ୍ୟାନ କରିବା, ଉପଲବ୍ଧି କରିବା ଓ ଆୟତ୍ତ କରିବା । ଇତିମଧ୍ୟରେ ଶ୍ରମିକଶ୍ରେଣୀର ଅଗ୍ରସର ବାହିନୀକୁ ନିଜ ପକ୍ଷକୁ ଅଣାଯାଇ ପାରିଛି ବୋଲି ଧରିବାର କଥା-

ଯାଇପାରେ । କାରଣ ଏହି ଗ୍ରାମ୍ୟ ବାହିନୀ ପାର୍ଲାମେଣ୍ଟାରୀ ପ୍ରଥା ବର୍ଜନରେ ସୋଭିଏତ୍ ସରକାରର ପକ୍ଷ ଗ୍ରହଣ କରନ୍ତି, ବୁର୍ଜୁଆ ଗଣତନ୍ତ୍ର ବଦଳରେ ସର୍ବହରା ଏକାଧିପତ୍ୟଶାସନର ପକ୍ଷ ଗ୍ରହଣ କରନ୍ତି । ଏହା ଦ୍ୱାରା ମୁଖ୍ୟ କଥାଟି ହାସଲ ହୋଇଗଲା ବୋଲି ବିଶ୍ୱାସ କରାଯାଇପାରେ । କିନ୍ତୁ ଏହା ଦ୍ୱାରା ସବୁ ହାସଲ ହୋଇଗଲା ବୋଲି କୌଣସିମତେ ଭାବିବା ଠିକ୍ ହେବ ନାହିଁ । ଏହାର ପରବର୍ତ୍ତୀ ପଦକ୍ଷେପ ଉପରେ ସମସ୍ତ ଦୃଷ୍ଟି ନିବଦ୍ଧ କରିବାକୁ ପଡ଼ିବ, ସେ ଦିଗରେ ସମସ୍ତ ଉଦ୍ୟମ କେନ୍ଦ୍ରୀଭୂତ କରିବାକୁ ହେବ । ଏହି ପରବର୍ତ୍ତୀ ପଦକ୍ଷେପ ହେଉଛି ସର୍ବହରା ବର୍ଗ ବଦଳରେ ଉପର ସ୍ତରେ ଉପକ୍ରାନ୍ତ ହେବାକୁ ପଡ଼ିବ ଏବଂ ଏହି ବିପ୍ଳବ ଯାହା କି ରୂପ ଧାରଣ କରିବ ତାହାର ଅନ୍ୱେଷଣ କରିବା । ଏହି ପରବର୍ତ୍ତୀ ପଦକ୍ଷେପ ଅବଶ୍ୟ କେତେକ ଦୃଷ୍ଟିରୁ ଅପେକ୍ଷାକୃତ କମ୍ ମୌଳିକ ବୋଲି ମନେହୁଏ, କିନ୍ତୁ ପ୍ରକୃତରେ ତାହା ଆମର ବାସ୍ତବ କାର୍ଯ୍ୟ ସମ୍ପାଦନ ସହିତ ଅତି ଘନିଷ୍ଠ ଭାବେ ସଂଶ୍ଳିଷ୍ଟ ।

ସର୍ବହରା ଶ୍ରେଣୀର ଗ୍ରାମ୍ୟବାହିନୀକୁ ବର୍ତ୍ତମାନ ମତାଦର୍ଶଗତ ଦୃଷ୍ଟିରୁ କମ୍ୟୁନିଜମ୍ ପଥକୁ ଅଣାଯାଇପାରିଛି । ଏହା ହେଉଛି ମୁଖ୍ୟ କଥା । ଏହା ବିନା ବିଜୟ ପଥରେ ପ୍ରଥମ ପଦକ୍ଷେପ ବି ଗ୍ରହଣ କରିବା ସମ୍ଭବ ନୁହେଁ । ତଥାପି ବିଜୟର ମୁହୂର୍ତ୍ତ ଅତି ବହୁ ଦୂରରେ । କେବଳ ଗ୍ରାମ୍ୟବାହିନୀକୁ ନେଇ ବିଜୟ ହାସଲ କରାଯାଇ ପାରିବ ନାହିଁ । ସମଗ୍ର ସର୍ବହରା ଶ୍ରେଣୀ ଓ ବ୍ୟାପକ ଜନସାଧାରଣ ଚୂଡ଼ାନ୍ତ ସଂଗ୍ରାମ ଲାଗି ନିଜ ନିଜର ଆସ୍ଥାନ ଗ୍ରହଣ କରିବା ପୂର୍ବରୁ—ସେମାନେ ହୁଏତ ସର୍ବହରା ଶ୍ରେଣୀର ଗ୍ରାମ୍ୟବାହିନୀର ପ୍ରତ୍ୟକ୍ଷ ସମର୍ଥନରେ ଠିଆ ହୁଅନ୍ତୁ ନତୁବା ଅନ୍ତତଃପକ୍ଷେ ତା ସମ୍ପର୍କରେ ସହାନୁଭୂତିଶୀଳ ନିରପେକ୍ଷତା ଅବଲମ୍ବନ କରନ୍ତୁ, କିଛି ନହେଲେ ବି ସେମାନେ ଅନ୍ତତଃ ଶତ୍ରୁକୁ କୌଣସିମତେ ସାହାଯ୍ୟ ନ କରନ୍ତୁ—ଏହା ପୂର୍ବରୁ ଗ୍ରାମ୍ୟବାହିନୀକୁ ଏକାକୀ ଚୂଡ଼ାନ୍ତ ସଂଗ୍ରାମକୁ ପଠାଇ ଦେବା କେବଳ ଚରମ ନିର୍ବୋଧତା ନୁହେଁ, ଏକ ମସ୍ତବଡ଼ ଅପରାଧ ମଧ୍ୟ ହେବ । ଅତ ଏଣୁ

ସମଗ୍ର ଶ୍ରେଣୀ, ପୁଞ୍ଜି ଦ୍ୱାରା ନିପୀଡ଼ିତ ଏବଂ ଶ୍ରମଜୀବୀ ଜନସାଧାରଣ ଯେପରି ପ୍ରକୃତପକ୍ଷେ ଚଳନ୍ତ ସଂଗ୍ରାମ ଲାଗି ନିଜ ନିଜର ଅସ୍ଥାନ ଗ୍ରହଣ କରି ପାରିବେ ସେଥିଲାଗି କେବଳ ପ୍ରଚାର ଓ ଆନ୍ଦୋଳନ ଯଥେଷ୍ଟ ହେବନାହିଁ । ସେମାନଙ୍କୁ ଏହି ଅସ୍ଥାନରେ ଉପନୀତ ହେବାକୁ ହେଲେ ଜନସାଧାରଣଙ୍କର ନିଜସ୍ୱ ରାଜନୈତିକ ଅଭିଜ୍ଞତା ପ୍ରୟୋଜନ । ଏହାହିଁ ହେଉଛି ସବୁ ବଡ଼ବଡ଼ ବିପ୍ଳବର ମୌଳିକ ନିୟମ । ଏ ଉକ୍ତିର ସତ୍ୟତା କେବଳ ରୁଷିଆ ନୁହେଁ ଜର୍ମାନୀରେ ମଧ୍ୟ ଅତି ସ୍ପଷ୍ଟ ଓ ଅତି ଚମତ୍କାର ଭାବେ ବର୍ତ୍ତମାନ ପ୍ରମାଣିତ ହୋଇଯାଇଛି । ରୁଷିଆର ଅସଭ୍ୟ ଓ ଅଶିକ୍ଷିତ ଜନ-ସାଧାରଣଙ୍କୁ କେବଳ ନୁହେଁ, ଜର୍ମାନୀର ସଭ୍ୟ ଓ ଶିକ୍ଷିତ ଜନସାଧାରଣଙ୍କୁ ମଧ୍ୟ ନିଜର ଅତି ବେଦନାଦାୟକ ଅଭିଜ୍ଞତା ଭିତର ଦେଇ ହୃଦୟଙ୍ଗମ କରିବାକୁ ପଡ଼ିଲା ଯେ ଦ୍ରୁତତାର ସହିତ କମ୍ୟୁନିଜମ୍ ପଥରେ ସେମାନଙ୍କୁ ଅଗେଇ ଯିବାକୁ ହେଲେ ସର୍ବହରାର ଏକାଧିପତ୍ୟ ଶାସନ ଏକାନ୍ତ ପ୍ରୟୋଜନ । ତା ନହେଲେ ସେମାନଙ୍କୁ ଅତି ଅସହାୟଭାବେ, ଅତି ନିର୍ଜୀବ ଭାବେ ବୁର୍ଜୁଆ ଶ୍ରେଣୀର ଦାସ ହୋଇ ରହିବାକୁ ପଡ଼ିବ, ଦ୍ୱିତୀୟ ଆନ୍ତ-ର୍ଜାତିକର ବଡ଼ ପଣ୍ଡାମାନଙ୍କର ଅତି ଜଘନ୍ୟ ସରକାରକୁ ବରଦାସ୍ତ କରିବାକୁ ପଡ଼ିବ ଆଉ ଅତି ପ୍ରତିକ୍ରିୟାଶୀଳ ଶକ୍ତିମାନଙ୍କର ( ରୁଷିଆରେ କୋର୍ଣ୍ଣିଲଭ ଓ ଜର୍ମାନୀରେ କ୍ୟାପଗୋଷ୍ଠୀର ) ଏକଛତ୍ର ଶାସନକୁ ଅନିବାର୍ଯ୍ୟ ଭାବେ ବରଣ କରି ନେବାକୁ ପଡ଼ିବ ।

ତେଣୁ, ଆନ୍ତର୍ଜାତିକ ଶ୍ରମ ଆନ୍ଦୋଳନର ଶ୍ରେଣୀ ସଚେତନ ଅଗ୍ରଗାମୀ ବାହିନୀର, ଅର୍ଥାତ୍ ସବୁ କମ୍ୟୁନିଷ୍ଟ ପାର୍ଟି, ସବୁ କମ୍ୟୁନିଷ୍ଟ ଗୋଷ୍ଠୀ ଓ ସବୁ କମ୍ୟୁନିଷ୍ଟ ଭାବଧାରା ସମ୍ପନ୍ନ ବ୍ୟକ୍ତିମାନଙ୍କର ଆଶୁ କର୍ତ୍ତବ୍ୟ ହେଉଛି— ବ୍ୟାପକ ଜନସାଧାରଣଙ୍କୁ ( ଯେଉଁମାନେ କି ଅଧିକାଂଶ ଏ ପର୍ଯ୍ୟନ୍ତ ନିର୍ଜୀବ, ନିଷ୍କ୍ରିୟ, ନିସ୍ପୃହ ଓ ନିଦ୍ରାଚ୍ଛନ୍ନ ହୋଇ ରହିଛନ୍ତି ) ସେମାନଙ୍କର ଏହି ନୂତନ ଆସ୍ଥାନରେ ଆଗେଇ ନେଇ ପଦକ୍ଷେପ ଦେବାପାଇଁ ସାମର୍ଥ୍ୟ ହାସଲ କରିବାକୁ ପଡ଼ିବ, ତା ଅର୍ଥ ନିଜର ପାର୍ଟିକୁ କେବଳ ନୁହେଁ, ଏହି

ଜନସାଧାରଣଙ୍କୁ ମଧ୍ୟ ସେମାନଙ୍କର ଅନ୍ତର୍ଗତ ପଥରେ ଓ ସେମାନଙ୍କର ଅନ୍ତର୍ବର୍ତ୍ତୀକାଳୀନ ବିପ୍ଳବୀପର୍ଯ୍ୟାୟରେ ଆବଶ୍ୟକୀୟ ନେତୃତ୍ୱ ଦେଇ ନୂତନ ଆସ୍ଥାନରେ ପହଞ୍ଚାଇ ଦେବାପାଇଁ ସମର୍ଥ ହେବାକୁ ପଡ଼ିବ । କିନ୍ତୁ ସୁବିଧାବାଦ ଓ ସାମାଜିକ ଉଗ୍ର-ଜାତୀୟତାବାଦ ଉପରେ ଚୂଡ଼ାନ୍ତ ମତାଦର୍ଶଗତ ଓ ରାଜନୈତିକ ବିଜୟ ହାସଲ ନ କରି ଏହି ପ୍ରଥମ ଐତିହାସିକ କର୍ତ୍ତବ୍ୟ ( ଅର୍ଥାତ୍ ସୋଭିଏତ୍ କ୍ଷମତା ଓ ଶ୍ରମିକଶ୍ରେଣୀର ଏକାଧିପତ୍ୟ ଶାସନ ସପକ୍ଷରେ ସର୍ବହରାଶ୍ରେଣୀର ଶ୍ରେଣୀସଚେତନ ଗ୍ରୁମୁବାହିନୀକୁ ଜୟ କରି ଆଣିବାର କର୍ତ୍ତବ୍ୟ ) ସମ୍ପାଦନ କରିବା ସମ୍ଭବ ହେବ ନାହିଁ । ସେହିପରି ଦ୍ୱିତୀୟ କର୍ତ୍ତବ୍ୟ, ଯେଉଁ କର୍ତ୍ତବ୍ୟ କି ବର୍ତ୍ତମାନ ଏକ ଆଶୁ କର୍ତ୍ତବ୍ୟରେ ପରିଣତ ହୋଇଯାଇଛି, ଅର୍ଥାତ୍ ବିପ୍ଳବରେ ଗ୍ରୁମୁବାହିନୀର ବିଜୟକୁ ନିଶ୍ଚିତ କରିଦେବାପାଇଁ ଜନସାଧାରଣଙ୍କୁ ନୂଆ ଅସ୍ଥାନରେ ଆଣି ପହଞ୍ଚାଇ ଦେବାର ସାମର୍ଥ୍ୟ ହାସଲ କରିବା ଏହି ଆଶୁ କର୍ତ୍ତବ୍ୟକୁ ସମ୍ପାଦନ କରିବାକୁ ହେଲେ ବାମପନ୍ଥୀ ମତବାଗୀଶତାକୁ ନିର୍ମୂଳ କରିବାକୁ ହେବ, ତାର ସବୁ ଭୁଲତ୍ରୁଟିକୁ ଦୂର କରି ତାକୁ ସମ୍ପୂର୍ଣ୍ଣରୂପେ ପରାଜୟ କରିଦିବାକୁ ପଡ଼ିବ । ତା ନ ହେଲେ ଏହି ଦ୍ୱିତୀୟ କର୍ତ୍ତବ୍ୟ ସମ୍ପାଦନ କରିବା ସମ୍ଭବ ହେବ ନାହିଁ ।

ଯେତେଦିନ ପର୍ଯ୍ୟନ୍ତ ପ୍ରଶ୍ନ ଥିଲା ( ଆଉ ଯେତେ ଦୂର ଏପର୍ଯ୍ୟନ୍ତ ବି ଏହା ଏକ ପ୍ରଶ୍ନ ହୋଇରହିଛି ) ସର୍ବହରାଶ୍ରେଣୀର ଗ୍ରୁମୁବାହିନୀକୁ କମ୍ୟୁନିଜିମ ପକ୍ଷକୁ ଜୟ କରି ନେଇ ଆସିବା, ସେତେଦିନ ପର୍ଯ୍ୟନ୍ତ ଆମର ସଂଗ୍ରାମରେ ପ୍ରଚାରର ହିଁ ପ୍ରଥମ ସ୍ଥାନ ଲାଭ କରିଥିଲା । ଆଉ ଏଇ ପ୍ରଚାର କାର୍ଯ୍ୟରେ ଯାହା କିଛି ଦୋଷ ତ୍ରୁଟି ଥାଉନା କାହିଁକି ତାହା ଏହି ପରିସ୍ଥିତିରେ ଉପାଦେୟ ହୋଇଥିଲା ଓ ଫଳପ୍ରଦ ହୋଇଥିଲା । କିନ୍ତୁ ବର୍ତ୍ତମାନ ଯେତେବେଳେ ପ୍ରଶ୍ନ ହେଉଛି ଜନସାଧାରଣଙ୍କୁ ବାସ୍ତବ ସଂଗ୍ରାମ ଭିତରକୁ ଆଗେଇ ନେଇଯିବା, ଅର୍ଥାତ୍ ଅନ୍ୟ ଭାଷାରେ କହିବାକୁ ଗଲେ ଶେଷ ଓ ଚୂଡ଼ାନ୍ତ ଲଢ଼େଇ ଲାଗି ବିରାଟ ବିରାଟ ବାହିନୀକୁ ନେଇ ରଣାଙ୍ଗନରେ

ସମାବେଶ କରିବା, ସଂପୃକ୍ତ ସମାଜର ସବୁ ଶ୍ରେଣୀଶକ୍ତିଙ୍କୁ ଏକତ୍ର ଠୁଳ କରିବା, ସେତେବେଳେ କେବଳ ପ୍ରଚାରମୂଳକ କାର୍ଯ୍ୟ, "ନିର୍ଭେଳ" କମ୍ୟୁନିଜମର ବିଭିନ୍ନ ସତ୍ୟର ପୁନରାବୃତ୍ତି କେବଳ କୌଣସି କାମରେ ଆସିବ ନାହିଁ । ଏସବୁ ପରିସ୍ଥିତିରେ ନେତାଙ୍କୁ ଶହ ଶହ ସଂଖ୍ୟାରେ ଗଣିଲେ ଆଉ ଚଳିବ ନାହିଁ । କିନ୍ତୁ ଶ୍ରେଷ୍ଠ ଶ୍ରେଷ୍ଠ ଗୋଷ୍ଠୀର ପ୍ରଚାରକମାନେ ଯେଉଁମାନେ କି ଜନସାଧାରଣଙ୍କୁ କେବେ ସଂଗ୍ରାମ ପଥରେ ଆଗେଇ ନେଇ ନାହାନ୍ତି ସେମାନେ ବାସ୍ତବିକ ଏପରି କରିଥାନ୍ତି । ତେଣୁ ଏସବୁ ପରିସ୍ଥିତିରେ ନେତାଙ୍କୁ ଲକ୍ଷ ଲକ୍ଷ ସଂଖ୍ୟାରେ, କୋଟି କୋଟି ସଂଖ୍ୟାରେ କଳନା କରିବାକୁ ପଡ଼ିବ । ଏସବୁ ପରିସ୍ଥିତିରେ ଆମେ ବିପ୍ଳବୀ ଶ୍ରେଣୀର ଅଗ୍ରବାହିନୀଙ୍କୁ ହୃଦବୋଧ କରାଇପାରିବୁ କି ନାହିଁ କେବଳ ସେ ପ୍ରଶ୍ନ ନିଜକୁ ପଚାରିଲେ ଯଥେଷ୍ଟ ହେବ ନାହିଁ । ଆମକୁ ଆହୁରି ମଧ୍ୟ ପଚାରିବାକୁ ପଡ଼ିବ ଯେ, ସବୁ ଶ୍ରେଣୀର—କୌଣସି ଶ୍ରେଣୀକୁ ବାଦ ନ ଦେଇ ସଂପୃକ୍ତ ସମାଜର ସବୁ ଶ୍ରେଣୀର—ଐତିହାସିକ ଭାବେ କର୍ମକ୍ଷମ ଶକ୍ତିବର୍ଗ ଏପରି ଭାବେ ଜଡ଼ିତ ହୋଇ ରହିଛନ୍ତି କି ନାହିଁ ଯେଉଁଥିରେ କି ଚୂଡ଼ାନ୍ତ ଲଢ଼େଇ ପାଇଁ ସବୁ କିଛି ପରିପକ୍ୱ ହୋଇ ଉଠିଛି । ତା ଅର୍ଥ ସେମାନେ ଏପରି ଭାବେ ବିନ୍ୟସ୍ତ ହୋଇଥିବା ଦରକାର ଯେଉଁଥିରେ ପ୍ରଥମତଃ, ଆମ ପ୍ରତି ବୈରୀଭାବ ପୋଷଣ କରୁଥିବା ସବୁ ଶ୍ରେଣୀ ଯଥେଷ୍ଟ ଭାବେ ନିଜ ନିଜ ମଧ୍ୟରେ କଳହରତ ହୋଇ ପଡ଼ିଥିବେ, ପରସ୍ପର ମଧ୍ୟରେ ବରାବର ଝଗଡ଼ା ଚଳାଇଥିବେ ଏବଂ ନିଜର ଶକ୍ତି ବହିର୍ଭୂତ ଏକ ସଂଗ୍ରାମରେ ପ୍ରବୃତ୍ତ ହୋଇ ନିଜକୁ ଯଥେଷ୍ଟ ପରିମାଣରେ ଦୁର୍ବଳ କରି ଦେଇଥିବେ ; ଦ୍ୱିତୀୟତଃ, ସବୁ ଦ୍ୱିଧାନ୍ୱିତ, ଦୋଦୁଲ୍ୟମାନ, ଅସ୍ଥିରଚିତ୍ତ ଓ ମଧ୍ୟବର୍ତ୍ତୀ ଶକ୍ତିମାନେ ଅର୍ଥାତ୍ ବୁର୍ଜୁଆଶ୍ରେଣୀଠାରୁ ପୃଥକ ଥିବା ପେଟିବୁର୍ଜୁଆ ଓ ପେଟିବୁର୍ଜୁଆ ଗଣତନ୍ତ୍ରବାଦୀମାନେ ନିଜର ଦେଉଳିଆ କାର୍ଯ୍ୟକଳାପ ଜରିଆରେ ନିଜର ସ୍ୱରୂପକୁ ଜନସାଧାରଣଙ୍କ ଆଖିରେ ସମ୍ପୂର୍ଣ୍ଣରୂପେ ଉଦ୍‌ଘାଟିତ କରି ଦେଇ ପାରିଥିବେ ଓ ନିଜକୁ ଲଜ୍ଜିତ କରି ପାରିଥିବେ ; ଏବଂ ତୃତୀୟତଃ, ବୁର୍ଜୁଆଶ୍ରେଣୀ ବିରୁଦ୍ଧରେ ସର୍ବାଧିକ ଦୃଢ଼ ପ୍ରତିଜ୍ଞ, ସାହସିକ ଓ ବୈପ୍ଳବିକ ସଂଗ୍ରାମ ଚଳାଇବା

ସ୍ୱପକ୍ଷରେ ସଙ୍ଘବଦ୍ଧଶ୍ରେଣୀ ମଧ୍ୟରେ ଏକ ଶତ୍ରୁଚେତନା ଜାଗ୍ରତ ହୋଇ ଉଠିଥିବ ଏବଂ ତାହା ବୃଦ୍ଧି ପାଇବାକୁ ଆରମ୍ଭ କରିଥିବ । ତାହେଲେ ଯାଇ ବିପ୍ଳବ ପ୍ରକୃତରେ ପରିପକ୍ୱ ହୋଇ ଉଠିଛି ବୋଲି ଧରିବାକୁ ହେବ । ଉପରେ ସୂଚିତ ହୋଇଥିବା ଓ ସଂକ୍ଷେପରେ ବର୍ଣ୍ଣିତ ହୋଇଥିବା ସକଳ ଅବସ୍ଥାକୁ ଆମେ ଯଦି ନିର୍ଭୁଲ ଭାବେ କଳନା କରି ପାରିଥିବା ଓ ଯଥାର୍ଥ ମୁହୂର୍ତ୍ତଟିକୁ ଠିକ୍ ଭାବେ ବାଛି ନେଇ ପାରିଥିବା ତାହେଲେ ଆମର ବିଜୟ ବାସ୍ତବିକ ସୁନିଶ୍ଚିତ ବୋଲି ଧରିନେବାକୁ ହେବ ।

ନବେଳା କମ୍ୟୁନିଜମ, ଅର୍ଥାତ୍ ବାମପନ୍ଥୀ କମ୍ୟୁନିଜମ୍, ଅର୍ଥାତ୍ ଯେଉଁ କମ୍ୟୁନିଜମ୍ ଏପର୍ଯ୍ୟନ୍ତ କାର୍ଯ୍ୟକ୍ଷେତ୍ରରେ ଏକ ରଣ ଓ ରାଜନୈତିକ ସଂଗ୍ରାମ ଚଳାଇପାରିବାର ପ୍ରକୃତ ଆଦୌ ପରିପକ୍ୱ ହୋଇ ଉଠି ନାହିଁ ସେହି କମ୍ୟୁନିଜମର ଦୃଷ୍ଟିରେ ଏକ ପକ୍ଷରେ ଚର୍ଚ୍ଚିଲ୍ ଗୋଷ୍ଠୀ ଓ ଲଏଡ଼ ଜର୍ଜ ଗୋଷ୍ଠୀର ପାରସ୍ପରିକ ମତଭେଦ (ସାମାନ୍ୟ ଜାତିଗତ ପାର୍ଥକ୍ୟ ସହ ସେହି ପ୍ରକାରର ରାଜନୈତିକ ବ୍ୟକ୍ତିଗଣ ସବୁ ଦେଶରେ ଦେଖାଯାନ୍ତି) ଏବଂ ଅପର ପକ୍ଷରେ ହେଣ୍ଡରସନ ଗୋଷ୍ଠୀ ଓ ଲଏଡ଼ ଜର୍ଜ ଗୋଷ୍ଠୀର ପାରସ୍ପରିକ ମତଭେଦର କୌଣସି ଗୁରୁତ୍ୱ ନାହିଁ, ତାହା ଅତି ନଗଣ୍ୟ । କିନ୍ତୁ ବାସ୍ତବ ରଣ ସଂଗ୍ରାମର ଦୃଷ୍ଟିରୁ ଏସବୁ ମତଭେଦର ଯଥେଷ୍ଟ ଗୁରୁତ୍ୱ ରହିଛି, ଏସବୁ ମତଭେଦ ଅତୀବ ଗୁରୁତ୍ୱପୂର୍ଣ୍ଣ । ଯେଉଁ କମ୍ୟୁନିଷ୍ଟ କେବଳ ଏକ ଶ୍ରେଣୀସଚେତନ ଓ ପ୍ରତ୍ୟୟଶୀଳ ପ୍ରଚାରକ ହୋଇ ରହିବାକୁ ଚାହେଁ—ନାହିଁ, ସିଏ ଚାହେଁ ବିପ୍ଳବର କର୍ମକ୍ଷେତ୍ରରେ ଜନଗଣର ଜଣେ ବାସ୍ତବ ନେତା ହେବାକୁ ତାର ସମସ୍ତ କାମ ହେଉଛି, ତାର ସମସ୍ତ କର୍ତ୍ତବ୍ୟ ହେଉଛି ଏହି ସବୁ ମତଭେଦକୁ ହିସାବକୁ ନେବା, କେଉଁ ମୁହୂର୍ତ୍ତରେ ତଥାକଥିତ "ବନ୍ଧୁମାନଙ୍କର" ଏହି ସବୁ ଅନିବାର୍ଯ୍ୟ ସଂଘର୍ଷ, ଯାହାକି ସମଗ୍ର ଭାବେ ଏ ସମସ୍ତ ବନ୍ଧୁଙ୍କୁ ଦୁର୍ବଳ ଓ ହୀନବଳ କରି ଦିଏ, ସମ୍ପୂର୍ଣ୍ଣରୂପେ ପରିପକ୍ୱ ହୋଇ ଉଠୁଛି ତାହାକୁ ନିରୂପଣ କରିବା । କମ୍ୟୁନିଜମର ସ୍ୱପକ୍ଷ ପ୍ରତି ଗଭୀର ଭାବେ ଅନୁରକ୍ତ ରହିବା ସଙ୍ଗେ

ସେମାନେ କାର୍ଯ୍ୟକ୍ଷେତ୍ରରେ ପ୍ରତ୍ୟେକ ଜାତୀୟ ସମସ୍ତ ସାଲିସ ମଞ୍ଚ ଭରିବାକୁ ପଡ଼ିବ, ଛକାପଞ୍ଝା ନୀତି ଅନୁସରଣ କରିବାକୁ ପଡ଼ିବ, ଆପୋଷ ବୁଝାମଣା କରିବାକୁ ପଡ଼ିବ, ବଙ୍କାଟଙ୍କା ରାସ୍ତାରେ ଯିବାକୁ ପଡ଼ିବ ଦରକାର ପଡ଼ିଲେ ପଛ ଘୁଞ୍ଚାଇ ଦେବାକୁ ପଡ଼ିବ । ଏସବୁ କରି ମାଙ୍କେଲ ଭଳି ଆବଶ୍ୟକୀୟ ସାମର୍ଥ୍ୟ ହାସଲ କରିବାକୁ ପଡ଼ିବ । ତାହେଲେ ଯାଇ ହେଣ୍ଡରସନ ଗୋଷ୍ଠୀର ( ଦ୍ୱିତୀୟ ଅନ୍ତର୍ଜାତୀକର ନାୟକଗଣ, ନିଜକୁ ସୋଶାଲିଷ୍ଟ ବୋଲି କହୁଥିବା ପେଟିବୁର୍ଜୁଆ ସଙ୍ଗଠନର ପ୍ରତିନିଧିଗଣ, ବ୍ୟକ୍ତିଗତଭାବେ ସେମାନଙ୍କର ନାମୋଲ୍ଲେଖ ନିଷ୍ପ୍ରୟୋଜନ) କ୍ଷମତା ଦଖଲର ପ୍ରକ୍ରିୟା ଓ ତାପରେ ପରେ ରାଜନୈତିକ କ୍ଷମତାରୁ ସେମାନଙ୍କର ପତନର ପ୍ରକ୍ରିୟାକୁ ଦୃଷ୍ଟାନ୍ତ ଦିଆଯାଇ ପାରିବ ; କାର୍ଯ୍ୟକ୍ଷେତ୍ରରେ ସେମାନଙ୍କର ଚୂଡ଼ାନ୍ତ ଦେଉଳିଆପଣକୁ ପ୍ରମାଣ କରିଦେବାର ପ୍ରକ୍ରିୟାକୁ ଦୃଷ୍ଟାନ୍ତ କରାଯାଇ ପାରିବ, ଯାହାକି ଜନସାଧାରଣଙ୍କୁ ଆସନ୍ନ ବିପଦଧାରା ସମ୍ପର୍କରେ ସଚେତନ କରାଇଦେବ ଓ ସେମାନଙ୍କୁ କମ୍ୟୁନିଜମ୍ ଆଡ଼କୁ ଆଗେଇ ନେବ ; ହେଣ୍ଡରସନ ଗୋଷ୍ଠୀ, ଲଏଡ଼ ଜର୍ଜ ଗୋଷ୍ଠୀ ଓ ଚର୍ଚ୍ଚିଲ ଗୋଷ୍ଠୀ ( ମେନଶେଭିକ ଓ ସୋଶାଲିଷ୍ଟ ରେଭଲ୍ୟୁସନାରୀଗଣ, କନଷ୍ଟିଟ୍ୟୁସନାଲ ଡେମୋକ୍ରାଟଗଣ ଓ ରାଜତନ୍ତ୍ରୀଗଣ, ସିଡ଼ମ୍ୟାନ ଗୋଷ୍ଠୀର ବ୍ୟକ୍ତିବୃନ୍ଦ, ବୁର୍ଜୁଆଗଣ ଓ କ୍ୟାପିଟାଲିଷ୍ଟଗଣ ଇତ୍ୟାଦି )ର ପାରସ୍ପରିକ ଅନିବାର୍ଯ୍ୟ ଦଳାଦଳି, କଳହ, ସଂଘର୍ଷ ଓ ଚୂଡ଼ାନ୍ତ ବିଭେଦର ପ୍ରକ୍ରିୟାକୁ ଆହୁରି ଦୃଷ୍ଟାନ୍ତ ଦିଆଯାଇପାରିବ ; ଏବଂ "ବ୍ୟକ୍ତିଗତ ସଂପତ୍ତିର ପବିତ୍ର ଅଧିକାରର ଏହି ସ୍ରଷ୍ଟାମାନଙ୍କ" ମଧ୍ୟରେ ଲାଗିଥିବା ବିବାଦ ଯେଉଁ ମୁହୂର୍ତ୍ତରେ ଚୂଡ଼ାନ୍ତ ଆକାର ଧାରଣ କରିବ ସେହି ଉପଯୁକ୍ତ ମୁହୂର୍ତ୍ତକୁ ଠିକ୍ ଭାବେ ନିର୍ବାଚନ କରାଯାଇ ପାରିବ ଯାହାଦ୍ୱାରା କି ସର୍ବହରା ଶ୍ରେଣୀ ଠିକ୍ ସେହି ମୁହୂର୍ତ୍ତରେ ଏକ ଦୃଢ଼ ଢଙ୍ଗରେ ଆକ୍ରମଣ ଚଳାଇ ସେ ସମସ୍ତଙ୍କୁ ପରାଜିତ କରି ପାରିବ ଓ ରାଜନୈତିକ କ୍ଷମତା ଦଖଲ କରି ପାରିବ ।

ସାଧାରଣତଃ ଇତିହାସ ଏବଂ ବିଶେଷ କରି ବିପ୍ଳବଗୁଡ଼ିକର ଇତିହାସ ହେଉଛି ଆଧେୟ ଦୃଷ୍ଟିରୁ ଏତେ ସମୃଦ୍ଧ, ଏତେ ବୈଚିତ୍ର୍ୟମୟ, ଏତେ

ବହୁମୁଖୀ, ଏତେ ଜୀବନ୍ତ ଓ ଏତେ "ସୂକ୍ଷ୍ମ" ଯେ, ଏପରିକି ସର୍ବଶ୍ରେଷ୍ଠ ରାଜନୈତିକ ଦଳ ସମୂହ ଓ ସର୍ବାପେକ୍ଷା ଅଗ୍ରଗାମୀ ଶ୍ରେଣୀର ସର୍ବାଧିକ ଶ୍ରେଣୀସଚେତନ ଅଗ୍ରବାହିନୀ ପକ୍ଷରେ ମଧ୍ୟ ତାହା କଳ୍ପନା କରିବା ସମ୍ଭବ ନୁହେଁ । ଏହା ସହଜେ ଅନୁମେୟ । କାରଣ, ଅଗ୍ରବାହିନୀ ଗଣ, ସେମାନେ ଯେତେ ଶ୍ରେଷ୍ଠ ହେଲେ ବି, ସେମାନେ କେବଳ ହଜାର ହଜାର ଲୋକଙ୍କର ଶ୍ରେଣୀ ସଚେତନତା, ସଂକଳ୍ପ, ଆବେଗ ଓ କଳ୍ପନାକୁ ରୂପ ଦିଅନ୍ତି । ଅଥଚ ବିପ୍ଳବ ଯେତେବେଳେ ହୁଏ ସେତେବେଳେ ତାହା ହୁଏ ଏକ ବିଶେଷ ଅଭ୍ୟୁତ୍ଥାନର ମୁହୂର୍ତ୍ତରେ ଏବଂ ସେହି ଅଭ୍ୟୁତ୍ଥାନ ପର୍ବରେ ଆଉ ସକଳ ମାନବୀୟ ଶକ୍ତି ଓ ସାମର୍ଥ୍ୟର ପ୍ରୟୋଗ. କୋଟି କୋଟି ମଣିଷର ଶ୍ରେଣୀ ସଚେତନତା, ସଂକଳ୍ପ, ଆବେଗ ଓ କଳ୍ପନା—ଶ୍ରେଣୀମାନଙ୍କର ଏକ କଳ୍ପନାତୀତ ପ୍ରଚଣ୍ଡ ଓ ଶାଣିତ ସଂଗ୍ରାମର ତାଡ଼ନାରେ ସେମାନେ ସେମାନଙ୍କର ସକଳ ଶକ୍ତି ପ୍ରୟୋଗ କରନ୍ତି ଏହି ବିପ୍ଳବ ପାଇଁ । ଏଥିରୁ ଦୁଇଟି ଅତି ଗୁରୁତ୍ୱପୂର୍ଣ୍ଣ ବାସ୍ତବ ସିଦ୍ଧାନ୍ତ ପରିସ୍ଫୁଟ—ପ୍ରଥମରେ, ନିଜର କର୍ତ୍ତବ୍ୟ ସମ୍ପାଦନ କରିବାକୁ ହେଲେ ବିପ୍ଳବୀ ଶ୍ରେଣୀକୁ ବିନା ବ୍ୟତିକ୍ରମରେ ସାମାଜିକ କର୍ମତତ୍ପରତାର ସକଳ ରୂପ ବା ସକଳ ଦିଗକୁ ଅଧିକୃତ କରିବାକୁ ହେବ ( କ୍ଷମତା ଦଖଲ ପୂର୍ବରୁ ଯାହା ସେ କରିପାରି ନଥିବ ସେ ସବୁ କାମକୁ ଅନେକ ସମୟରେ ମହା ବିପଦର ସମ୍ମୁଖୀନ ହୋଇ ମଧ୍ୟ ତାକୁ କ୍ଷମତା ଦଖଲ ପରେ ପୂର୍ଣ୍ଣାଙ୍ଗ କରିବାକୁ ହେବ ); ଦ୍ୱିତୀୟରେ, ଅତି କ୍ଷିପ୍ର ଓ ଅପ୍ରତ୍ୟାଶିତ ଭାବେ ସଂଗ୍ରାମର ଗୋଟିଏ ରୂପରୁ ଅନ୍ୟ ଏକ ରୂପକୁ ଆଡେଇ ଯିବା ପାଇଁ ବୈପ୍ଳବିକ ଶ୍ରେଣୀକୁ ସର୍ବଦା ପ୍ରସ୍ତୁତ ହୋଇ ରହିବାକୁ ପଡ଼ିବ ।

ପ୍ରତ୍ୟେକ ବ୍ୟକ୍ତି ନିଶ୍ଚୟ ଏ ବିଷୟରେ ଏକମତ ହେବ ଯେ, ଯେଉଁ ସାମରିକ ବାହିନୀ ସବୁ ପ୍ରକାର ଅସ୍ତ୍ରଶସ୍ତ୍ର ପ୍ରୟୋଗ କରିବାର କୌଶଳରେ ନିଜକୁ ଶିକ୍ଷିତ କରିପାରେ ନାହିଁ, ଶତ୍ରୁର ଅଧୀନ ହେବାର ସମ୍ଭାବନା ଥିବା ସକଳ ପ୍ରକାରର ସାମରିକ କୌଶଳ ଓ ପଦ୍ଧତିକୁ ନିଜେ ଶିକ୍ଷା

କରିବା ପାଇଁ ସଚେଷ୍ଟ ହୋଇ ନାହିଁ, ସେ ଅତି ନିର୍ବୋଧ ଭଳି କାମ କରୁଛି, ଏପରିକି ଏକ ଅପରାଧୀ ଭଳି କାର୍ଯ୍ୟ କରୁଛି ବୋଲି ମଧ୍ୟ କୁହାଯାଇ ପାରେ। ଏହା ସତ୍ୟ, ଯୁଦ୍ଧ ଅପେକ୍ଷା ରାଜନୀତି ପ୍ରତି ଅଧିକ ଭାବେ ପ୍ରଯୁଜ୍ୟ। ଭବିଷ୍ୟତର କେତେକ ନିର୍ଦ୍ଦିଷ୍ଟ ପରିସ୍ଥିତିରେ କେଉଁ ପ୍ରକାରର ଯୁଦ୍ଧ କୌଶଳ ପ୍ରଯୁଜ୍ୟ ହେବ ଓ ଆମ ପକ୍ଷରେ ସହାୟକ ହେବ ସେ କଥା ରାଜନୀତି କ୍ଷେତ୍ରରେ ଆଗରୁ କହି ରଖିବା ତେର ବେଶି କଠିନ କାମ। ତେଣୁ ଆମେ ସବୁ ପ୍ରକାରର ଯୁଦ୍ଧ କୌଶଳକୁ ଅଭ୍ୟସ୍ତ ନ କଲେ ସାମାଜିକ ପରାଜୟ ଏପରିକି ଚୂଡ଼ାନ୍ତ ପରାଜୟ ମଧ୍ୟ ଆମେ ବରଣ କରି ନେବାର ବିପଦ ରହିଛି। କାରଣ ଆମ ଉପରେ ନିର୍ଭର କରୁ ନଥିବା ଅନ୍ୟାନ୍ୟ ଶ୍ରେଣୀମାନେ ସେମାନଙ୍କର ଅବସ୍ଥାନକୁ ପରିବର୍ତ୍ତନ କରି ଦେଇ ପାରନ୍ତି ଓ ଏପରି ସବୁ ଯୁଦ୍ଧ କୌଶଳ ପ୍ରୟୋଗ କରିପାରନ୍ତି ଯେଉଁଥିରେ କି ଆମେ ଅତି ଦୁର୍ବଳ। କିନ୍ତୁ ଆମେ ଯଦି ସବୁ ପ୍ରକାରର ଯୁଦ୍ଧ କୌଶଳକୁ ଆୟତ୍ତ କରିଥିବା ତାହେଲେ ଆମର ବିଜୟ ସୁନିଶ୍ଚିତ। ଏପରିକି ଶତ୍ରୁ ପାଇଁ ଯେଉଁ ସବୁ ଅସ୍ତ୍ରଶସ୍ତ୍ର ଅତ୍ୟନ୍ତ ମାରାତ୍ମକ ଓ ଯେଉଁ ସବୁ ଅସ୍ତ୍ରଶସ୍ତ୍ର ଶତ୍ରୁ ଉପରେ ମରଣାତ୍ମକ ଆଘାତ ହାଣିବାରେ ଅତି କ୍ଷିପ୍ର ସେ ସବୁ ଅସ୍ତ୍ରଶସ୍ତ୍ରକୁ ଶତ୍ରୁ ବିରୁଦ୍ଧରେ ପ୍ରୟୋଗ କରିବା ପାଇଁ ଆମେ ସୁଯୋଗ ନ ପାଇଲେ ମଧ୍ୟ ଆମର ବିଜୟ ସୁନିଶ୍ଚିତ; କାରଣ ଆମେ ହେଉଛୁ ସେଇ ଶ୍ରେଣୀର ପ୍ରତିନିଧି, ଯେଉଁ ଶ୍ରେଣୀର ସ୍ୱାର୍ଥର ପ୍ରତୀକ ଯେଉଁ ଶ୍ରେଣୀ ପ୍ରକୃତରେ ଅଗ୍ରଗାମୀ ଶ୍ରେଣୀ, ପ୍ରକୃତରେ ବିପ୍ଳବୀ ଶ୍ରେଣୀ। ଅନଭିଜ୍ଞ ବିପ୍ଳବୀମାନେ ଅନେକ ସମୟରେ ଭାବନ୍ତି ଯେ, ଆଇନଗତ ସଂଗ୍ରାମ ପଦ୍ଧତିର ଅନୁସରଣ ଏକ ସୁବିଧାବାଦୀ କଥା କାରଣ ଏ କ୍ଷେତ୍ରରେ ବୁର୍ଜୁଆ ଶ୍ରେଣୀ ଅନେକ ସମୟରେ (ବିଶେଷକରି "ଶାନ୍ତିପୂର୍ଣ୍ଣ" ଓ ଅବୈପ୍ଳବିକ ସମୟରେ) ଶ୍ରମିକମାନଙ୍କୁ ଠକି ଦିଏ ଓ ବୋକା ବନେଇ ଦିଏ। ସେମାନେ ଭାବନ୍ତି ଯେ ବେଆଇନ ସଂଗ୍ରାମ ପଦ୍ଧତିର ଅନୁସରଣ ହେଉଛି ବୈପ୍ଳବିକ କାମ। କିନ୍ତୁ ତାହା ସତ୍ୟ ନୁହେଁ। ସତ୍ୟ କଥା ହେଉଛି ଯେଉଁ ସବୁ ପାର୍ଟି ଓ ନେତା ପ୍ରୟୋଜନୀୟ ପରିସ୍ଥିତିରେ ବେଆଇନ ସଂଗ୍ରାମ ପଦ୍ଧତି ଅନୁସରଣ କରିବାକୁ ଅସମର୍ଥ ବା

ଅନଚ୍ଛୁକ ହୁଅନ୍ତି ( କରିପାରିବୁ ନାହିଁ ବୋଲି ନୁହେଁ, କରିବୁ ନାହିଁ ବୋଲି ପ୍ରକୃତରେ କହନ୍ତି ) ସେହିମାନେ ହିଁ ସୁବିଧାବାଦୀ କାମ କରନ୍ତି ଏବଂ ଶ୍ରମିକଶ୍ରେଣୀ ପ୍ରତି ବିଶ୍ୱାସଘାତକତା କରନ୍ତି । ଏପରି ଏକ ପରିସ୍ଥିତିର ଦୃଷ୍ଟାନ୍ତ ହେଉଛି ୧୯୧୪-୧୯୧୮ର ସାମ୍ରାଜ୍ୟବାଦୀ ଯୁଦ୍ଧ ସମୟରେ ଦେଖା ଦେଇଥିବା ପରିସ୍ଥିତି, ଯେତେବେଳେ କି ସ୍ୱାଧୀନତମ ଗଣତାନ୍ତ୍ରିକ ଦେଶ ଗୁଡ଼ିକର ବୁର୍ଜୁଆଶ୍ରେଣୀମାନେ ଅତି ଉଚ୍ଚତ ଆଉ ବଡ଼ର ଭାବେ ଶ୍ରମିକମାନଙ୍କୁ ପ୍ରତାରଣା କରୁଥିଲେ ଏବଂ ଯୁଦ୍ଧର ଲୁଣ୍ଠନକାରୀ ଚରିତ୍ରର ସତକଥାକୁ ଶ୍ରମିକମାନଙ୍କୁ ଆଦୌ ଜଣାଇ ଦେଉନଥିଲେ । କିନ୍ତୁ ଯେଉଁ ବିପ୍ଳବୀମାନେ ପ୍ରତ୍ୟେକ ରକମର ଆଇନଗତ ସଂଗ୍ରାମ ସହିତ ବେଆଇନ ସଂଗ୍ରାମ ପଦ୍ଧତିକୁ ସଂଯୋଗ କରିବା ପାଇଁ ଅକ୍ଷମ ସେମାନେ ବାସ୍ତବରେ ଅତି ନିକୃଷ୍ଟ ଧରଣର ବିପ୍ଳବୀ । ବିପ୍ଳବ ଯେତେବେଳେ ପ୍ରଜ୍ଜ୍ୱଳିତ ହୋଇ ଉଠିଥାଏ, ଯେତେବେଳେ ଚରମରେ ଯାଇ ପହଞ୍ଚି ଥାଏ, ଯେତେବେଳେ ସମସ୍ତେ ଯାଇ ଯୋଗ ଦେଉଥାନ୍ତି ବିପ୍ଳବରେ ସେତେବେଳେ ଜଣେ ବିପ୍ଳବୀ ବନିଯିବା କାହା ପକ୍ଷରେ କଷ୍ଟକର ନୁହେଁ । କାରଣ ବିପ୍ଳବରେ ସେତେବେଳେ ସମସ୍ତେ ଭାସିଯାନ୍ତି, ବିପ୍ଳବରେ ଯୋଗଦେବା ସେତେବେଳେ ଗୋଟାଏ ଫେଶନ ହୋଇଥାଏ ଏବଂ କେବେକେବେଳେ ଉଚ୍ଚାକାଂକ୍ଷାର ଫାଇଦା ଦୃଷ୍ଟିରୁ ମଧ୍ୟ କେତେକ ସ୍ୱାର୍ଥାନେ୍ୱଷୀ ବି ବିପ୍ଳବରେ ଯୋଗ ଦେଇଥାନ୍ତି । ଜୟ ହାସଲ କରିବା ପରେ ଏହି ସବୁ ଭଣ୍ଡ ବିପ୍ଳବୀମାନଙ୍କ କବଳରୁ ନିଜକୁ "ମୁକ୍ତ" କରିବା ଲାଗି ସର୍ବହରା ଶ୍ରେଣୀକୁ କଠୋର ଉଦ୍ୟମ କରିବାକୁ ପଡ଼ିବ, କହିବାକୁ ଗଲେ, ସେମାନଙ୍କର ନିର୍ଯ୍ୟାତନା ଭୋଗିବା ପାଇଁ ମଧ୍ୟ ତାକୁ ପ୍ରସ୍ତୁତ ହେବାକୁ ପଡ଼ିବ । କିନ୍ତୁ ଯେତେବେଳେ ପ୍ରତ୍ୟକ୍ଷ ଭାବେ, ପ୍ରକାଶ୍ୟ ଭାବେ ପ୍ରକୃତରେ ଏକ ଗଣ ଆନ୍ଦୋଳନ ଓ ବୈପ୍ଳବିକ ସଂଗ୍ରାମ ଚଳାଇବା ପାଇଁ ଆବଶ୍ୟକୀୟ ଅବସ୍ଥା ବିଦ୍ୟମାନ ନଥାଏ ସେତେବେଳେ ଜଣେ ବିପ୍ଳବୀ ହେବା ଏବଂ ଅବୈପ୍ଳବିକ ସଂସ୍ଥାଗୁଡ଼ିକରେ ଓ ଅନେକ ସମୟରେ ଅତି ପ୍ରତିକ୍ରିୟାଶୀଳ ସଂସ୍ଥାଗୁଡ଼ିକରେ ମଧ୍ୟ ଅଭ ତା ପୁଷ୍ଟି

ଅବୈପ୍ଳବିକ ପରିସ୍ଥିତିରେ ଓ ବୈପ୍ଳବିକ ସଂଗ୍ରାମର ପ୍ରୟୋଜନୀୟତାକୁ ସଙ୍ଗେ ସଙ୍ଗେ ଉପଲବ୍ଧି କରାଯାଇ ଅଥବା ଜନସାଧାରଣଙ୍କ ଭିତରେ କାମ କରି ବିପ୍ଳବର ସ୍ୱାର୍ଥକୁ ରକ୍ଷା କରିବା ( ପ୍ରଚାର, ଆନ୍ଦୋଳନ ଓ ସଂଗଠନ ଜରିଆରେ ) ଢେର ବେଶି କଷ୍ଟକର ଆଉ ତାହା ଢେର ବେଶି ଉପକାରୀ ମଧ୍ୟ । ତେଣୁ ଆଜି ପଶ୍ଚିମ ୟୁରୋପ ଓ ଆମେରିକାରେ କମ୍ୟୁନିଜମର ପ୍ରଧାନ କର୍ତ୍ତବ୍ୟ ହେଉଛି ସେହି ନିର୍ଦ୍ଦିଷ୍ଟ ପଥ ବା ସେହି ବିଶେଷ ଘଟଣାବଳୀର ସ୍ରୋତ ଜନତାକୁ ଏକ ବାସ୍ତବ, ଅନ୍ତିମ, ଚୂଡ଼ାନ୍ତ ଓ ପ୍ରକୃତରେ ଏକ ବିରାଟ ବୈପ୍ଳବିକ ସଂଗ୍ରାମ ଅଡ଼କୁ ଆଗେଇ ନେଇଯିବ ସେହି ପଥକୁ ଆବିଷ୍କାର କରିବା, ତାହାକୁ ଖୋଜଖୋଜ ବାହାର କରିବା, ତାହାକୁ ନିର୍ଭୁଲ ଭାବେ ନିର୍ଦ୍ଧାରଣ କରିବା ।

ଦୃଷ୍ଟାନ୍ତ ସ୍ୱରୂପ ଇଂଲଣ୍ଡ କଥା ଧରାଯାଉ । ସେଠାରେ କେତେ ଶୀଘ୍ର ଏକ ପ୍ରକୃତ ସର୍ବହରା ବିପ୍ଳବ ପ୍ରଜ୍ଜ୍ୱଳିତ ହୋଇ ଉଠିବ ଏବଂ କେଉଁ ଆଶୁ କାରଣ ସେଠାର ଉପସ୍ଥିତ ନିସ୍ତବ୍ଧ ବ୍ୟାପକ ଜନସାଧାରଣଙ୍କୁ ସଂଗ୍ରାମ ପଥରେ ଜାଗ୍ରତ, ଉଦ୍ଦୀପିତ ଓ ଅନୁପ୍ରାଣିତ କରିପାରିବ ସେ କଥା ଆମେ କହିପାରିବୁ ନାହିଁ କି କେହି ମଧ୍ୟ ଆଗରୁ କହିପାରିବ ନାହିଁ । ତେଣୁ ଆମର କର୍ତ୍ତବ୍ୟ ହେଉଛି ଆମର ପ୍ରସ୍ତୁତି କାର୍ଯ୍ୟ ଏପରି ଭାବେ ଆଗେଇ ନେବାକୁ ପଡ଼ିବ ଯେମିତି ଆମକୁ "ଘୋଡ଼ାର ଖୁରକ୍ଷୁରର ନାଲ ପିଟା ହୋଇ ତିଆରି ହୋଇ ରହିଥିବ" ( ସ୍ୱର୍ଗତ ପ୍ଲେଖାନୋଭ ମାର୍କ୍ସବାଦୀ ଓ ବିପ୍ଳବୀ ଥିଲାବେଳେ କଥାଟାକୁ ଏହିପରି ଭାବେ ବରାବର କହୁଥିଲେ ) ଆମକୁ ପ୍ରତି ମୁହୂର୍ତ୍ତରେ ଜାଗ୍ରତଥାଇ ହେଇ ଚଳିବାକୁ ପଡ଼ିବ । ହୁଏତ ଏହା ବି ହୋଇପାରେ ଯେ, ଚୋଟାଏ ପାର୍ଲାମେଣ୍ଟାରୀ ସଙ୍କଟ ଦ୍ୱାରା କିମ୍ବା ବର୍ତ୍ତମାନ ଯେଉଁଥିରୁ ଔପନିବେଶିକ ଓ ସାମ୍ରାଜ୍ୟବାଦୀ ଦ୍ୱନ୍ଦ୍ୱ ସମାଧାନକଷ୍ଟରେ ଅତିଶୟ ଜଟିଳ, ଅତିଶୟ ତୀବ୍ର ଓ ଯନ୍ତ୍ରଣାଦାୟକ ହୋଇ ଉଠୁଛି ସେଥିରୁ ଦ୍ୱନ୍ଦ୍ୱ ଜନିତ ଏକ ସଙ୍କଟ ଦ୍ୱାରା କିମ୍ବା ଅନ୍ୟ କୌଣସି ତୃତୀୟ କାରଣ ଦ୍ୱାରା ଏହି "ବନ୍ଧ ଭାଙ୍ଗ" ଯାଇପାରେ, ଏହି "ବରଫ ତରଳି" ଯାଇପାରେ । କେଉଁ ପ୍ରକାର ସଂଗ୍ରାମ ଦ୍ୱାରା

ଇଂଲଣ୍ଡରେ ସବହରା ବିପ୍ଳବର ଭାଗ୍ୟ ନିର୍ଦ୍ଧାରିତ ହେବ ସେକଥା ଆମେ ଏଠାରେ ଆଲୋଚନା କରୁନାହୁଁ ( ଏ ବିଷୟରେ ଜଣେ ହେଲେ କମ୍ୟୁନିଷ୍ଟର ବି କୌଣସି ସନ୍ଦେହ ନାହିଁ ; ଆମେ ଯେତେଦୂର ସଂପୃକ୍ତ ଏ ପ୍ରଶ୍ନ ଭୁଟିଯାଇଛି ଏବଂ ଚୂଡ଼ାନ୍ତ ଭାବେ ଭୁଟିଯାଇଛି ) । ଏଠାରେ ଆମର ଆଲୋଚ୍ୟ ବିଷୟ ହେଉଛି କେଉଁ ଆଶୁ କାରଣ ଉପସ୍ଥିତ ବିଷ୍ଟିସ୍ ସର୍ବହରା ଜନତାକୁ ଜାଗ୍ରତ କରିପାରିବ ଏବଂ ସେମାନଙ୍କୁ ବିପ୍ଳବର ସମ୍ମୁଖୀନ କରାଇ ଦେଇ ପାରିବ । ଆମର ଭୁଲିଯିବା ଅନୁଚିତ ଯେ ଫରାସୀ ବୁର୍ଜୁଆ ରିପବ୍ଲିକରେ, ଦୃଷ୍ଟାନ୍ତ ସ୍ୱରୂପ, ଗୋଟାଏ ଅତି 'ଅପ୍ରତ୍ୟାଶିତ' ଓ "ନଗଣ୍ୟ" ଆଶୁ କାରଣ ସେଠାର ଲୋକଙ୍କୁ ପ୍ରାୟ ଗୃହଯୁଦ୍ଧର ଉପକଣ୍ଠରେ ନେଇ ପହଞ୍ଚାଇ ଦେଇଥିଲା । ଅଥଚ ସେତେବେଳର ପରିସ୍ଥିତି ଉଭୟ ଆନ୍ତର୍ଜାତିକ ଓ ଜାତୀୟ ଦୃଷ୍ଟିକୋଣରୁ ବର୍ତ୍ତମାନର ପରିସ୍ଥିତି ଅପେକ୍ଷା ଶହେଗୁଣ କମ୍ ବୈପ୍ଳବିକ ଥିଲା ଆଉ ସେହି ଆଶୁ କାରଣଟି ହେଉଛି ଫରାସୀ ପ୍ରତିକ୍ରିୟାଶୀଳ ସାମରିକ ଗୋଷ୍ଠୀର ହଜାର ହଜାର ଅସାଧୁ କୌଶଳ ଭିତରୁ ମାତ୍ର ଗୋଟିଏ ( ଡ୍ରେଫୁ ମାମଲା ) ❋ ।

---

❋ ଡ୍ରେଫ୍ ମାମଲା—କ୍ୟାପ୍‌ଟେନ ଆଲ୍‌ଫ୍ରେଡ୍ ଡ୍ରେଫ୍ ନାମକ ଫରାସୀ ସେନାପତି ମଣ୍ଡଳୀର ଜଣେ ଯିହୁଦୀ ସାମରିକ କର୍ମଚାରୀଙ୍କୁ ଫ୍ରାନ୍ସର ପ୍ରତିକ୍ରିୟାଶୀଳ, ସାମରିକ, ରାଜତନ୍ତ୍ରୀ ଓ ପାଦ୍ରୀ ଗୋଷ୍ଠୀ ଦେଶଦ୍ରୋହିତାର ମିଥ୍ୟା ଅଭିଯୋଗରେ ୧୮୯୪ରେ ଆଜୀବନ କାରାଦଣ୍ଡ ହୁକୁମ କରିଦେଲେ କିନ୍ତୁ ଏହି ମାମଲାର ପୁନର୍ବିଚାର ଦାବୀ କରି ଫ୍ରାନସର ଶ୍ରମିକ ଶ୍ରେଣୀମାନେ ଏବଂ ବୁର୍ଜୁଆ-ଗଣତାନ୍ତ୍ରିକ ଭାବାପନ୍ନ ଶକ୍ତିମାନଙ୍କର ଅପେକ୍ଷାକୃତ ପ୍ରଗତିଶୀଳ ବ୍ୟକ୍ତିମାନେ ଏକ ଦୃଢ଼ ଅଭିଯାନ ଆରମ୍ଭ କରିଦେଲେ । ଏହି ପୁନର୍ବିଚାର ଦାବୀକୁ କେନ୍ଦ୍ର କରି ଯେଉଁ ସଂଗ୍ରାମ ଚାଲିଲା ତାହା ପ୍ରକୃତରେ ହେଉଛି ରାଜତନ୍ତ୍ରୀ ଓ ରିପବ୍ଲିକାନ୍‌ମାନଙ୍କ ମଧ୍ୟରେ ଏକ ସଂଗ୍ରାମ । ଅବଶେଷରେ ଏକ ଦୃଢ଼ ଓ ଦୀର୍ଘ ସଂଗ୍ରାମପରେ ଓ ଜନମତର ଚାପରେ ଡ୍ରେଫ୍‌ଙ୍କୁ କ୍ଷମା ଦିଆଗଲା ଓ ଦୋଷମୁକ୍ତ କରାଗଲା ।

ସୁତରାଂ, ଗ୍ରେଟ ବ୍ରିଟେନର କମ୍ୟୁନିଷ୍ଟମାନେ ପାର୍ଲାମେଣ୍ଟ ନିର୍ବାଚନଗୁଡ଼ିକୁ ଏବଂ ବ୍ରିଟିଶ ସରକାରର ଆସ୍ପୃର୍ଣ୍ଣ ସମର୍ଥିତ ନୀତି ତଥା ଔପନିବେଶିକ ଓ ବିଶ୍ୱ ସାମ୍ରାଜ୍ୟବାଦୀ ନୀତିର ବୈଷମ୍ୟକୁ ଆଉ ତା ସଙ୍ଗେ ସଙ୍ଗେ ସାଧାରଣ ରାଜନୈତିକ ଜୀବନର ଅନ୍ୟାନ୍ୟ ସବୁ କ୍ଷେତ୍ର ଓ ବିଭାଗର ସକଳ ବୈଷମ୍ୟକୁ ଜନତାର ସାମନାରେ ଲଗାଇବା ପାଇଁ ଅନବରତ, ଅବିଶ୍ରାନ୍ତ ଓ ଅବିଚଳ ଭାବେ ଉଦ୍ୟମ କରିବା ଦରକାର। ଏ ସବୁ କ୍ଷେତ୍ରରେ ସେମାନଙ୍କୁ ଏକ ନୂତନ ପନ୍ଥାରେ, ଏକ କମ୍ୟୁନିଷ୍ଟ ପନ୍ଥାରେ କାର୍ଯ୍ୟ କରିବାକୁ ପଡ଼ିବ—ଦ୍ୱିତୀୟ ଆନ୍ତର୍ଜାତିକ ନୁହେଁ ତୃତୀୟ ଆନ୍ତର୍ଜାତିକର ଚେତନାକୁ ନେଇ କାର୍ଯ୍ୟ କରିବାକୁ ପଡ଼ିବ। ପାର୍ଲାମେଣ୍ଟାରୀ ନିର୍ବାଚନରେ ଓ ପାର୍ଲାମେଣ୍ଟାରୀ ସଂଗ୍ରାମରେ ରୁଷୀୟ ବଲଶେଭିକମାନେ କିପରି ପଦ୍ଧତି ଅନୁସରଣ କରି ଅଂଶ ଗ୍ରହଣ କରୁଥିଲେ ସେ କଥା ବର୍ଣ୍ଣନା କରିବା ପାଇଁ ଏଠାରେ ମୋର ସମୟ ନାହିଁ କି ସ୍ଥାନ ନାହିଁ। କିନ୍ତୁ ବିଦେଶୀ କମ୍ୟୁନିଷ୍ଟମାନଙ୍କୁ ମୁଁ ଏତିକି ନିର୍ଭର ଭାବେ କହିପାରେ ଯେ, ପଶ୍ଚିମ ୟୁରୋପର ପ୍ରଚଳିତ ପାର୍ଲାମେଣ୍ଟାରୀ ଅଭିଯାନଠାରୁ ବଲଶେଭିକମାନଙ୍କର ଏହି ପଦ୍ଧତି ସମ୍ପୂର୍ଣ୍ଣ ଭିନ୍ନ। କିନ୍ତୁ, ବେଳେବେଳେ ଏହି କଥାକୁ ଆଳ କରି କେତେକେ ଦର୍ଶାନ୍ତି—"ଆରେ, ସେ ତ ରୁଷିଆ କଥା। କିନ୍ତୁ ଆମ ଦେଶରେ ପାର୍ଲାମେଣ୍ଟାରୀ ବ୍ୟବସ୍ଥା ସମ୍ପୂର୍ଣ୍ଣ ଭିନ୍ନ।" ଏପରି ଯୁକ୍ତି ପୂରାପୂରି ଭ୍ରମାତ୍ମକ। ଆଜି ଯେ ସବୁ ଦେଶରେ ତୃତୀୟ ଆନ୍ତର୍ଜାତିକର ସମର୍ଥକମାନେ, ଅର୍ଥାତ୍ କମ୍ୟୁନିଷ୍ଟମାନେ ରହିଛନ୍ତି ସେହି କାରଣରୁ ହିଁ ସର୍ବତ୍ର ଓ ଜୀବନର ସବୁ କ୍ଷେତ୍ରରେ ସେହି ପୁରୁଣା ସୋଶାଲିଷ୍ଟ ଟ୍ରେଡ୍‌ୟୁନିଅନ, ସିଣ୍ଡିକାଲିଷ୍ଟ ପାର୍ଲାମେଣ୍ଟାରୀ କାର୍ଯ୍ୟକୁ ବଦଳାଇ ଦେବାକୁ ପଡ଼ିବ ଆଉ ସେହି କାର୍ଯ୍ୟକୁ ଏକ ନୂତନ ଓ କମ୍ୟୁନିଷ୍ଟ କାର୍ଯ୍ୟରେ ପରିଣତ କରିବାକୁ ପଡ଼ିବ। ଆମର ରୁଷିଆରେ ମଧ୍ୟ ଆମେ ଦେଖିଛୁ ନିର୍ବାଚନ ସମୟରେ କିପରି ସୁବିଧାବାଦୀ କାମ ସବୁ ହୁଏ। ସୁରୋପର ବୁର୍ଜୁଆ ବ୍ୟବସାୟ କାରବାର କିପରି ହୁଏ, ସଂସ୍କାରବାଦୀ ଜନ୍ମିବେଶ କାରବାର କିପରି ହୁଏ। ପଶ୍ଚିମ ୟୁରୋପ ଓ ଆମେରିକାର କମ୍ୟୁନିଷ୍ଟମାନଙ୍କୁ ଶିଖିବାକୁ ପଡ଼ିବ ଏକ ନୂତନ, ଅସାଧାରଣ

ସୁବିଧାବାଦ ହେବ, ଅଭ୍ର ଅମୃସ୍ପାର୍ଥ ବନ୍ଧନ ପାର୍ଲାମେଣ୍ଟାରୀ ପ୍ରଥା କରିବ ସୃଷ୍ଟି
କରିବାକୁ ହବ। ସେଠାର କମ୍ୟୁନିଷ୍ଟ ପାର୍ଟିମାନଙ୍କୁ ସେଥିପାଇଁ ନିଜ
ନିଜର ସେ ଗଣ ପ୍ରଚାର କରିବାକୁ ହେବ। ଯେଉଁମାନେ ପ୍ରକୃତ ବିପ୍ଳବୀ
ସେମାନଙ୍କୁ, ଅସଂଗଠିତ ଓ ନିର୍ଯ୍ୟାତିତ ଗରିବ ଜନସାଧାରଣଙ୍କ ସାହାଯ୍ୟରେ,
ବୁର୍ଜୁଆଙ୍କ ଭେଦ ନୀତି ପ୍ରତିପକ୍ଷ ବାଣ୍ଟିବାକୁ ହେବ, ଶ୍ରମିକମାନଙ୍କର
ଘର ଘର ବୁଲି, ଦୂର ଦୂରାନ୍ତର ଗ୍ରାମଗୁଡ଼ିକରେ ଗ୍ରାମ୍ୟ ଶ୍ରମିକ ଓ କୃଷକ-
ମାନଙ୍କର କୁଡ଼ିଆ କୁଡ଼ିଆ ବୁଲି ପ୍ରଚାର କରିବାକୁ ହେବ ( ଗ୍ରେଟ ବ୍ରିଟେନ
ଦୁନିଆରେ ଯେତେ ବେଶି ଗ୍ରେଟ ଗ୍ରେଟ ସ୍ଥାନ ଅଛି ମୁରୁଗପରେ ସେତେ
ସ୍ଥାନ ନାହିଁ ଆଉ ଇଂଲଣ୍ଡରେ ତ ତା ଠାରୁ ଅଧିକ କମ୍ )। ସେମାନଙ୍କୁ ଅତି
ସାଧାରଣ ଲୋକଙ୍କଠାରୁ ଆରମ୍ଭ କରି ଟ୍ରେଡ୍ୟୁନିୟନ, ସମିତି ଓ ସଂଘ ଏବଂ
ସାମୟିକ ସଭା ଓ ବୈଠକ ଇତ୍ୟାଦି ପର୍ଯ୍ୟନ୍ତ, ଯେଉଁଠି ସାଧାରଣ ଲୋକେ
ସବୁ ସମବେତ ହୁଅନ୍ତି ସେ ସବୁ ସ୍ଥାନରେ ମଧ୍ୟ ପ୍ରବେଶ କରିବାକୁ ହେବ।
ସେଠାରେ ଲୋକଙ୍କ ସହିତ କଥାବାର୍ତ୍ତା କରିବାକୁ ହେବ, କିନ୍ତୁ ବୈଜ୍ଞାନିକ
ଭାଷାରେ ନୁହଁ ( ଆଉ ବେଶି ପାର୍ଲାମେଣ୍ଟାରୀ ଭାଷାରେ ମଧ୍ୟ ନୁହଁ )।
ପାର୍ଲାମେଣ୍ଟରେ "ଆସନ ଲାଭ" କରିବା ପାଇଁ ସେମାନେ ଆଦୌ ଉଦ୍ୟମ
କରିବା ଅନୁଚିତ। ବରଂ ସମସ୍ତ ଜନସାଧାରଣଙ୍କୁ ଜାଗ୍ରତ କରିବା ପାଇଁ,
ସେମାନଙ୍କୁ ସଂଗ୍ରାମ ଭିତରକୁ ଟାଣି ଆଣିବା ପାଇଁ ଏବଂ ବୁର୍ଜୁଆଶ୍ରେଣୀକୁ
ଯେଉଁ ସବୁ ପ୍ରତିଶ୍ରୁତି ଦେଇଛି ସେହି ପ୍ରତିଶ୍ରୁତି ସହିତ ବୁର୍ଜୁଆଶ୍ରେଣୀକୁ
ଆବଦ୍ଧ କରି ରଖିବା ପାଇଁ ସେମାନଙ୍କୁ ସବୁବେଳେ ଉଦ୍ୟମ କରିବାକୁ
ହେବ। ତା ସଙ୍ଗେ ସଙ୍ଗେ ବୁର୍ଜୁଆ ଶ୍ରେଣୀ ଯେଉଁ ନିର୍ବାଚନ ଯନ୍ତ୍ର
ଗଠନ କରିଛି, ଯେଉଁ ନିର୍ବାଚନ ପରିଚାଳନା କରୁଛି, ଜନସାଧାରଣଙ୍କୁ
ଯେଉଁ ସବୁ ଆବେଦନ ଜଣାଇଛି ସେଗୁଡ଼ିକୁ ନିଜ କାମରେ ଲଗାଇବା
ପାଇଁ ମଧ୍ୟ ସେମାନଙ୍କୁ ଉଦ୍ୟମ କରିବାକୁ ହେବ। ତା ଛଡ଼ା ବଲଶେଭିକମ
କ'ଣ ତାହା ଜନସାଧାରଣଙ୍କୁ ଏପରିଭାବେ ବୁଝାଇବାକୁ ହେବ ଯଦ୍ଵାରା
ସାଧାରଣତଃ ବୁର୍ଜୁଆ ଶାସନାଧୀନରେ ନିର୍ବାଚନ ସମୟ ବ୍ୟତୀତ ଅନ୍ୟ

କୌଣସି ସମୟରେ କେବେ ସମ୍ଭବ ହୋଇନଥାଏ । ଅବଶ୍ୟ, ବଡ଼ ବଡ଼ ଧର୍ମଘଟ ସମ୍ଭବ କଥା ଅଲଗା—ବୁଝିଥିବେ ବ୍ୟାପକ ଜନ ଆନ୍ଦୋଳନ ଗଢ଼ି ତୋଳିବା ପାଇଁ ଉଦ୍ଦେଶ୍ୟ ଅନୁରୂପ ଏକ ପ୍ରକାର ସଂଗଠନ ଢେର ବେଶି ବ୍ୟାପକ ଓ ଫଳପ୍ରଦ ଭାବେ କାର୍ଯ୍ୟ କରି ପାରିଥିଲା) । ପଶ୍ଚିମ ୟୁରୋପ ଓ ଆମେରିକାରେ ଏସବୁ କାମ କରିବା, ଅବଶ୍ୟ, ଖୁବ୍ କଷ୍ଟକର, ଖୁବ୍ ବେଶି କଷ୍ଟକର । ତଥାପି ସେଠାରେ ଏସବୁ କାମ କରୁଯାଇପାରିବ ଏବଂ କରିବାକୁ ମଧ୍ୟ ହେବ । କାରଣ କମ୍ୟୁନିଜମ୍ ଆଗରେ ଥିବା କର୍ତ୍ତବ୍ୟଗୁଡ଼ିକୁ ବିନା ପରିଶ୍ରମରେ କଦାପି ସଂପନ୍ନ କରାଯାଇପାରିବ ନାହିଁ । ତେଣୁ କମ୍ୟୁନିଷ୍ଟମାନଙ୍କର ଉଦ୍ୟମକୁ ପରିଚାଳିତ କରିବାକୁ ହେବ ଏସବୁ ବାସ୍ତବ କର୍ତ୍ତବ୍ୟକୁ କାର୍ଯ୍ୟକ୍ଷେତ୍ରରେ ସଂପନ୍ନ କରିବା ଦିଗରେ । ଏସବୁ ବାସ୍ତବ କର୍ତ୍ତବ୍ୟ ହେଉଛି ବହୁବିଧ, ତାହା ସାମାଜିକ ଜୀବନର ସକଳ ବିଭାଗ ସହିତ ଅତି ନିବିଡ଼ ଭାବେ ସଂଶ୍ଳିଷ୍ଟ । ସେହିପରି ଭାବେ ବିଭାଗ ପରେ ବିଭାଗ, କ୍ଷେତ୍ର ପରେ କ୍ଷେତ୍ର ବୁର୍ଜୁଆ କବଳରୁ ଜୟ କରି ଆଣିବାକୁ ହେବ ।

ତା ଛଡ଼ା ଗ୍ରେଟ୍ ବ୍ରିଟେନରେ ସାମରିକ ବାହିନୀର ସୈନ୍ୟମାନଙ୍କ ମଧ୍ୟରେ ଏବଂ "ନିଜ" ରାଷ୍ଟ୍ର ଅଧୀନରେ (ଆୟର୍ଲଣ୍ଡ ଉପନିବେଶ ଗୁଡ଼ିକରେ) ଥିବା ନିଷ୍ପେଷିତ ଓ ସମାନାଧିକାରରୁ ବଞ୍ଚିତ ଜାତିମାନଙ୍କ ମଧ୍ୟରେ ସ ପ୍ରଚାର, ଆନ୍ଦୋଳନାତ୍ମକ ପ୍ରଚାର ଓ ସାଂଗଠନିକ କାର୍ଯ୍ୟକୁ ଏହି ନୂତନ ପନ୍ଥାରେ (ସୋଶ୍ୟାଲିଷ୍ଟ ପନ୍ଥାରେ ନୁହେଁ, କମ୍ୟୁନିଷ୍ଟ ପନ୍ଥାରେ, ସଂସ୍କାରବାଦୀ ପନ୍ଥାରେ ନୁହେଁ, ବୈପ୍ଳବିକ ପନ୍ଥାରେ) ସଂଗଠିତ କରିବାକୁ ହେବ । କାରଣ ସାଧାରଣ ଭାବେ ସାମ୍ରାଜ୍ୟବାଦୀ ଯୁଗରେ ଏବଂ ବିଶେଷ କରି ବର୍ତ୍ତମାନର ଏହି ଯୁଦ୍ଧୋତ୍ତର ଯୁଗରେ, ଯେତେବେଳେ କି ଲୋକେ ଅତି ମର୍ମନ୍ତୁଦ ନିର୍ଯାତନା ଭୋଗୁଛନ୍ତି ଓ ସତ୍ୟ ସମ୍ପର୍କରେ ସେମାନଙ୍କର ଆଖି ଖୋଲିଯାଉଛି (ଅର୍ଥାତ୍, ପୃଥିବୀର ଅଧିକାଂଶ ଦେଶକୁ କେଉଁ ଡକାୟତଦଳ, ବ୍ରିଟିଶ ନା ଜର୍ମାନ୍ ଡକାୟତ ଦଳ ଲୁଣ୍ଠନ କରିବେ ସେ ବିଷୟ ବୁଝାଇବା ପାଇଁ

ଲେ ଲକ୍ଷ ଲକ୍ଷ ଲୋକଙ୍କୁ ଏଇ ପ୍ରଶ୍ନରେ ବଳିଦିଆଯାଉଛି ସେ ସମ୍ପର୍କରେ ସେମାନେ ସଚେତନ ହୋଇ ଉଠିଛନ୍ତି ) ଯେତେବେଳେ ସାମାଜିକ ଜୀବନର ସକଳ କ୍ଷେତ୍ରରେ ବିସ୍ଫୋରକ ଦ୍ରବ୍ୟ ଭରପୂର ହୋଇ ରହିଛି ଆଉ ତା ଫଳରେ ସଂଘର୍ଷ, ସଙ୍କଟ ଓ ଶୋଷିତ ଶ୍ରେଣୀ ସଂଗ୍ରାମର ଅଗଣିତ କାରଣ ସୃଷ୍ଟି ହେଉଛି । ଆଜି ଯେତେବେଳେ ବିଶ୍ୱବ୍ୟାପୀ ଅର୍ଥନୈତିକ ଓ ରାଜନୈତିକ ସଙ୍କଟ ଫଳରେ ସବୁ ଦେଶରେ ଅଗଣିତ ଅଗ୍ନିର ସ୍ଫୁଲିଙ୍ଗ ବିଚ୍ଛୁରିତ ହୋଇ ରହିଛି ସେତେବେଳେ କେଉଁ ସ୍ଫୁଲିଙ୍ଗଟିରୁ ବିପ୍ଳବର ଅଗ୍ନିଶିଖା ପ୍ରଜ୍ଜ୍ୱଳିତ ହୋଇ ଉଠିବ, ଅର୍ଥାତ୍ ଜନସାଧାରଣଙ୍କୁ ଜାଗ୍ରତ କରିଦେବ ତାହା ବର୍ତ୍ତମାନ ଆମେ ଜାଣିନାହୁଁ କି ଜାଣିପାରିବା ମଧ୍ୟ ସମ୍ଭବ ନୁହେଁ । ତେଣୁ ଆମର ଏହି ନୂତନ କମ୍ୟୁନିଷ୍ଟ ନୀତିକୁ ଅବଲମ୍ବନ କରି ଆମକୁ ସମସ୍ତଙ୍କୁ, ସବୁ କ୍ଷେତ୍ରକୁ, ଏପରିକି ଅତି ପୁରୁଣା, ଅତି ଅଳନ୍ଧୁଲଗା, ଅତି ଅସମ୍ଭବ କ୍ଷେତ୍ରଗୁଡ଼ିକୁ ମଧ୍ୟ "ଆଲୋକିତ କରିଦେବା" ପାଇଁ ଲାଗି ପଡ଼ିବାକୁ ହେବ । ତା ନ ହେଲେ ଆମର କର୍ତ୍ତବ୍ୟଗୁଡ଼ିକୁ ଆମେ ତୁଲାଇ ପାରିବା ନାହିଁ, ସବୁ ପ୍ରକାର କାମ କରି ପାରିଲା ଭଳି ସାମର୍ଥ୍ୟ ହାସଲ କରି ପାରିବା ନାହିଁ, ସବୁ ପ୍ରକାର ଅସ୍ତ୍ରଶସ୍ତ୍ରକୁ ଆୟତ୍ତ କରିପାରିବା ନାହିଁ ଏବଂ ବୁର୍ଜୁଆ-ଶ୍ରେଣୀ ଉପରେ ବିଜୟ ହାସଲ କରିବା ପାଇଁ ( ଯେଉଁ ବୁର୍ଜୁଆଶ୍ରେଣୀ କି ସାମାଜିକ ଜୀବନର ସବୁ ଦିଗକୁ ନିଜର ବୁର୍ଜୁଆ-ଢଙ୍ଗରେ ସଙ୍ଗଠିତ କରିଛି ଏବଂ ଯାହାକୁ ସେ ବର୍ତ୍ତମାନ ଅସଂଗଠିତ କରିଦେଇଛି ) କମ୍ୟୁନିଜମ୍ ହାସଲ ପରେ ଜୀବନର ପ୍ରତ୍ୟେକ ବିଭାଗର ଆସନ୍ନ କମ୍ୟୁନିଷ୍ଟ ପୁନର୍ସଂଗଠନ ପାଇଁ ନିଜକୁ ପ୍ରସ୍ତୁତ କରିପାରିବା ନାହିଁ ।

ରୁଷିଆରେ ସର୍ବହରା ବିପ୍ଳବ ସଙ୍ଘଟିତ ହେବା ପରଠାରୁ ଏବଂ ଆନ୍ତର୍ଜାତିକ କ୍ଷେତ୍ରରେ ତାର ବିଜୟ ପ୍ରତିଷ୍ଠିତ ହେବା ପରଠାରୁ (ଯାହାକି ବୁର୍ଜୁଆମାନେ ଓ ନିର୍ବୋଧ ବ୍ୟକ୍ତିମାନେ ଆଶା କରିନଥିଲେ) ସମସ୍ତ ଦୁନିଆ ପରିବର୍ତ୍ତିତ ହୋଇଯାଇଛି ଏବଂ ତା ସଙ୍ଗେ ସଙ୍ଗେ ସବୁଠି ବୁର୍ଜୁଆଶ୍ରେଣୀ

ଭିତରେ ବି ପରିବର୍ତ୍ତନ ଘଟିଯାଇଛି । ବର୍ତ୍ତମାନ "ବଲ୍‌ଶେଭିକମ୍‌ର" ନାମ ଶୁଣିଲେ ବୁର୍ଜୁଆଶ୍ରେଣୀର ହୃତ୍‌କମ୍ପ ହେଉଛି । ବଲ୍‌ଶେଭିକମ୍‌ ଉପରେ କ୍ରୁଦ୍ଧ ହୋଇ ସେ ଏକ ପ୍ରକାର ଉନ୍ମତ୍ତ ହୋଇ ଉଠିଛି । ଠିକ୍‌ ସେଇଥି ପାଇଁ ସେ ବର୍ତ୍ତମାନ ଏକ ପକ୍ଷରେ ଯନ୍ତ୍ରଣା ଦ୍ରବ୍ୟାଦିଙ୍କୁ ଅଧିକ ନିୟନ୍ତ୍ରିତ କରିଦେଉଛି ଏବଂ ଅପରପକ୍ଷରେ ପାଶବିକ ଶକ୍ତି ଦ୍ୱାରା ବଲ୍‌ଶେଭିକମ୍‌କୁ ଦମନ କରିବା ପାଇଁ ତାର ସମସ୍ତ ଶକ୍ତିକୁ ଠୁଳ କରୁଛି । ଆଉ ତଦ୍ୱାରା ଅନ୍ୟାନ୍ୟ ଅନେକ କ୍ଷେତ୍ରରେ ସେ ତାର ଆସ୍ଥାନକୁ ଦୁର୍ବଳ କରିଦେଉଛି । ତେଣୁ ନିଜର ସଂଗ୍ରାମ କୌଶଳକୁ ସ୍ଥିର କଲାବେଳେ ସବୁ ଉନ୍ନତ ଦେଶର କମ୍ୟୁନିଷ୍ଟମାନଙ୍କୁ ଏହି ଦୁଇଟି ଯାକ ପରିସ୍ଥିତି ପ୍ରତି ଯଥୋଚିତ ଦୃଷ୍ଟି ଦେବାକୁ ପଡ଼ିବ ।

ଯେତେବେଳେ କେରେନ୍‌ସ୍କି ଓ ରୁଷୀୟ କ୍ୟାଡ଼େଟ୍‌ମାନେ ବଲ୍‌ଶେଭିକ୍‌ମାନଙ୍କ ବିରୁଦ୍ଧରେ ହିଂସ୍ର ଚିତ୍କାର ଆରମ୍ଭ କରିଦେଲେ—ବିଶେଷ କରି ୧୯୧୭ ଏପ୍ରିଲ ମାସ ପରେ ଏବଂ ଜର୍ଦ୍ଧିଷ୍ଟ ସ୍ଥିତିର କନ୍ଧିବାକୁ ଗଲେ ୧୯୧୭ ଜୁନ ଓ ଜୁଲାଇ ମାସରେ—ସେତେବେଳେ ସେମାନେ "ଅତି-ମାତ୍ରାରେ" ତାହା କରିବସିଲେ । ଲକ୍ଷ ଲକ୍ଷ ସଂଖ୍ୟାରେ ବୁର୍ଜୁଆ ସମ୍ବାଦପତ୍ରରେ ସେମାନେ ବିଷୋଦ୍‌ଗୀରଣ କରିବାକୁ ଲାଗିଲେ । ତା ଛଡ଼ା ବୁର୍ଜୁଆମାନଙ୍କର "ଅତି ଉତ୍ସାହ" ଯୋଗୁଁ ସମସ୍ତ ଜନଜୀବନ ବଲ୍‌ଶେଭିକମ୍‌ ସମ୍ପର୍କୀୟ ଆଲୋଚନା ଓ ବିତର୍କରେ ପରିପୂର୍ଣ୍ଣ ହୋଇ ଉଠିଲା । ତା ଫଳରେ ଦେଶର ଜନସାଧାରଣ ବଲ୍‌ଶେଭିକମ୍‌ର ପ୍ରକୃତ ମୂଲ୍ୟକୁ ବିଚାର କରିବାକୁ ସୁଯୋଗ ପାଇଲେ । ସବୁ ଦେଶର କୋଟିପତି ମାନେ ବର୍ତ୍ତମାନ ଆନ୍ତର୍ଜାତିକ କ୍ଷେତ୍ରରେ ଅତି ବ୍ୟାପକଭାବେ ଯେପରି ଆଚରଣ କରୁଛନ୍ତି ତାହା, ଗୋଟାଏ ଦୃଷ୍ଟିରୁ ଦେଖିଲେ, ଆମର ଭଲ କରୁଛି । ତେଣୁ ସେମାନଙ୍କୁ ଆମର ଧନ୍ୟବାଦ ଦେବାର କଥା । କରେନ୍‌ସ୍କି ଗୋଷ୍ଠୀ ଯେମିତି ଉତ୍ସାହର ସହିତ ବଲ୍‌ଶେଭିକ୍‌ମାନଙ୍କ ପଛରେ ଲାଗିଥିଲେ ଏମାନେ ମଧ୍ୟ ବର୍ତ୍ତମାନ ଠିକ୍‌ ସେମିତି ଉତ୍ସାହରେ ବଲ୍‌ଶେଭିକ୍‌ମାନଙ୍କ

ପକ୍ଷରେ କରିଛନ୍ତି । ତା ଛଡ଼ା ସେମାନେ ଏହି କାମକୁ "ଅତିମାତ୍ରାରେ" କରୁଛନ୍ତି ଏବଂ ତଦ୍ଦ୍ୱାରା କେରେନସ୍କି ସାହାଯ୍ୟ କଲା ଭଳି ମଧ୍ୟ ଆମକୁ ସାହାଯ୍ୟ କରୁଛନ୍ତି । ଆଜି ଯେତେବେଳେ ଫରାସୀ ବୁର୍ଜୁଆ ଶ୍ରେଣୀ ବଲ୍‌ଶେଭିଜମ୍‌କୁ ନିର୍ବାଚନର ପ୍ରଧାନ ସମସ୍ୟା ରୂପେ ଉପସ୍ଥାପିତ କରୁଛି ଏବଂ ଅପେକ୍ଷାକୃତ ନରମ ବା ଦୋଦୁଲ୍ୟମାନ ସୋଶାଲିଷ୍ଟମାନଙ୍କୁ ବଲ୍‌ଶେଭିକ ବୋଲି ଗାଳି କରୁଛି ; ଆଜି ଯେତେବେଳେ ଆମେରିକାର ବୁର୍ଜୁଆ ଶ୍ରେଣୀ ପାଗଳ ପରି ହଜାର ହଜାର ଲୋକଙ୍କୁ ବଲ୍‌ଶେଭିକ ବୋଲି ସନ୍ଦେହ କରି ଧରପଗଡ଼ କରୁଛି, ସବୁଆଡ଼େ ଏକ ଜୋକୁଆ ଭୟ ସୃଷ୍ଟି କରୁଛି, ବଲ୍‌ଶେଭିକମାନଙ୍କର ତଥାକଥିତ ଷଡ଼ଯନ୍ତ୍ର ସମ୍ପର୍କରେ କପୋଳକଳ୍ପିତ କାହାଣୀମାନ ପ୍ରଚାର କରୁଛି ; ଆଜି ଯେତେବେଳେ ବ୍ରିଟିଶ ବୁର୍ଜୁଆ ଶ୍ରେଣୀ, ଯେ କି ସବୁଠାରୁ "ବଢ଼ା" ବୋଲି ପରିଚିତ, ସେତେବେଳେ ତାର ସମସ୍ତ ଅଭିଜ୍ଞତା ଓ ବିଜ୍ଞତା ସତ୍ତ୍ୱେ ଅତି ଅସମ୍ଭବ ରକମର ନିର୍ବୋଧ କାମ କରୁଛି, ଲକ୍ଷ ଲକ୍ଷ ଟଙ୍କା ଖଟାଇ "ବଲ୍‌ଶେଭିକ୍-ବିରୋଧୀ ସମିତିମାନ" ଗଠନ କରୁଛି, ବଲ୍‌ଶେଭିଜମ୍‌ ସମ୍ପର୍କରେ ଏକ ସ୍ୱତନ୍ତ୍ର ସାହିତ୍ୟ ସୃଷ୍ଟି କରୁଛି ଏବଂ ବଲ୍‌ଶେଭିଜମ୍‌ ବିରୁଦ୍ଧରେ ସଂଗ୍ରାମ କରିବା ଲାଗି ବହୁ ସଂଖ୍ୟକ ବୈଜ୍ଞାନିକ, ସାଧୁ ଓ ପ୍ରଚାରକଙ୍କୁ ଭଡ଼ାରେ ନିଯୁକ୍ତ କରୁଛି ସେତେବେଳେ ଏହି ପୁଞ୍ଜିବାଦୀ ଭଦ୍ରଲୋକମାନଙ୍କୁ ଆମର ଅତି ବିନମ୍ର ଭାବେ ଧନ୍ୟବାଦ ଜ୍ଞାପନ କରିବାର କଥା । କାରଣ ସେମାନେ ଆମ ପାଇଁ କାମ କରୁଛନ୍ତି । ବଲ୍‌ଶେଭିଜମ୍‌ର ସ୍ୱରୂପ ଓ ତାତ୍ପର୍ଯ୍ୟ ସମ୍ପର୍କରେ ଜନସାଧାରଣଙ୍କୁ ଆଗ୍ରହଶୀଳ କରାଇବାରେ ସେମାନେ ଆମକୁ ସାହାଯ୍ୟ କରୁଛନ୍ତି । ଆଉ ତା କରିବା ବିନା ସେମାନଙ୍କର ଅନ୍ୟ ଗତି ନାହିଁ । କାରଣ ନୀରବତା ଦ୍ୱାରା ବଲ୍‌ଶେଭିଜମ୍‌ର କଣ୍ଠରୋଧ କରିଦେବାକୁ ସେମାନେ ଅକ୍ଷମ ହୋଇ ସାରିଛନ୍ତି ।

କିନ୍ତୁ ତା ସଙ୍ଗେ ସଙ୍ଗେ ଏହି ବୁର୍ଜୁଆ ଶ୍ରେଣୀ କାର୍ଯ୍ୟତଃ ବଲ୍‌ଶେଭିଜମ୍‌ର ଗୋଟିଏ ଦିଗକୁ ମାତ୍ର ଦେଖୁଛି—ଅର୍ଥାତ୍ ବିଦ୍ରୋହ ଅଭ୍ୟୁତ୍ଥାନ, ହିଂସାତ୍ମକ

କାର୍ଯ୍ୟ ଓ ସନ୍ତ୍ରାସମୂଳକ କାର୍ଯ୍ୟକୁ କେବଳ ଦେଖୁଛି । ତେଣୁ ବିଶେଷ କରି ଏହି କ୍ଷେତ୍ରରେ ବଲଶେଭିଜମର ପ୍ରତିରୋଧ କରିବାକୁ ଓ ତାର ବିରୋଧ କରିବାକୁ ସେ ନିଜକୁ ପ୍ରସ୍ତୁତ କରୁଛି । ହୁଏତ କେତେକ କ୍ଷେତ୍ରରେ, କେତେକ ଦେଶରେ ଓ ସାମୟିକ ଭାବେ ସେ ଏ କାମରେ କୃତକାର୍ଯ୍ୟ ହୋଇପାରେ । ତେଣୁ ଏହି ସମ୍ଭାବନାକୁ ଆମକୁ ବରାବର ଆଖି ଆଗରେ ରଖିବାକୁ ହେବ ଆଉ ସେ କୃତକାର୍ଯ୍ୟ ହେଲେ ବି ଆମ ପକ୍ଷରେ ତାହା ସେମିତି କିଛି ଗୋଟାଏ ସାଂଘାତିକ ବ୍ୟାପାର ହୋଇଯିବ ନାହିଁ । କାରଣ ଜନ ଜୀବନର ସକଳ ବିଭାଗରୁ କମ୍ୟୁନିଜମ ନିର୍ଦ୍ଦିଷ୍ଟ ଭାବେ "ଜନ୍ମଲଭେ" କରେ । କହିବାକୁ ଗଲେ କମ୍ୟୁନିଜମର ଅଙ୍କୁର ସର୍ବତ୍ର ବିଦ୍ୟମାନ । ଏହି "ସଂକ୍ରାମକ ବ୍ୟାଧି" ( ବୁର୍ଜୁଆ ଶ୍ରେଣୀ ଓ ବୁର୍ଜୁଆ ପୁଲିସର ଏହା ଏକ ପ୍ରିୟତମ ଉପମା, ବଲ୍‌ଶେଭିଜମ୍‌କୁ ଏପରିଭାବେ ଚିତ୍ରଣ କରିବାକୁ ସେମାନଙ୍କୁ ଖୁବ୍ ଖୁସି ଲାଗେ ) ବର୍ତ୍ତମାନ ସମଗ୍ର ସଂସ୍ଥା ଭିତରକୁ ସମ୍ପୂର୍ଣ୍ଣରୂପେ ପଶି ଯାଇଛି ଏବଂ ତାକୁ ସମ୍ପୂର୍ଣ୍ଣ ରୂପେ ଗର୍ଭବତୀ କରି ଦେଇଛି । ଖୁବ୍ ଯତ୍ନର ସହିତ ଗୋଟାଏ ପଥକୁ ଯଦି "ବନ୍ଦ କରି ଦିଆଯାଏ" ତାହେଲେ ବି ଏହି "ସଂକ୍ରାମକ ବ୍ୟାଧି" ଆଉ ଗୋଟାଏ ପଥ ଦେଇ, ଏପରିକି ଏକ ଅପ୍ରତ୍ୟାଶିତ ପଥ ଦେଇ ନିଶ୍ଚୟ ପରିସ୍ଫୁଟ ହୋଇ ଉଠିବ । ଜୀବନ ନିଜକୁ ନିଶ୍ଚୟ ସାବ୍ୟସ୍ତ କରିବ । ବୁର୍ଜୁଆ ଶ୍ରେଣୀ ପାଗଳ ପରି ପ୍ରଳାପ କରୁ, କ୍ରୋଧରେ ଉନ୍ମତ୍ତ ହୋଇ ଉଠୁ, ଚରମ ପନ୍ଥା ଅନୁସରଣ କରୁ, ନିର୍ବୋଧ ଭୁଲ କାର୍ଯ୍ୟ କରୁ, ଆଗରୁ ସେ ବଲ୍‌ଶେଭିକମାନଙ୍କ ଉପରେ ଦାଉ ସାଧି ନେଉ ଏବଂ ବିଗତ କାଳର ଓ ଆଗାମୀ କାଳର ଅନେକ ଶହ ଶହ, ହଜାର ହଜାର, ଲକ୍ଷ ଲକ୍ଷ ବଲ୍‌ଶେଭିକମାନଙ୍କୁ ହତ୍ୟା କରିବାପାଇଁ ( ଭାରତ, ହଙ୍ଗେରୀ, ଜର୍ମାନୀ ପ୍ରଭୃତି ଦେଶରେ ) ଚେଷ୍ଟା କରୁପଛେ ସେଥିରେ କିଛି ଯାଏ ଆସେ ନାହିଁ । କାରଣ ଯେଉଁ ସବୁ ଶ୍ରେଣୀର ଲଲାଟରେ ଇତିହାସ ମୃତ୍ୟୁର ମୋହର ମାରି ଦେଇଥାଏ ସେହି ସବୁ ଶ୍ରେଣୀ ହିଁ ଏପରି କାମ କରନ୍ତି ଆଉ ବୁର୍ଜୁଆ ଶ୍ରେଣୀ ମଧ୍ୟ ସେହି କାମ କରୁଛି । କମ୍ୟୁନିଷ୍ଟମାନେ ଜାଣିରଖିବା ଉଚିତ ଯେ, ଭବିଷ୍ୟତ ହେଉଛି ସେମାନଙ୍କର । ତେଣୁ ଆମକୁ ନିବିଡ଼ ଗଭୀର ଆବେଗ

ଓ ନିଷ୍ଠାର ସହିତ ଏହି ମହାନ ବୈପ୍ଳବିକ ସଂଗ୍ରାମ ପରିଚାଳନା କରିବାକୁ ହେବ ଆଉ ତା ସଙ୍ଗେ ସଙ୍ଗେ ବୁର୍ଜୁଆ ଶ୍ରେଣୀର ଏହି ଉନ୍ମତ୍ତ ପ୍ରଳାପକୁ ଧୀର ସ୍ଥିର ଚିତ୍ତରେ ବିଚାରକୁ ନେବାକୁ ହେବ । ଆମେ ତାହା କରି ପାରିବା ମଧ୍ୟ । ୧୯୦୫ରେ ରୁଷୀୟ ବିପ୍ଳବ ଖୁବ୍ ନିର୍ମମ ଭାବେ ପରାଜିତ ହୋଇଥିଲା । ୧୯୧୭ ଜୁଲାଇରେ ରୁଷୀୟ ବଲ୍‌ଶେଭିକ୍‌ମାନେ ପରାଜିତ ହୋଇଥିଲେ । ବୁର୍ଜୁଆ ଶ୍ରେଣୀ ଓ ରାଜତନ୍ତ୍ରୀ ସେନାପତିମାନଙ୍କ ସହିତ ମିଳିମିଶି ସିଡ଼ିମ୍ୟାନ ଓ ନୋସ୍କେ ଯେଉଁ ଧୂର୍ତ୍ତ ପ୍ରରୋଚନାମୂଳକ କାର୍ଯ୍ୟ କଲେ ଓ ଯେଉଁ ସୁଚତୁର କୌଶଳ କଲେ ତା ଫଳରେ ୧୫ ହଜାର ଜର୍ମାନ କମ୍ୟୁନିଷ୍ଟଙ୍କୁ ଏକ ବିଭତ୍ସ ହତ୍ୟା ଲୀଳାର ଶୀକାର ହେବାକୁ ପଡ଼ିଲା । ଅଧୁ ଏବେ ଫିନଲଣ୍ଡ ଓ ହଙ୍ଗେରୀରେ ପ୍ରତିକ୍ରିୟାଶୀଳ ଶାସକଗୋଷ୍ଠୀର ନିର୍ମମ ଆତଙ୍କରାଜ ଚାଲିଛି । ତଥାପି ସବୁ କ୍ଷେତ୍ରରେ ଓ ସବୁ ଦେଶରେ କମ୍ୟୁନିଜମ ବର୍ତ୍ତମାନ ବିସ୍ତାର ଲାଭ କରୁଛି ଓ ଇସ୍ପାତ ଭଳି ଶକ୍ତ ହୋଇ ଉଠୁଛି । ଜନସାଧାରଣଙ୍କ ଭିତରେ ତାର ଚେରମୂଳ ଏତେ ଗଭୀର ଭାବେ ପ୍ରୋଥିତ ହୋଇ ରହିଛି ଯେ କୌଣସି ପ୍ରକାର ଦମନଲୀଳା ତାକୁ ଦୁର୍ବଳ କରି ପାରୁନାହିଁ, ତାକୁ ହୀନବଳ କରିପାରୁ ନାହିଁ, ବରଂ ତାକୁ ଶକ୍ତିଶାଳୀ ଓ ଦୃଢ଼ୀଭୂତ କରି ଦେଉଛି । କେବଳ ଗୋଟିଏ ଅଭାବ ରହିଯାଉଛି ଯେଉଁଥିପାଇଁ ଆମେ ଅଧିକ ପ୍ରତ୍ୟୟର ସହିତ, ଆହୁରି ଦୃଢ଼ତାର ସହିତ ବିଜୟ ପଥରେ ଅଗ୍ରସର ହୋଇ ପାରୁନାହୁଁ । ସେହି ଅଭାବ ହେଉଛି— ନିଜର ସଂଗ୍ରାମ କୌଶଳରେ ସର୍ବାଧିକ ନମନୀୟତା ବା ସଂପ୍ରସାରଣଶୀଳତା ପ୍ରଦର୍ଶନ କରିବାର ପ୍ରୟୋଜନୀୟତାକୁ ସବୁ କମ୍ୟୁନିଷ୍ଟ ସଚେତ ଓ ସମ୍ପୂର୍ଣ୍ଣରୂପେ ହୃଦୟଙ୍ଗମ କରିପାରୁନାହାନ୍ତି । ଯେଉଁ କମ୍ୟୁନିଷ୍ଟ ଆନ୍ଦୋଳନ ବର୍ତ୍ତମାନ ଅତି ବିସ୍ମୟକର ଭାବେ ଅଗେଇ ଆଗେଇ ଚାଲିଛି, ବିଶେଷ କରି ଉନ୍ନତ ଦେଶଗୁଡ଼ିକର ଅତି ବିସ୍ମୟକର ଭାବେ ଆଗେଇ ଚାଲିଛି ସେ ଏହି କଥାକୁ ହୃଦୟଙ୍ଗମ କରି ପାରୁନାହିଁ ଏବଂ କାର୍ଯ୍ୟକ୍ଷେତ୍ରରେ ତାହାକୁ ପ୍ରୟୋଗ କରିବାର ସାମର୍ଥ୍ୟ ହାସଲ କରିପାରୁ ନାହିଁ ।

କାଉଟ୍ସ୍କି, ଅଟ୍ଟୋ ବାଉଏର ଓ ଅନ୍ୟମାନଙ୍କ ପରି ଦ୍ୱିତୀୟ ଆନ୍ତର୍ଜାତିକର ନେତାଗଣ, ଯେଉଁମାନେ କି ମାର୍କ୍ସବାଦରେ ଗଭୀର ପାଣ୍ଡିତ୍ୟ ଅର୍ଜନ କରିଥିଲେ ଓ ସମାଜବାଦ ପ୍ରତି ଗଭୀର ଭାବେ ଅନୁରକ୍ତ ଥିଲେ, ସେମାନଙ୍କର ଯେଉଁ ଦଶା ହେଲା ତାହା ଆମ୍ଭମାନଙ୍କ ପକ୍ଷରେ ଏକ ଶିକ୍ଷା ହୋଇ ପାରିବ ଓ ହେବା ମଧ୍ୟ ଉଚିତ । ନମନୀୟ କୌଶଳର ପ୍ରୟୋଜନୀୟତାକୁ ସେମାନେ ସମ୍ପୂର୍ଣ୍ଣରୂପେ ହୃଦୟଙ୍ଗମ କରୁଥିଲେ, ମାର୍କସୀୟ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦକୁ ସେମାନେ ନିଜେ ଶିକ୍ଷା କରିଥିଲେ ଏବଂ ଅନ୍ୟମାନଙ୍କୁ ମଧ୍ୟ ସେ ବିଷୟରେ ଶିକ୍ଷା ଦେଉଥିଲେ (ଏ ବିଗରେ ସେମାନେ ଯାହା କରିଛନ୍ତି ସେଥି ମଧ୍ୟରୁ ଅନେକ ଚିର ଦିନ ପାଇଁ ସମାଜବାଦୀ ସାହିତ୍ୟ ପ୍ରତି ଏକ ମୂଲ୍ୟବାନ ଅବଦାନ ହୋଇ ରହିବ) । କିନ୍ତୁ ଏହି ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦକୁ ପ୍ରୟୋଗ କରିବାରେ ସେମାନେ ଏପରି ଭୁଲ କରି ବସିଲେ କିମ୍ବା କାର୍ଯ୍ୟକ୍ଷେତ୍ରରେ ତାର ଏପରି ବିରୁଦ୍ଧାଚରଣ କଲେ ଏବଂ ଅତି କ୍ଷିପ୍ର ଗତିରେ ପରିବର୍ତ୍ତିତ ହୋଇ ଯାଉଥିବା ରୂପ ବା ଆଧାରକୁ ଓ ପୁରାତନ ଆଧାର ଉପରେ ଅତି ଦ୍ରୁତ ଭାବେ ଗଢ଼ି ଉଠୁଥିବା ନୂତନ ଅଧେୟକୁ ଦେଖି-ପାରିବାରେ ଏପରି ଅକ୍ଷମତା ପ୍ରଦର୍ଶନ କଲେ ଯେ ଅବଶେଷରେ ସେମାନଙ୍କର ଦଶା ମଧ୍ୟ ହିଣ୍ଡମ୍ୟାନ, ଗ୍ୟୁସ୍‌ଦେ ଓ ପ୍ଲେଖାନୋଭଙ୍କ ଦଶା ପରି ହୋଇଗଲା ।

ସେମାନଙ୍କର ଏହି ଦେଉଳିଆ ପଣର ମୁଖ୍ୟ କାରଣ ହେଲା ସେମାନେ ଶ୍ରମିକଶ୍ରେଣୀ ଓ ସୋଶାଲିଷ୍ଟ ଆନ୍ଦୋଳନର ବିକାଶର ଗୋଟିଏ ମାତ୍ର ନିର୍ଦ୍ଦିଷ୍ଟ ରୂପରେ "ମନ୍ତ୍ରମୁଗ୍ଧ" ହୋଇଗଲେ । ଏହି ରୂପଟି ଯେ ଏକତରଫା ରୂପ ସେ କଥା ସେମାନେ ଭୁଲିଗଲେ । ବାସ୍ତବ ଅବସ୍ଥା ଅନିବାର୍ଯ୍ୟ ଭାବେ ଯେଉଁ ବିରାଟ ପରିବର୍ତ୍ତନ ଆଣିଦେଲା ତାହାକୁ ଦେଖିବାକୁ ସେମାନେ ଭୟ କଲେ ଏବଂ "ଦୁଇଠାରୁ ତିନ ବେଶି" ଏହି ରକମର ଅତି ସରଳ, ଯୁକ୍ତିନିଷ୍ଠ ଓ ଆପାତତଃ ଦୃଷ୍ଟିରୁ ଅତି ଅବିସମ୍ବାଦିତ ସତ୍ୟକୁ କେବଳ ବାରମ୍ବାର ପୁନରାବୃତ୍ତି କରିବାକୁ ଲାଗିଲେ । କିନ୍ତୁ ରାଜନୀତି କେବଳ ଗଣିତ ନୁହଁ,

ଏହା ଏକ ପ୍ରକାର ବାଳ ଗଣିତ ଭୁଲ, ଏହା ପ୍ରାଥମିକ ଗଣିତ ଭୁଲ, ଏହା ନବୀଶର ଗଣିତ ଭୁଲ । ବାସ୍ତବରେ ଦେଖିବାକୁ ଗଲେ ସୋଭିଏଟ୍ ଆନ୍ଦୋଳନର ନବ୍ୟ ପ୍ରବଚନ ରୂପ ବା ଅଧାର ଭିତରେ ବର୍ତ୍ତମାନ ଏକ ନୂତନ ଅଧ୍ୟାୟ ମୁଣ୍ଡଟେକି ଉଠିଛି ଆଉ ତା ଫଳରେ ସବୁ ସଙ୍ଘ ସ୍ଥାନମାନଙ୍କରେ ଏକ ନୂତନ ସଙ୍କେତ, ଏକ "ବିଯୁକ୍ତ" ସଙ୍କେତ ଦେଖା ଦେଉଛି । କିନ୍ତୁ ଆମର ଏହି ତଥାକଥିତ ପଣ୍ଡିତମାନେ ଅତି ଅନ୍ଧ ଭାବେ ଭାବିଲେ ଏବଂ ଏପର୍ଯ୍ୟନ୍ତ ବି ଭାବୁଛନ୍ତି ଯେ, "ବିଯୁକ୍ତ ଫଳ" ହେଉଛି "ବିଯୁକ୍ତ ଭୁଲ" ଠାରୁ ବେଶି । ଏକଥା ସେମାନେ ଅନ୍ୟମାନଙ୍କୁ ମଧ୍ୟ ବୁଝାଇବାରେ ଲାଗିପଡ଼ିଛନ୍ତି ।

କମ୍ୟୁନିଷ୍ଟମାନେ ଯେପରି ପୁଣି ଥରେ ଏହି ଭୁଲକୁ ଅନ୍ୟ ଭାବେ କରି ନ ବସନ୍ତି ସେଥିପାଇଁ ଆମକୁ ଯଥାସାଧ୍ୟ ଉଦ୍ୟମ କରିବାକୁ ହେବ ଏବଂ ସେମାନଙ୍କୁ ଏତାଦୃଶ ଭୁଲରୁ ନିବୃତ୍ତାଇବାକୁ ହେବ । କିମ୍ବା, କହିବାକୁ ଗଲେ "ବାମପନ୍ଥୀ" କମ୍ୟୁନିଷ୍ଟମାନେ ଅନ୍ୟଭାବେ ସେଇ ସମାନ ଭୁଲର ଯେଉଁ ପୁନରାବୃତ୍ତି କରୁଛନ୍ତି ତାହା ଯେପରି ଯଥାଶୀଘ୍ର ସଂଶୋଧିତ ହୋଇଯାଏ ଏବଂ ତାହାକୁ ଯେପରି ଶୀଘ୍ର ଓ ବିନା କଷ୍ଟରେ ଅତିକ୍ରମ କରିଯାଇପାରେ ସେଥିପ୍ରତି ଆମକୁ ଯଥାସାଧ୍ୟ ଦୃଷ୍ଟି ଦେବାକୁ ପଡ଼ିବ । ଦକ୍ଷିଣପନ୍ଥୀ ମତବାଗୀଶତା କେବଳ ଏକ ଭୁଲ ନୁହେଁ, ବାମପନ୍ଥୀ ମତବାଗୀଶତା ମଧ୍ୟ ଏକ ଭୁଲ । ଅବଶ୍ୟ, ଦକ୍ଷିଣପନ୍ଥୀ ମତବାଗୀଶତା ( ଅର୍ଥାତ୍ ସାମାଜିକ ସହଯୋଗିତାବାଦ ଓ କାଉଟ୍‌ସ୍କିବାଦ୍ ) ର ଭୁଲ ଅପେକ୍ଷା ଏହି ବାମପନ୍ଥୀ ମତବାଗୀଶତାର ଭୁଲ ସହସ୍ରଗୁଣେ କମ୍ ବିପଜ୍ଜନକ ଓ କମ୍ ତାତ୍ପର୍ଯ୍ୟପୂର୍ଣ୍ଣ । କାରଣ ବାମପନ୍ଥୀ କମ୍ୟୁନିଜମ୍ ହେଉଛି ଏକ ସଦ୍ୟଜାତ ଭାବଧାରା, ଏହା ଅଳ୍ପ କାଳ ହେଲା ଦେଖାଦେଇଛି । ସେଥିପାଇଁ କେତେକ ଅବସ୍ଥାରେ, ଏହି ବ୍ୟାଧିକୁ ସହଜରେ ଆରୋଗ୍ୟ କରିଯାଇପାରିବ ଏବଂ ତାକୁ ଆରୋଗ୍ୟ କରିବା ପାଇଁ ଆମକୁ ଯଥାସାଧ୍ୟ ଉଦ୍ୟମ କରିବାକୁ ହେବ ।

ପୁରାତନ ରୂପ ବା ଆଧାର ସବୁ ଆଜି ଛିନ୍ନଭିନ୍ନ ହୋଇଯାଉଛି । କାରଣ ଏହି ପୁରାତନ ଆଧାର ଭିତରେ ଏକ ନୂତନ ଆଧେୟ ଅନ୍ତରାଳରେ ବଢ଼ି ଉଠିଛି । ଏହି ନୂତନ ଆଧେୟ ହେଉଛି ପ୍ରତିକ୍ରିୟାଶୀଳ ଓ ସର୍ବହରାଶ୍ରେଣୀର ବିରୋଧୀ । ବର୍ତ୍ତମାନ ଆନ୍ତର୍ଜାତିକ କମ୍ୟୁନିଷ୍ଟ ଆନ୍ଦୋଳନର ବିକାଶ ଦୃଷ୍ଟିରୁ ଦେଖିଲେ ଆମର କାର୍ଯ୍ୟ ଭିତରେ ( ସୋଭିଏତ୍ କ୍ଷମତା ପାଇଁ ସର୍ବହରାର ଏକାଧିପତ୍ୟ ପାଇଁ ) ଏକ ସ୍ଥାୟୀ, ବଳିଷ୍ଠ ଓ ଶକ୍ତିଶାଳୀ ଆଧେୟ ଦେଖାଦେଇଛି । ଏହି ଆଧେୟ ସବୁ ପ୍ରକାର ଆଧାର—ନୂତନ ଓ ପୁରାତନ ଉଭୟ ଆଧାର—ଭିତରେ ଆତ୍ମପ୍ରକାଶ କରିପାରିବ ଏବଂ କରିବ ମଧ୍ୟ । ଏହା ନିଶ୍ଚିତ ଭାବେ ପୁନରୁଜ୍ଜୀବିତ ହୋଇ ଉଠିବ ଏବଂ ନୂତନ ତଥା ପୁରାତନ ସବୁ ଆଧାରକୁ ପରାଭୂତ ଓ ଆୟତ୍ତାଧୀନ କରିବ । ପୁରାତନ ଆଧାର ସହିତ ସାଲିସ କରିବା ଉଦ୍ଦେଶ୍ୟରେ ନୁହେଁ, କିନ୍ତୁ ନୂତନ ଓ ପୁରାତନ ସବୁ ପ୍ରକାର ଆଧାରକୁ କମ୍ୟୁନିଜମ୍‌ର ପରିପୂର୍ଣ୍ଣ, ଚରମ, ଚୂଡ଼ାନ୍ତ ଓ ଅଲଂଘନୀୟ ବିଜୟ ଲାଗି ଏକ ଅମୋଘ ଆୟୁଧରେ ପରିଣତ କରିବା ଉଦ୍ଦେଶ୍ୟରେ ଏହି ନୂତନ ଆଧେୟ ସବୁ ନୂତନ ଓ ପୁରାତନ ଆଧାରକୁ ନିଜର ଆୟତ୍ତାଧୀନ କରିନେବ ।

ତେଣୁ ସବୁଠାରୁ ଯେଉଁ ସିଧାସଳଖ ପଥରେ ଗଲେ ଯଥାଶୀଘ୍ର ସୋଭିଏତ୍ କ୍ଷମତା ଓ ସର୍ବହରା ଏକାଧିପତ୍ୟର ସାର୍ବଜନୀନ ବିଜୟ ହାସଲ ହୋଇ ପାରିବ ସେହି ପଥରେ ଆଜି ଶ୍ରମିକଶ୍ରେଣୀ ଆନ୍ଦୋଳନ ଓ ସାଧାରଣ ଭାବେ ସାମାଜିକ ବିକାଶ ଧାରାକୁ ପରିଚାଳିତ କରିନେବା ପାଇଁ କମ୍ୟୁନିଷ୍ଟ ମାନଙ୍କୁ ନିଜର ସର୍ବ ଶକ୍ତି ନିୟୋଜିତ କରିବାକୁ ହେବ । ଏହା ଏକ ଅବିସମ୍ବାଦୀ ସତ୍ୟ । କିନ୍ତୁ ସାମାନ୍ୟ ଏକ ପଦକ୍ଷେପରେ ଏହି ସତ୍ୟ ଏକ ଭୁଲରେ ପରିଣତ ହୋଇଯାଇ ପାରିବ ? ଅଥଚ ଏହି ସାମାନ୍ୟ ପଦକ୍ଷେପଟିର ଲକ୍ଷ୍ୟ ଆପାତତଃ ଦୃଷ୍ଟିରୁ ସମାନ ବୋଲି ମନେ ହେବ । ଜର୍ମାନ୍ ଓ ବ୍ରିଟିଶ ବାମପନ୍ଥୀ କମ୍ୟୁନିଷ୍ଟମାନଙ୍କ ପରି ଆମେ ଯଦି କହିବା ଯେ, ଆମେ କେବଳ ଗୋଟିଏ ମାତ୍ର ପଥ, ଗୋଟିଏ ମାତ୍ର ସିଧାସଳଖ ପଥକୁ ସ୍ୱୀକାର କରୁ ଏବଂ ଛକାପଞ୍ଝା ନୀତି, ସାଲିସ ନୀତି, କୌଶଳ ପୂର୍ଣ୍ଣ

ମତ ଅନୁସରଣ କରିବା ପାଇଁ ଆମେ ରାଜି ନୋହୁଁ ତାହେଲେ ତାହା ଅତି ଭୁଲ ହୋଇଯିବ । ଏହି ଭୁଲ କମ୍ୟୁନିଜମର ଘୋର କ୍ଷତି କରିବ— କେତେକାଂଶରେ କ୍ଷତି କରିସାରିଛି ଏବଂ କରୁଛି ମଧ୍ୟ । ଦକ୍ଷିଣପନ୍ଥୀ ମତ-ବାଗୀଶତା କେବଳ ପୁରାତନ ଆଧାରଟିକୁ ସ୍ୱୀକାର କରିବାକୁ ଲାଗିଲା । ନୂତନ ଆଧେୟକୁ ସେ ଲକ୍ଷ୍ୟ କରି ପାରିଲା ନାହିଁ । ତେଣୁ ସେ ସର୍ବସ୍ୱାନ୍ତ ହୋଇଗଲା । ବାମପନ୍ଥୀ ମତବାଗୀଶତା କେତେକ ପୁରାତନ ଆଧାରକୁ ଏକ ସର୍ତ୍ତରେ ପ୍ରତ୍ୟାଖ୍ୟାନ କରିଦେବାରେ ଜିଦ୍ ଧରି ବସିଛି । ସବୁ ରକମର ଆଧାର ଭିତରୁ ଯେ ଏକ ନୂତନ ଆଧେୟ ଫୁଟି ଉଠି ଆସୁଛି ସେ କଥା ଦେଖିବାକୁ ସେ ଅକ୍ଷମ । ଆଜି ଏହି ପରିସ୍ଥିତିରେ କମ୍ୟୁନିଷ୍ଟ ହିସାବରେ ଆମ୍ଭମାନଙ୍କର କର୍ତ୍ତବ୍ୟ ହେଉଛି ସବୁ ପ୍ରକାର ଆଧାରକୁ ଆୟତ୍ତ କରିବା, କୌଣସି ଆଧାରର ପରିପୂରକ ରୂପେ ଆଉ ଏକ ଆଧାରକୁ କିପରି ଅତି ଦ୍ରୁତଭାବେ ପ୍ରୟୋଗ କରାଯାଇପାରିବ, କୌଣସି ଆଧାର ପରିବର୍ତ୍ତେ ଆଉ ଏକ ଆଧାରକୁ କିପରି ଦ୍ରୁତଭାବେ ପ୍ରୟୋଗ କରାଯାଇପାରିବ ତାହା ଶିକ୍ଷା କରିବା ଏବଂ ଆମର ଶ୍ରେଣୀ କିମ୍ବା ଆମର ଉଦ୍ୟମ ବାହାରେ ଯେଉଁ ସବୁ ପରିବର୍ତ୍ତନ ଘଟିଯାଉଛି ସେହି ପରିବର୍ତ୍ତିତ ପରିସ୍ଥିତିରେ ଆମର ସଂଗ୍ରାମ କୌଶଳକୁ କିପରି ପ୍ରୟୋଗ କରାଯାଇ-ପାରିବ ତାହା ଶିକ୍ଷା କରିବା । କିନ୍ତୁ ଏକଥା ମଧ୍ୟ ହୃଦୟଙ୍ଗମ କରିବାକୁ ଏହି ବାମପନ୍ଥୀ ମତବାଗୀଶତା ଅକ୍ଷମ ।

ବିଶ୍ୱ ସାମ୍ରାଜ୍ୟବାଦୀ ଯୁଦ୍ଧର ନାରକୀୟ ଦୁର୍ଘଟଣା, ତାର ବିଭୀଷିକା ଓ ତାର ଭୟଙ୍କରତା ଏବଂ ତାର ପରିଣାମ ସ୍ୱରୂପ ଦେଖାଦେଇଥିବା ଚରମ ନୈରାଶ୍ୟ ଓ ହତାଶା ଫଳରେ ବିଶ୍ୱବିପ୍ଳବର ଗତି ଓ ବେଗ ଆଜି ଉଦ୍ଦାମ ହୋଇ ଉଠିଛି । ଏହି ବିପ୍ଳବ ଆଜି ଅତି କ୍ଷିପ୍ରତାର ସହିତ ବ୍ୟାପକ ଓ ଗଭୀର ଭାବେ ବିସ୍ତାର ଲାଭ କରୁଛି । ବହୁ ଭିନ୍ନ ଭିନ୍ନ ରୂପରେ ଯେ ଅଗ୍ରସର ହେଉଛି । ଅତି ଶିକ୍ଷଣୀୟ ଭାବେ ଏବଂ ସବୁ ପ୍ରକାର ମତ

ବାଗ୍ମିତାକୁ କାର୍ଯ୍ୟତଃ ଅପ୍ରମାଣ କରିଦେଇ ସେ ଆତ୍ମପ୍ରକାଶ କରୁଛି । ତେଣୁ ଏପରି ପରିସ୍ଥିତିରେ ଏହି "ବାମପନ୍ଥୀ" କମ୍ୟୁନିଜମର ଶିଶୁସୁଲଭ ବିଶୃଙ୍ଖଳ ବ୍ୟାଧିରୁ ଆନ୍ତର୍ଜାତିକ କମ୍ୟୁନିଷ୍ଟ ଆନ୍ଦୋଳନକୁ, ଶୀଘ୍ର ଓ ସମ୍ପୂର୍ଣ୍ଣ ଆରୋଗ୍ୟ କରିଦେବାର ସକଳ ପ୍ରକାର ସମ୍ଭାବନା ଆଜି ଦେଖା-ଦେଉଛି ।

ଏପ୍ରିଲ ୨୭, ୧୯୨୦ ।

# ପରିଶିଷ୍ଟ

ଆମ ଦେଶର ପ୍ରକାଶକ ଗଣ—ଯେଉଁମାନେ କି ସର୍ବହରା ବିପ୍ଳବର ପ୍ରତିଶୋଧ ରୂପେ ବିଶ୍ୱ ସାମ୍ରାଜ୍ୟବାଦୀମାନଙ୍କ ଦ୍ୱାରା ଲୁଣ୍ଠିତ ହୋଇ ଆସିଛନ୍ତି ଏବଂ ନିଜ ନିଜ ଦେଶର ଶ୍ରମିକମାନଙ୍କ ପ୍ରତି ଏହି ସାମ୍ରାଜ୍ୟବାଦୀମାନଙ୍କର ଶତ ପ୍ରତିଶ୍ରୁତି ସତ୍ତ୍ୱେ ଯେଉଁମାନେ କି ଏପର୍ଯ୍ୟନ୍ତ ବି ଏହି ସାମ୍ରାଜ୍ୟବାଦୀମାନଙ୍କ ଦ୍ୱାରା ଲୁଣ୍ଠିତ ଓ ଅବରୁଦ୍ଧ ହେଉଛନ୍ତି—ସେମାନଙ୍କ ଦ୍ୱାରା ମୋର ଏହି ପୁସ୍ତିକାଟି ପ୍ରକାଶିତ ହେବା ପୂର୍ବରୁ ବିଦେଶରୁ ଆଉ କେତେକ ଅତିରିକ୍ତ ତଥ୍ୟ ମୋର ହସ୍ତଗତ ହୋଇଛି। ତେଣୁ ଜଣେ ରାଜନୈତିକ ଲେଖକ ହିସାବରେ ଉଡ଼ାଣିଆ ଭାବେ କେତେକ ମନ୍ତବ୍ୟ ପ୍ରକାଶ କରିବା ବ୍ୟତୀତ ଅଧିକ କିଛି ଏହି ପୁସ୍ତିକାରେ ଉପସ୍ଥାପିତ କରିବାର ଦାବୀ ନ ରଖି ଆଉ ଅଳ୍ପ କେତୋଟି ବିଷୟ କେବଳ ମୁଁ ଏଠାରେ ଉଲ୍ଲେଖ କରିବି।

୧

## ଜର୍ମାନ୍ କମ୍ୟୁନିଷ୍ଟମାନଙ୍କ ମଧ୍ୟରେ ବିଭେଦ

ଜର୍ମାନୀର କମ୍ୟୁନିଷ୍ଟମାନଙ୍କ ମଧ୍ୟରେ ଯେଉଁ ବିଭେଦ ଘଟିଯାଇଛି ଏହା ଏକ ବାସ୍ତବ ସତ୍ୟ। ସେଠାରେ "ବାମପନ୍ଥୀମାନେ" ବା ଯେଉଁମାନେ ନିଜକୁ "ନୀତିଗତ ବିରୋଧୀଗୋଷ୍ଠୀ" ବୋଲି କହନ୍ତି ସେମାନେ କମ୍ୟୁନିଷ୍ଟ ପାର୍ଟିଠାରୁ ଅଲଗା ହୋଇ ଏକ ସ୍ୱତନ୍ତ୍ର କମ୍ୟୁନିଷ୍ଟ ଲେବର ପାର୍ଟି ଗଠନ କରିଛନ୍ତି। ଯାହା ଜଣାପଡ଼ୁଛି ଇଟାଲୀରେ ମଧ୍ୟ ଏହିପରି ବିଭେଦ ଆସନ୍ନ। ଜଣାପଡ଼ୁଛି ବୋଲି ମୁଁ କହୁଛି କାରଣ ଏହି ବାମପନ୍ଥୀମାନଙ୍କର "ଇଲ୍ ସୋଭିଏଟ୍" ନାମକ ସମ୍ବାଦପତ୍ରର ଆଉ ମାତ୍ର ଦୁଇଟି ଅଧିକା ସଂଖ୍ୟା (୭ ଓ ୮ ନମ୍ବର) କେବଳ ମୋର ହସ୍ତଗତ ହୋଇଛି। ଆଉ ସେଥିରେ ବିଭେଦର ସମ୍ଭାବନା ଓ ପ୍ରୟୋଜନୀୟତା ସମ୍ପର୍କରେ ପ୍ରକାଶ୍ୟ ଭାବେ ଆଲୋଚନା କରାଯାଇଛି। ତା ଛଡ଼ା ସେଥିରେ ବାସନବାଦୀ ଗୋଷ୍ଠୀ (ଅର୍ଥାତ୍ ଯେଉଁମାନେ ପାର୍ଲାମେଣ୍ଟକୁ ବାସନ କରିବାକୁ ଚାହାଁନ୍ତି,

ସେଭିମାନେ ପାର୍ଲ୍ମେଣ୍ଟରେ ଅଂଶ ଗ୍ରହଣ କରିବାର ବିରୋଧୀ ), ସେ
ଏପର୍ଯ୍ୟନ୍ତ ବି ଇଟାଲୀୟ ସୋଶାଲିଷ୍ଟ ପାର୍ଟିର ଏକ ଅଂଶ ହୋଇ ରହିଛନ୍ତି,
ସେହି ଗୋଷ୍ଠୀର ଏକ ସ୍ୱତନ୍ତ୍ର ସମ୍ମିଳନୀ କଥା ଉଲ୍ଲେଖ କରାଯାଇଛି ।

ତେଣୁ "କେନ୍ଦ୍ରବାଦୀଙ୍କ" ( ଅର୍ଥାତ୍ କାଉଟସ୍କି ପନ୍ଥୀ, ଲଙ୍ଗୁଏଟ୍ ପନ୍ଥୀ, "ସ୍ୱାଧୀନ ପନ୍ଥୀ" ଇତ୍ୟାଦିଙ୍କ ) ସହିତ ଆନ୍ତର୍ଜାତିକ କ୍ଷେତ୍ରରେ ବିଭେଦ ଘଟିଲା ପରେ ଏହି "ବାମପନ୍ଥୀମାନଙ୍କ" ସହିତ, ଏହି ପାର୍ଲ୍ମେଣ୍ଟ-ବିରୋଧୀମାନଙ୍କ ( କେତେକାଂଶରେ ସେମାନେ ରାଜନୀତିର ବିରୋଧୀ ମଧ୍ୟ, କାରଣ ସେମାନେ ଏକ ରାଜନୈତିକ ଦଳ ଗଠନର ବିରୋଧୀ ଓ ଟ୍ରେଡ୍ୟୁନିଅନ କାମର ବିରୋଧୀ ) ସହିତ ଯେଉଁ ବିଭେଦ ଆରମ୍ଭ ହୋଇଛି ତାହା ଏକ ଆନ୍ତର୍ଜାତିକ ବିଭେଦରେ ପରିଣତ ହୋଇ ଯିବାର ଯଥେଷ୍ଟ ଆଶଙ୍କା ମଧ୍ୟ ରହିଛି । ଆଉ ସେହି ବିଭେଦ ଯଦି ଘଟିବ ତ ଘଟୁ । କାରଣ ବିଭ୍ରାନ୍ତି ଅପେକ୍ଷା ବିଭେଦ ବରଣୀୟ ଯେହେତୁ ବିଭ୍ରାନ୍ତ ପାର୍ଟିର ଆଦର୍ଶଗତ ଓ ତାତ୍ତ୍ୱିକ ବୈପ୍ଳବିକ ଅଭିବୃଦ୍ଧି ଓ ଉନ୍ନତିକୁ ବ୍ୟାହତ କରିଦିଏ ଏବଂ ସର୍ବହରା ଏକାଧିପତ୍ୟର ପ୍ରତିଷ୍ଠା ପଥକୁ ସୁଗମ କରିଦେବା ପାଇଁ ପ୍ରୟୋଜନୀୟ ସୁସଂଗତ ଓ ସୁସଂଗଠିତ ବାସ୍ତବ କର୍ମଧାରାକୁ ବାଧା ଦିଏ ।

ଏହି "ବାମପନ୍ଥୀମାନେ" ନିଜର କର୍ମଧାରାକୁ ଜାତୀୟ ଓ ଆନ୍ତର୍ଜାତିକ କ୍ଷେତ୍ରରେ ପରୀକ୍ଷା କରି ନାହାନ୍ତି । ଲୌହ କଠିନ ଶୃଙ୍ଖଳା ସମ୍ପନ୍ନ ଏକ କଠୋର କେନ୍ଦ୍ରୀକୃତ ପାର୍ଟି ବିନା ଏବଂ ରାଜନୈତିକ ଓ ସାଂସ୍କୃତିକ କାର୍ଯ୍ୟର ପ୍ରତ୍ୟେକ କ୍ଷେତ୍ର, ପ୍ରତ୍ୟେକ ବିଭାଗ ଓ ପ୍ରତ୍ୟେକ ଦିଗକୁ ଆୟତ୍ତ କରିବାର ସାମର୍ଥ୍ୟ ବିନା ସର୍ବହରା ଏକାଧିପତ୍ୟ ପାଇଁ ନିଜକୁ ପ୍ରସ୍ତୁତ କରିବାକୁ ( ଓ ପରେ ତାକୁ ପ୍ରତିଷ୍ଠା କରିବାକୁ ) ସେମାନେ ଚେଷ୍ଟା କରନ୍ତି । ଏହି ବାସ୍ତବ କାର୍ଯ୍ୟର ଅଭିଜ୍ଞତା ସେମାନଙ୍କୁ ଶୀଘ୍ର ଅଧିକ ବିଜ୍ଞ କରିଦେବ ଏବଂ ସେମାନେ ବୁଝି ପାରିବେ ସେମାନଙ୍କର ଭୁଲ କେଉଁଠି ।

କିନ୍ତୁ ଶ୍ରମିକଶ୍ରେଣୀ ଆନ୍ଦୋଳନ ଭିତରେ ଯେଉଁମାନେ ଅଜ୍ଞାତ ଭାବେ ଓ ସଚେତନ ଭାବେ ସୋଭିଏତ୍ ସରକାରକୁ ଓ ସର୍ବହରା

ଏକାଧିପତ୍ୟକୁ ସମର୍ଥନ କରନ୍ତି ସେମାନଙ୍କୁ ଗୋଟିଏ ପାର୍ଟି ଭିତରେ ଐକ୍ୟବଦ୍ଧ କରିବା ଏକାନ୍ତ ପ୍ରୟୋଜନ । ନଚେତ୍ ଭବିଷ୍ୟତରେ ଏହା ଅନିବାର୍ଯ୍ୟ ହୋଇ ଉଠିବ । ତେଣୁ "ବାମପନ୍ଥୀମାନଙ୍କ" ସହିତ ଆମର ବିଭେଦ ଦ୍ୱାରା ଏହି କାମ ଯେପରି ବ୍ୟାହତ ନହୁଏ ( କିମ୍ବା ବ୍ୟାହତ ହେଲେ ଖୁବ୍ କମ ଯେପରି ବ୍ୟାହତ ହୁଏ ) ସେଥିପାଇଁ ଯଥାସାଧ୍ୟ ଉଦ୍ୟମ କରିବାକୁ ପଡ଼ିବ । ରୁଷିଆରେ ବଲଶେଭିକମାନେ, ଖୁବ୍ ସୌଭାଗ୍ୟ ଫଳେ, ସର୍ବହରାର ଏକାଧିପତ୍ୟ ପାଇଁ ପ୍ରତ୍ୟକ୍ଷ ଗଣ ସଂଗ୍ରାମ ଆରମ୍ଭ କରିବାର ବହୁ ପୂର୍ବରୁ ମେନଶେଭିକ ( ଅର୍ଥାତ ସୁବିଧାବାଦୀ ଓ କେନ୍ଦ୍ରବାଦୀ"ଙ୍କ ) ଓ "ବାମପନ୍ଥୀ" ଉଭୟଙ୍କ ବିରୁଦ୍ଧରେ ଏକ ସୁଦୃଢ଼ ଓ ଧାରାବାହିକ ସଂଗ୍ରାମ ଚଳାଇବା ପାଇଁ ଦୀର୍ଘ ପନ୍ଦର ବର୍ଷ ସମୟ ପାଇଥିଲେ । କିନ୍ତୁ ୟୁରୋପ ଓ ଆମେରିକାରେ ବର୍ତ୍ତମାନ ଏହି କାମକୁ ଖୁବ୍ କମ ସମୟ ମଧ୍ୟରେ କରିବାକୁ ପଡ଼ିବ । କେତେକ ବ୍ୟକ୍ତି, ବିଶେଷ କରି ଯେଉଁମାନେ ନେତା ହେବା ପାଇଁ ଚେଷ୍ଟା କରି ବ୍ୟର୍ଥ ମନୋରଥ ହୋଇଛନ୍ତି ( ଯଦି ସେମାନଙ୍କର ସର୍ବହରା ଶୃଙ୍ଖଳା ଜ୍ଞାନ ନଥାଏ ଓ ସେମାନେ "ନିଜେ ସଚ୍ଚୋଟ ହୋଇ ନଥାନ୍ତି" ) ସେମାନେ ବହୁକାଳ ପର୍ଯ୍ୟନ୍ତ ଭୁଲ କରିବାକୁ ଲାଗିବେ । କିନ୍ତୁ ସମୟ ପରିପକ୍ୱ ହୋଇ ଉଠିଲେ ଶ୍ରମିକ ଜନସାଧାରଣ ନିଜେ ଖୁବ୍ ସହଜରେ ଓ ଖୁବ୍ ଶୀଘ୍ର ଐକ୍ୟବଦ୍ଧ ହୋଇପିବେ ଏବଂ ସବୁ ନିଷ୍ଠାବାନ କମ୍ୟୁନିଷ୍ଟଙ୍କୁ ମଧ୍ୟ ଐକ୍ୟବଦ୍ଧ କରି ଏପରି ଗୋଟିଏ ପାର୍ଟି ଭିତରେ ଐକ୍ୟବଦ୍ଧ ହୋଇ ଉଠିବେ ଯେଉଁ ପାର୍ଟି ସୋଭିଏତ୍ ବ୍ୟବସ୍ଥା ଓ ସର୍ବହରାର ଏକାଧିପତ୍ୟ ଶାସନ ପ୍ରତିଷ୍ଠା କରିବାକୁ ସମର୍ଥ ହେବ । *

---

* ସାଧାରଣ ଭାବେ କମ୍ୟୁନିଷ୍ଟମାନଙ୍କ ସହିତ "ବାମପନ୍ଥୀ" କମ୍ୟୁନିଷ୍ଟ ଓ ପାର୍ଲମେଣ୍ଟ-ବିରୋଧୀ ଗୋଷ୍ଠୀମାନଙ୍କର ଭବିଷ୍ୟତରେ କୌଣସି ପ୍ରକାର ମିଶ୍ରଣ ହେବ କି ନାହିଁ ସେ ବିଷୟରେ ମୋର ନିମ୍ନୋକ୍ତ କେତୋଟି ବକ୍ତବ୍ୟ ରହିଛି । "ବାମପନ୍ଥୀ" କମ୍ୟୁନିଷ୍ଟମାନଙ୍କର ସମ୍ବାଦପତ୍ର ଓ ସାଧାରଣ ଭାବେ ଜର୍ମାନୀର କମ୍ୟୁନିଷ୍ଟମାନଙ୍କ ସହିତ ମୁଁ ଯେତେଦୂର ପରିଚିତ ହୋଇ ପାରିଛି

୨

# ଜର୍ମାନୀର କମ୍ୟୁନିଷ୍ଟଗଣ ଓ ସ୍ୱାଧୀନବାଦୀଗଣ

ଏହି ପୁସ୍ତିକାରେ ମୁଁ ଆଗରୁ ଏହି ମତ ବ୍ୟକ୍ତ କରିଛି ଯେ, କମ୍ୟୁନିଷ୍ଟ ଏବଂ ସ୍ୱାଧୀନବାଦୀମାନଙ୍କର ବାମପନ୍ଥୀ ଗୋଷ୍ଠୀ ମଧ୍ୟରେ ଏକ ସାଲିସ ପ୍ରୟୋଜନ ଓ ଏହି ସାଲିସ କମ୍ୟୁନିଜମ ପକ୍ଷରେ ଉପକାରୀ ହେବ । କିନ୍ତୁ ଏପରି ସାଲିସ ଖୁବ୍ ସହଜରେ ହୋଇଯିବ ନାହିଁ । ଯେଉଁ ସବୁ ସମ୍ବାଦପତ୍ର ମୋର ହସ୍ତଗତ ହୋଇଛି ତାହା ଉଭୟ ଦୃଷ୍ଟିରୁ ମୋର ଏହି ମତାମତର

---

* ସେଥିରୁ ମୁଁ ଦେଖିଛି ଯେ, ଜନସାଧାରଣଙ୍କ ମଧ୍ୟରେ ଆନ୍ଦୋଳନ ଓ ପ୍ରଚାର ଚଳାଇବାରେ ଏହି ବାମପନ୍ଥୀ କମ୍ୟୁନିଷ୍ଟମାନେ ସେଠାର ସାଧାରଣ କମ୍ୟୁନିଷ୍ଟମାନଙ୍କ ଅପେକ୍ଷା ବେଶି ଦକ୍ଷ । ବଲଶେଭିକ ପାର୍ଟିର ଇତିହାସରେ ମଧ୍ୟ ମୁଁ ବହୁବାର ଅନୁରୂପ କଥା ଲକ୍ଷ୍ୟ କରିଛି । ଅବଶ୍ୟ ତାହା ଦେଶର ସର୍ବତ୍ର ପରିଲକ୍ଷିତ ହୋଇ ନାହିଁ, ତାହା କେବଳ କେତୋଟି ସ୍ଥାନୀୟ ସଂଗଠନ ଭିତରେ ସୀମାବଦ୍ଧ । ଦୃଷ୍ଟାନ୍ତ ସ୍ୱରୂପ, ୧୯୦୭ ସାଲରେ "ବାମପନ୍ଥୀ" ବଲଶେଭିକମାନେ କେତେକ ସ୍ଥାନରେ ଓ କେତେକ ସମୟରେ ଜନସାଧାରଣଙ୍କ ମଧ୍ୟରେ ଆମ ଅପେକ୍ଷା ଅଧିକ ଫଳପ୍ରଦ ଭାବେ ଆନ୍ଦୋଳନ ଓ ପ୍ରଚାର କରିପାରିଥିଲେ । ଏହା ହୁଏତ କେତେକାଂଶରେ ବୈପ୍ଳବିକ ମୁହୂର୍ତ୍ତ ଯୋଗୁ କିମ୍ବା ଲୋକଙ୍କ ମନରେ ବୈପ୍ଳବିକ ଆନ୍ଦୋଳନର ସ୍ମୃତି ସତେଜ ରହିଥିବା ଯୋଗୁଁ ହୋଇ ଥାଇପାରେ, କାରଣ ଏପରି ସବୁ ମୁହୂର୍ତ୍ତରେ "କେବଳ" ନେତିବାଚକ ସଂଗ୍ରାମ କୌଶଳକୁ ଅବଲମ୍ବନ କରି ଜନସାଧାରଣଙ୍କ ମଧ୍ୟରେ ପ୍ରବେଶ କରିବା ଅପେକ୍ଷାକୃତ ସହଜ ହୋଇଥାଏ । କିନ୍ତୁ ତା ବୋଲି ଏସବୁ ସଂଗ୍ରାମ କୌଶଳକୁ ଠିକ୍ ବୋଲି ଯୁକ୍ତି କରିବା ଅନୁଚିତ । ଯେତେ ଯାହା ହେଲେ ବି ଗୋଟିଏ କମ୍ୟୁନିଷ୍ଟ ପାର୍ଟି, ଯିଏ ବିପ୍ଳବୀ ଶ୍ରେଣୀର, ସର୍ବହରା ଶ୍ରେଣୀର ପ୍ରକୃତ ସଂଗ୍ରାମବାହିନୀ ଓ ପ୍ରକୃତ ଅଗ୍ରଗାମୀ

ଯଥାର୍ଥତାକୁ ପ୍ରତିପାଦିତ କରୁଛି । ଜର୍ମାନ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟିର ମୁଖପତ୍ର "ରୋଟ୍ ଫାନେ"ର ୮୨ଶ (ମାର୍ଚ୍ଚ ୨୬, ୧୯୨୦) ସଂଖ୍ୟାରେ କ୍ୟାପ୍ଟିଟାଲିଷ୍ଟିକ ସାମରିକ ଷଡ଼ଯନ୍ତ୍ର ଓ "ସୋଶାଲିଷ୍ଟ ସରକାର" ସଂପର୍କରେ କେନ୍ଦ୍ରୀୟ କମିଟିର ଏକ ବିବୃତି ପ୍ରକାଶିତ ହୋଇଛି । ଏହି ବିବୃତିଟି ମୌଳିକ ସୂତ୍ର ଓ ବାସ୍ତବ ସିଦ୍ଧାନ୍ତ ଉଭୟ ଦୃଷ୍ଟିରୁ ପୂରାପୂରି ଠିକ୍ । ତାର ମୂଳ ସୂତ୍ର ହେଉଛି ଯେ, ବର୍ତ୍ତମାନର ମୁହୂର୍ତ୍ତରେ ସର୍ବହରା ଏକାଧିପତ୍ୟର ପ୍ରତିଷ୍ଠା ଲାଗି କୌଣସି "ବାସ୍ତବ ଭିତ୍ତି" ନାହିଁ, କାରଣ "ସହରାଞ୍ଚଳର ଅଧିକାଂଶ ଶ୍ରମିକ" ସ୍ୱାଧୀନବାଦୀମାନଙ୍କୁ ସମର୍ଥନ କରୁଛନ୍ତି । ତେଣୁ ତାର ସିଦ୍ଧାନ୍ତ ହେଉଛି—ଏହି "ସୋଶାଲିଷ୍ଟ ସରକାର ଯଦି ବୁର୍ଜୁଆ-ପୁଞ୍ଜିବାଦୀ ଦଳମାନଙ୍କୁ ସରକାରରୁ ବାଦ ଦିଏ" ତାହେଲେ ସେହି ସରକାରର "ଲୟାଲ ବିରୋଧୀ" ହୋଇ ରହିବାର ପ୍ରତିଶ୍ରୁତି (ଅର୍ଥାତ୍ "ସଶସ୍ତ୍ର ଅଭ୍ୟୁତ୍ଥାନ" ଦ୍ୱାରା ସରକାରକୁ ଉଚ୍ଛେଦ କରିବାର ପ୍ରସ୍ତୁତିକୁ ପ୍ରତ୍ୟାଖ୍ୟାନ କରିବା) ।

ନିଃସନ୍ଦେହରେ କୁହାଯାଇପାରେ ଯେ, ଏହି ସଂଗ୍ରାମ କୌଶଳ ହେଉଛି ମୂଖ୍ୟତଃ ଠିକ୍ । କିନ୍ତୁ ଏହି ବିବୃତିର କେତେକ ଛୋଟିଆ

---

ବାହିନୀ ହେବାକୁ ପଡ଼ିବ, ଆଉ ତା ସାଙ୍ଗକୁ ବ୍ୟାପକ ଜନତାକୁ କେବଳ ସର୍ବହରା ଶ୍ରେଣୀକୁ ନୁହଁ, ଶ୍ରମଜୀବୀ ଓ ଶୋଷିତ ସମସ୍ତ ଅସର୍ବହରା ଜନ ସାଧାରଣଙ୍କୁ ମଧ୍ୟ—କିପରି ନେତୃତ୍ୱ ଦେବାକୁ ହେବ ତାହା ଶିକ୍ଷା କରିବାକୁ ହେବ ତାକୁ ନିଶ୍ଚୟ ଜାଣିବାକୁ ହେବ କିପରି ଭାବେ ପ୍ରଚାର କରିବାକୁ ହୁଏ, କିପରି ଭାବେ ସଂଗଠନ କରିବାକୁ ହୁଏ ଏବଂ କିପରି ଭାବେ ଜନସାଧାରଣଙ୍କୁ ଆନ୍ଦୋଳିତ କରିବାକୁ ହୁଏ । ଏସବୁ କାମ ତାକୁ ଏପରି ଭାବେ କରିବାକୁ ହେବ ଯାହାକି ସହର ଓ ଶିଳ୍ପାଞ୍ଚଳର ଜନସାଧାରଣ ତଥା ଗ୍ରାମାଞ୍ଚଳର ଜନସାଧାରଣଙ୍କ ପକ୍ଷରେ ଅତି ସ୍ପଷ୍ଟ ଓ ପରିଷ୍କାର ଭାବେ ଏବଂ ଅତି ସହଜରେ ଗ୍ରହଣଯୋଗ୍ୟ ଓ ବୋଧଗମ୍ୟ ହୋଇପାରିବ । ପ୍ରତ୍ୟେକ କମ୍ୟୁନିଷ୍ଟ ପାର୍ଟିକୁ ଯେ ଏକଥା ଜାଣିବାକୁ ପଡ଼ିବ ସେ ବିଷୟରେ ସନ୍ଦେହର କୌଣସି ଅବକାଶ ନାହିଁ ।

ଶତ ସାମାନ୍ୟ ତ୍ରୁଟିକୁ ବାଦ ଦେଲେ ମଧ୍ୟ ଏକଥା କହି ରଖିବା ଦରକାର ଯେ, ଏତାଦୃଶ ସାମାଜିକ-ବିଶ୍ୱାସଘାତୀମାନଙ୍କର ସରକାରକୁ ଏକ "ସୋଶାଲିଷ୍ଟ" ସରକାର ବୋଲି ( କମ୍ୟୁନିଷ୍ଟ ପାର୍ଟିର ଆନୁଷ୍ଠାନିକ ବିବୃତିରେ ) ଚିତ୍ରଣ କରାଯାଇ ନପାରେ । ତାଛଡ଼ା ସିଡ଼େମ୍ୟାନ ଗୋଷ୍ଠୀ ଏବଂ କାଉଟ୍ସ୍କିପନ୍ଥୀ ଓ କ୍ରିସ୍ପିଏନ୍ ପନ୍ଥୀ ଏ ସମସ୍ତେ ପେଟିବୁର୍ଜୁଆ ଗଣତାନ୍ତ୍ରିକ ଦଳ ହୋଇଥିବାରୁ "ବୁର୍ଜୁଆ ପୁଞ୍ଜିବାଦୀମାନଙ୍କ" ସରକାରରୁ ବାଦଦିଆ ଯାଇଥିବା କଥା କୁହା ଯାଇନପାରେ । ଏହା ଛଡ଼ା ଉକ୍ତ ବିବୃତିର ୪ର୍ଥ ଅନୁଚ୍ଛେଦରେ ଯେଉଁ ନିମ୍ନୋକ୍ତ ମତାମତ ବ୍ୟକ୍ତ କରାଯାଇଛି ତାହା ମଧ୍ୟ ଲେଖିବା ଏକାନ୍ତ ଅନୁଚିତ । ସେଥିରେ ଲେଖାଯାଇଛି—"......ସର୍ବହରା ଜନସାଧାରଣଙ୍କ କମ୍ୟୁନିଜିମ ଆଡ଼କୁ ଆହୁରି ଆକୃଷ୍ଟ କରି ଆଣିବା ସର୍ବହରା ଏକାଧିପତ୍ୟର ବିକାଶ ଦୃଷ୍ଟିରୁ ଅତୀବ ଗୁରୁତ୍ୱପୂର୍ଣ୍ଣ —କମ୍ୟୁନିଜିମ୍ ହେଉଛି ଏପରି ଏକ ସଂସ୍ଥା ଯେଉଁଥିରେ ଅବାଧରେ ରାଜନୈତିକ ସ୍ୱାଧୀନତାକୁ ଭୋଗ କରାଯାଇପାରିବ ଏବଂ ଯେଉଁଥିରେ ବୁର୍ଜୁଆ ଗଣତନ୍ତ୍ର ନିଜକୁ ଆଉ ପୁଞ୍ଜିର ଏକଚ୍ଛତ୍ରବାଦ ରୂପେ ପ୍ରତିଷ୍ଠା କରିବାର ସମ୍ଭାବନା ନଥିବ ।"

ଘଟଣାର ସ୍ରୋତ ଏପରି ଆକାର ଧାରଣା କରିବା ଏକାନ୍ତ ଅସମ୍ଭବ । କାରଣ ପେଟିବୁର୍ଜୁଆ ନେତାମାନେ, ଜର୍ମାନୀର ହେଣ୍ଡରସନମାନେ ( ସିଡ଼େ-ମ୍ୟାନମାନେ ) ଓ ସ୍ନୋଡ଼େନମାନେ ( କ୍ରିସ୍ପିଏନମାନେ ) ବୁର୍ଜୁଆ ଗଣତନ୍ତ୍ରର ପରିସରକୁ ଅତିକ୍ରମ କରି ଆଗକୁ କଦାପି ଯାଇ ପାରିବେ ନାହିଁ ଆଉ ଏହି ବୁର୍ଜୁଆ ଗଣତନ୍ତ୍ର ପୁଞ୍ଜିର ଏକଚ୍ଛତ୍ରବାଦ ବ୍ୟତୀତ ଅନ୍ୟ କିଛି ହୋଇପାରେ ନା । ତେଣୁ ଏକଥା ଲେଖିବାର କୌଣସି ପ୍ରୟୋଜନୀୟତା ନଥିଲା । ଯେଉଁ ଫଳାଫଳ ହାସଲ କରିବା ପାଇଁ ଜର୍ମାନ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟି ଯଥାର୍ଥ ଭାବେ ଉଦ୍ୟମ କରୁଛନ୍ତି ତା ଦୃଷ୍ଟିରୁ ବିଚାର କଲେ ଏପରି ଲେଖା ନୀତିଗତ ଭାବେ ଭୁଲ ଏବଂ ରାଜନୈତିକ ଭାବେ କ୍ଷତିକାରକ ମଧ୍ୟ । ଏତିକି କେବଳ କହିଥିଲେ ଯଥେଷ୍ଟ ହୋଇଥାନ୍ତା

ଯେ, ( ପାର୍ଲ୍ୟମେଣ୍ଟାରୀ ସୁବିଧା ସୁଯୋଗ ଲାଭ କରିବା ପାଇଁ ଅବଶ୍ୟ କେତେ
ଛାଡ଼ ଦିଆଯାଏ ) ଯେତେଦିନ ପର୍ଯ୍ୟନ୍ତ ସହରାଞ୍ଚଳର ଅଧିକାଂଶ ଶ୍ରମିକ
ସ୍ୱାଧୀନ ବାଦୀମାନଙ୍କର ଅନୁସରଣ କରିବେ ସେତେଦିନ ପର୍ଯ୍ୟନ୍ତ ଏହି
ଶ୍ରମିକମାନେ "ନିଜର" ସରକାର ସଂପର୍କରେ ଅଭିଜ୍ଞତା ହାସଲ କରି
ନିଜର ଶେଷ ନିର୍ବୋଧ-ଗଣତାନ୍ତ୍ରିକ ( ଏବଂ "ବୁର୍ଜୁଆ-ପୁଞ୍ଜିବାଦୀ" )
ମୋହକୁ ଅତିକ୍ରମ କରିବାରେ ଆମେ କମ୍ୟୁନିଷ୍ଟମାନେ ସେମାନଙ୍କୁ କୌଣସି
ମତେ ବାଧା ଦେବୁ ନାହିଁ । ସାଲିସ କରିବା ପାଇଁ ଏହା ଯଥେଷ୍ଟ । ବାସ୍ତବିକ
ଏପରି ସାଲିସ ପ୍ରୟୋଜନ । ଆଉ ସେଥିପାଇଁ ଯେଉଁ ସରକାର ପଛରେ
ସହରାଞ୍ଚଳର ଅଧିକାଂଶ ଶ୍ରମିକଙ୍କର ଆସ୍ଥା ରହିଛି ସେହି ସରକାରକୁ
ବଳପୂର୍ବକ ଉଚ୍ଛେଦ କରିବାର ଉଦ୍ୟମକୁ କିଛି କାଳ ପାଇଁ ସ୍ଥଗିତ ରଖିବା
ମଧ୍ୟ ପ୍ରୟୋଜନ । କିନ୍ତୁ ଦୈନନ୍ଦିନ ଆନ୍ଦୋଳନାତ୍ମକ ଗଣ ପ୍ରଚାରରେ,
ଯେଉଁଥିରେ କି ସରକାରୀ ପାର୍ଲମେଣ୍ଟାରୀ ନିୟମ କାନୁନ ପାଳନ କରିବା
ପାଇଁ କୌଣସି ବାଧ୍ୟବାଧକତା ନାହିଁ, ସେଥିରେ ଏପରି ପ୍ରଚାର ମଧ୍ୟ ଯୋଗ
କରାଯାଇପାରେ—ଏହି ବଦମାସ ସିଡ଼େମ୍ୟାନପନ୍ଥୀମାନେ, ଏହି ନିର୍ବୋଧ
କାଉଟସ୍କି ପନ୍ଥୀ ଓ କ୍ରିସ୍ପିଏନ୍ ପନ୍ଥୀମାନେ ନିଜେ କପଟ ବୋକା ବନିଛନ୍ତି
ଏବଂ ଶ୍ରମିକମାନଙ୍କୁ କପଟ ବୋକା ବନାଉଛନ୍ତି ତାହା ସେମାନଙ୍କର ବାସ୍ତବ
କାର୍ଯ୍ୟ ଦ୍ୱାରା ପରିସ୍ଫୁଟ ହୋଇଯିବ । ଆଉ ସେମାନଙ୍କର ଏହି "ନିର୍ମଳ"
ସରକାର ହିଁ ସମାଜବାଦର ସମସ୍ତ ଆବର୍ଜନାସ୍ତୂପକୁ, ଅର୍ଥାତ ସୋଶାଲ—
ଡେମୋକ୍ରାସି ଓ ଅନ୍ୟାନ୍ୟ ପ୍ରକାରର ସାମାଜିକ ବିଶ୍ୱାସଘାତକତାକୁ,
"ପରିଷ୍କାର" କରି ଦେଇ ନିଜେ "ସବୁଠାରୁ ନିର୍ମଳ" କାର୍ଯ୍ୟ
କରିଦେବ ।

ଜର୍ମାନୀର ସ୍ୱାଧୀନ ସୋଶାଲ୍ ଡେମୋକ୍ରାଟିକ ପାର୍ଟିର ଉପସ୍ଥିତ
ନେତାମାନଙ୍କର ( ଯେଉଁମାନଙ୍କ ସମ୍ପର୍କରେ ଭୁଲରେ କୁହାଯାଇଥାଏ
ଯେ, ସେମାନଙ୍କର କୌଣସି ପ୍ରଭାବ ପ୍ରତିପତ୍ତି ଆଉ ନାହିଁ, କିନ୍ତୁ ପ୍ରକୃତରେ
ଦେଖିବାକୁ ଗଲେ ସେମାନେ ସର୍ବହରା ପକ୍ଷରେ ଅତୀବ ବିପଜ୍ଜନକ, ଏପରିକି

ଯେଉଁ ହଙ୍ଗେରୀୟ ସୋଶାଲଡ଼େମୋକ୍ରାଟ୍‌ମାନେ ନିଜକୁ କମ୍ୟୁନିଷ୍ଟ ବୋଲାଇ ସର୍ବହରା ଏକାଧିପତ୍ୟକୁ "ସମର୍ଥନ" କରିବେ ବୋଲି କହୁଥିଲେ ସେମାନଙ୍କ ଠାରୁ ମଧ୍ୟ ଅଧିକ ବିପଜ୍ଜନକ ) ପ୍ରକୃତ ସ୍ୱରୂପ ପୁଣିଥରେ ଜର୍ମାନ କୌଣ୍ଟି-ଲେଭଙ୍କ ସମୟରେ, ଅର୍ଥାତ୍ କ୍ୟାପ୍-ଲୁଟଭିଜ୍ ଗୋଷ୍ଠୀର ସାମରିକ ଷଡ଼ଯନ୍ତ୍ର ସମୟରେ ଉଦ୍‌ଘାଟିତ ହୋଇ ଯାଇଛି । ଏହାର ଏକ କ୍ଷୁଦ୍ର ଅଥଚ ସୁସ୍ପଷ୍ଟ ଦୃଷ୍ଟାନ୍ତ ଦୁଇଟି ସଂକ୍ଷିପ୍ତ ପ୍ରବନ୍ଧରୁ ମିଳେ—ଗୋଟିଏ ପ୍ରବନ୍ଧ କାର୍ଲ କାଉଟସ୍କିଙ୍କ ଦ୍ୱାରା ଲିଖିତ । ପ୍ରବନ୍ଧଟିର ନାମ ହେଉଛି "ଚୂଡ଼ାନ୍ତ ମୁହୂର୍ତ୍ତ" । ସ୍ୱାଧୀନବାଦୀମାନଙ୍କର "ସ୍ୱାଧୀନତା" ନାମକ ପତ୍ରିକାର ୧୯୨୦, ମାର୍ଚ୍ଚ ୩୦ ତାରିଖ ସଂଖ୍ୟାର ପ୍ରବନ୍ଧଟି ପ୍ରକାଶିତ ହୋଇଛି । ଅନ୍ୟ ପ୍ରବନ୍ଧଟି ଆର୍ଥର କ୍ରିସ୍‌ପିଏନଙ୍କ ଦ୍ୱାରା ଲିଖିତ । ପ୍ରବନ୍ଧଟିର ନାମ ହେଉଛି "ରାଜନୈତିକ ପରିସ୍ଥିତି ସମ୍ପର୍କରେ" । ଏହି ପ୍ରବନ୍ଧଟି ମଧ୍ୟ ଉକ୍ତ ପତ୍ରିକାର ୧୯୨୦, ଏପ୍ରିଲ ୧୪, ସଂଖ୍ୟାରେ ପ୍ରକାଶିତ ହୋଇଛି । ସେଥିରୁ ସ୍ପଷ୍ଟ ଜଣାଯାଏ ଯେ, ଏହି ଭଦ୍ରବ୍ୟକ୍ତିଗଣ ବିପ୍ଳବୀମାନଙ୍କ ପରି ଚିନ୍ତା କରିବାକୁ, ବିଚାର କରିବାକୁ ଏକାନ୍ତ ଅକ୍ଷମ । ସେମାନେ ସବୁ ହେଉଛନ୍ତି ନିପଟ ପ୍ରବଞ୍ଚକ ଓ ନିର୍ବୋଧ ଗଣତନ୍ତ୍ରବାଦୀ । ଆଉ ସେମାନେ ଯେତେବେଳେ ନିଜକୁ ସୋଭିଏତ୍ ସରକାର ଓ ସର୍ବହରା ଏକାଧିପତ୍ୟର ସମର୍ଥକ ବୋଲି ଦାବୀ କରନ୍ତି ସେତେବେଳେ ସେମାନେ ସର୍ବହରା ପାଇଁ ସହସ୍ର ଗୁଣେ ବିପଜ୍ଜନକ ହୋଇ ଉଠନ୍ତି । କାରଣ, ପ୍ରକୃତରେ ଦେଖିବାକୁ ଗଲେ, ଯେତେବେଳେ ପରିସ୍ଥିତି ଖୁବ୍ ଦୁଃସାଧ୍ୟ ଓ ବିପଦସଙ୍କୁଳ ହୋଇଉଠେ ସେତେବେଳେ ସେମାନେ ନିଶ୍ଚିତ ଭାବେ ବିଶ୍ୱାସଘାତକତା କରନ୍ତି·········ଅଥଚ ଏଣେ ସେମାନେ "ଆନ୍ତରିକ ଭାବେ" ବିଶ୍ୱାସ କରୁଥାନ୍ତି ଯେ ସେମାନେ ସର୍ବହରାଶ୍ରେଣୀକୁ ସାହାଯ୍ୟ କରୁଛନ୍ତି । ହଙ୍ଗେରୀ ସୋଶାଲ-ଡ଼େମୋକ୍ରାଟ୍‌ମାନେ ମଧ୍ୟ କ'ଣ ନିଜକୁ କମ୍ୟୁନିଷ୍ଟ ବୋଲାଇ ସର୍ବହରା ଶ୍ରେଣୀକୁ ଏହିପରି "ସାହାଯ୍ୟ" କରିବାକୁ ଚାହୁଁନଥିଲେ ଆଉ ଅଥଚ ଏଣେ ନିଜର ଚରମ ଭୀରୁତା ଓ ମେରୁଦଣ୍ଡହୀନତା ଯୋଗୁଁ ହଙ୍ଗେରୀରେ ସୋଭିଏତ୍ ସରକାରର ଅସ୍ତିତ୍ୱକୁ ଅସମ୍ଭବ ବୋଲି ବିଚାର

କରି ମିତ୍ରଗୋଷ୍ଠୀର ପୁଂଜିପତି ଓ ମିତ୍ରଗୋଷ୍ଠୀର ନରଘାତକମାନଙ୍କର ଦଲାଲମାନଙ୍କ ନିକଟରେ ଲାଙ୍ଗୁଡ଼ ଯାକି ଅବଶେଷରେ ଶରଣାପନ୍ନ ହୋଇ ନଥିଲେ ?

୩

## ଇଟାଲୀର ତୁରାଟୀ ଗୋଷ୍ଠୀ

ନିଜ ଦଳ ଭିତରେ ଏପରି ସଭ୍ୟମାନଙ୍କର ଓ ଏପରି ପାର୍ଲ୍ୟମେଣ୍ଟାରିଆନମାନଙ୍କର ଉପସ୍ଥିତିକୁ ବରଦାସ୍ତ କରି ଇଟାଲୀସ୍ଥ ସୋଶାଲିଷ୍ଟ ପାର୍ଟି ଭୁଲ କରୁଛି ବୋଲି ମୁଁ ଏହି ପୁସ୍ତିକାରେ ମତବ୍ୟକ୍ତ କରୁଛି । ମୋର ଏହି ମତର ଯଥାର୍ଥତାକୁ ଉପରୋକ୍ତ ଇଟାଲୀସ୍ଥ ସମ୍ବାଦପତ୍ର "ଇଲ ସୋଭିଏତ୍ର" ଉଦ୍ଧୃତ ସଂଖ୍ୟାଗୁଡ଼ିକ ସ୍ପଷ୍ଟଭାବେ ପ୍ରତିପାଦିତ କରି ଦେଉଛି । କେବଳ ସେତିକି ନୁହେଁ, ଇଂରେଜୀ ବୁର୍ଜୁଆ ଉଦାରପନ୍ଥୀ ସମ୍ବାଦପତ୍ର "ଦି ମାଞ୍ଚେଷ୍ଟର ଗାର୍ଡିଆନ୍"ର ରୋମ୍ ସମ୍ବାଦଦାତାଙ୍କ ପରି ଜଣେ ବାହାରର ପର୍ଯ୍ୟବେକ୍ଷକ ମଧ୍ୟ ମୋର ମନ୍ତବ୍ୟର ଯଥାର୍ଥତାକୁ ପ୍ରତିପାଦିତ କରି ଦେଇଛନ୍ତି । ତୁରାଟୀଙ୍କ ସହିତ ଉକ୍ତ ସମ୍ବାଦଦାତାଙ୍କର ସାକ୍ଷାତ୍କାରର ବିବରଣୀ ଏହି ସମ୍ବାଦପତ୍ରର ମାର୍ଚ୍ଚ ୧୨, ୧୯୨୦ ସଂଖ୍ୟାରେ ପ୍ରକାଶିତ ହୋଇଛି । ସେଥିରେ ଉକ୍ତ ସମ୍ବାଦଦାତା ଲେଖିଛନ୍ତି ।

"ଶ୍ରୀ ତୁରାଟୀଙ୍କ ମତରେ ବିପ୍ଳବର ବିପଦ ଏପରି କିଛି ନୁହେଁ ଯେଉଁଥିରେ ଇଟାଲୀରେ ଅଯଥା ଆଶଙ୍କା ଓ ଉଦ୍‌ବେଗ ସୃଷ୍ଟି ହେବ । ଜନସାଧାରଣଙ୍କୁ ଜାଗ୍ରତ ଓ ଉତ୍ତେଜିତ କରି ରଖିବା ଉଦ୍ଦେଶ୍ୟରେ କେବଳ ମ୍ୟାକ୍‌ସିମାଲିଷ୍ଟମାନେ ସୋଭିଏତ୍ ତତ୍ତ୍ୱର ନିଆଁ ନେଇ ଖେଳୁଛନ୍ତି । କିନ୍ତୁ ଏସବୁ ତତ୍ତ୍ୱ ହେଉଛି କେବଳ ଏକ କାଳ୍ପନିକ ଧାରଣା । ଏହା ଏକ ଅପରିପକ୍ୱ କାର୍ଯ୍ୟକ୍ରମ, କାର୍ଯ୍ୟକ୍ଷେତ୍ରରେ ପ୍ରୟୋଗ କରିବା ଲାଗି ଏହା ଏକାନ୍ତ ଅନୁପଯୋଗୀ । ତଦ୍ୱାରା ଶ୍ରମିକ ଶ୍ରେଣୀମାନଙ୍କୁ କେବଳ ଆଶାସ୍ତୀ

କର ରଖିବା ବ୍ୟତୀତ ଅନ୍ୟ କିଛି ହେବ ନାହିଁ । ଶ୍ରମିକମାନଙ୍କର ଆଖିକୁ ଝୁଲପାଇ ଦେଇ ସେମାନଙ୍କୁ ପ୍ରଲୋଭିତ କରିବା ଉଦ୍ଦେଶ୍ୟରେ ଯେଉଁମାନେ ଏସବୁ ତତ୍ତ୍ୱକୁ ବ୍ୟବହାର କରୁଛନ୍ତି ସେହିମାନେ ହିଁ ନିଜେ ଏସବୁ କାଳ୍ପନିକ ତତ୍ତ୍ୱ ଉପରୁ ଶ୍ରମିକମାନଙ୍କର ଆସ୍ଥା ଓ ମୋହ କାଳେ ତୁଟିଯିବ ସେଇ ଭୟରେ ବର୍ତ୍ତମାନ ସାମାନ୍ୟ କିଛି ଆର୍ଥିକ ସୁବିଧା ସୁଯୋଗ ଆଦାୟ କରିବା ପାଇଁ ଦୈନନ୍ଦିନ ସଂଗ୍ରାମ ଚଳାଇବାକୁ ବାଧ୍ୟ ହେଉଛନ୍ତି । ସେଥିପାଇଁ ବର୍ତ୍ତମାନ ବିଭିନ୍ନ ଆଳରେ ଇଟାଲିରେ ଅନେକ ଗୁଡ଼ିଏ ଧର୍ମଘଟର ଆହ୍ୱାନ ଦିଆଯାଇଛି । ସେଠାରେ ବିଭିନ୍ନ ରକମର ଧର୍ମଘଟ ଚାଲିଛି ଏବଂ ସେଥିମଧ୍ୟରୁ ଡ଼ାକ ବିଭାଗ ଓ ରେଳ ବିଭାଗର ଧର୍ମଘଟ ଅନ୍ୟତମ । ଏହି ଧର୍ମଘଟ ସଦ୍ୟ ଆରମ୍ଭ ହୋଇଛି । ଏସବୁ ଧର୍ମଘଟ ଫଳରେ ଦେଶର ଶୋଚନୀୟ ଅବସ୍ଥା ଆହୁରି ଶୋଚନୀୟ ହୋଇଯାଉଛି । ଇଟାଲିର ଏହି ଆର୍ଥିକ ସମସ୍ୟା ସହିତ ସଂଶ୍ଳିଷ୍ଟ ଯାବତୀୟ ଅସୁବିଧା ଯୋଗୁଁ ଲୋକେ ଉତ୍ତ୍ୟକ୍ତ ହୋଇ ଯାଇଛନ୍ତି । ତା ସାଙ୍ଗକୁ ବିଦେଶୀ ଋଣର ବୋଝ ବଢ଼ି ବଢ଼ି ଚାଲିଛି ଏବଂ ଅତିରିକ୍ତ କାଗଜ ମୁଦ୍ରାର ପ୍ରଚଳନ ଯୋଗୁଁ ମୁଦ୍ରାସ୍ଫୀତିର ରୂପ ମଧ୍ୟ ବଢ଼ୁଛି । ତଥାପି କାର୍ଯ୍ୟକ୍ଷେତ୍ରରେ ଶୃଙ୍ଖଳା ରକ୍ଷା କରିବାର ପ୍ରୟୋଜନୀୟତାକୁ ଇଟାଲି ଦେଶ ଏପର୍ଯ୍ୟନ୍ତ ବି ହୃଦୟଙ୍ଗମ କରି ପାରିନାହିଁ, ଅଥଚ ଏହି ଶୃଙ୍ଖଳା ଉପରେ ହିଁ ଇଟାଲିର ସମୃଦ୍ଧି ଓ ଶାନ୍ତିଶୃଙ୍ଖଳା ନିର୍ଭର କରେ ।"

ଏହି ଇଂରେଜୀ ସମ୍ବାଦଦାତା ନିଜର ଅଜ୍ଞାତସାରରେ ସତକଥାଟାକୁ ଯେ କହି ପକାଇଛନ୍ତି ତାହା ଦିବାଲୋକ ପରି ସ୍ପଷ୍ଟ । ବୋଧହୁଏ ତୁରାଟୀ ନିଜେ ଏବଂ ତାଙ୍କର ବୁର୍ଜୁଆ ସମର୍ଥକ, ସହଯୋଗୀ ଓ ପ୍ରେରଣାଦାତାମାନେ ଏହି ସତ୍ୟକୁ ଘୋଡ଼ାଇ ଦେଉଥିଲେ ଓ ଏବେ ଦେଉଥିଲେ । ସତ କଥାଟା ହେଉଛି ଏହି ଇଂରେଜୀ ସମ୍ବାଦଦାତା ଯାହା ବର୍ଣ୍ଣନା କରିଛନ୍ତି ସେସବୁ ହିଁ ବାସ୍ତବିକ ଇଟାଲିର ଏହି ତୁରାଟୀ, ଟ୍ରେଭେସ, ମୋଡିଗ୍ଲିଆନି ଓ ଦୁଗୋନି ଗୋଷ୍ଠୀର ନିର୍ଦ୍ଦିଷ୍ଟ ସୁବିଧାବାଦୀ ଓ ରାଜନୈତିକ କାର୍ଯ୍ୟକଳାପ । ଏହା ପୁରାପୂରି ସାମାଜିକ ବିଶ୍ୱାସଘାତକତା । ଯେଉଁ

ଶ୍ରମିକମାନେ ହେଉଛନ୍ତି ମଜୁରିର ଦାବି ଓ ପୁଞ୍ଜିପତିମାନଙ୍କ ଆକ୍ରମଣ ସମ୍ମୁଖ କରିବା ଲାଗି ଯେଉଁମାନେ ଛଟି ଛଟି ମରୁଛନ୍ତି ସେମାନଙ୍କ ମଧ୍ୟରେ ଆଇନ ଶୃଙ୍ଖଳା ରକ୍ଷା କରିବା ପାଇଁ ପ୍ରଚାର କରିବା ବାସ୍ତବିକ ବଡ଼ ମୂଲ୍ୟବାନ୍ କଥା ! ଏପରି ମେନ୍‌ଶେଭିକ ବକ୍ତୃତା ସହିତ ଆମେ ଋଷୀୟମାନେ ବେଶ୍ ପରିଚିତ । ଆଃ ଜନସାଧାରଣ ସୋଭିଏତ୍ ସରକାରର ପକ୍ଷପାତୀ ବୋଲି କେଡ଼େ ଗୋଟାଏ ମୂଲ୍ୟବାନ୍ ସ୍ୱୀକୃତି ସେ ! ସ୍ୱତଃସ୍ଫୂର୍ତ୍ତିଭାବେ ପରିବ୍ୟାପ୍ତ ହେଉଥିବା ଧର୍ମଘଟଗୁଡ଼ିକର ବୈପ୍ଳବିକ ଭୂମିକାକୁ ହୃଦୟଙ୍ଗମ କରିବାରେ କି ଜଡ଼ବୋଧ ଓ ଅଶ୍ଳୀଳ ବୁର୍ଜୁଆ ସୁଲଭ ଅକ୍ଷମତା ସେ ! ହଁ, ବାସ୍ତବିକ୍, ଏହି ଇଂରେଜ ବୁର୍ଜୁଆ ଉଦାରପନ୍ଥୀ ସମ୍ବାଦପତ୍ରର ସମ୍ବାଦଦାତା ପ୍ରଚ୍ଛନ୍ନ ଭାବେ ଋଷୀୟ ଗୋଷ୍ଠୀର ଗୋଟାଏ ଉପକାର କରି ଦେଇଛନ୍ତି । ଆଜି "ଇଲ୍‌ସୋଭିଏତ୍" ପତ୍ରିକାର ବୋର୍ଡ଼ିଗା ଓ ତାଙ୍କର ବନ୍ଧୁମାନେ ଦୃଢ଼ ଭାବେ କହୁଛନ୍ତି ଯେ, ଇଟାଲୀୟ ସୋଶାଲିଷ୍ଟ ପାର୍ଟି ଯଦି ପ୍ରକୃତରେ ତୃତୀୟ ଆନ୍ତର୍ଜାତିକକୁ ସମର୍ଥନ କରିବାକୁ ଚାହୁଁଥାଏ ତାହେଲେ ଋଷୀୟ ଗୋଷ୍ଠୀକୁ ସେ ତାର ସଭ୍ୟ ତାଲିକା ଭିତରୁ ବାହାର କରି ଦେଇ ନିଜକୁ ନାମତଃ ଓ କାର୍ଯ୍ୟତଃ ଏକ କମ୍ୟୁନିଷ୍ଟ ପାର୍ଟିରେ ପରିଣତ କରିବା ଦରକାର, ସେମାନଙ୍କର ଏହି ଦାବୀର ନିର୍ଭୁଲତାକୁ ଉକ୍ତ ସମ୍ବାଦଦାତା ଯଥାର୍ଥ ବୋଲି ପ୍ରମାଣ କରି ଦେଇଛନ୍ତି ।

୪

## ନିର୍ଭୁଲ ପ୍ରସ୍ତାବରୁ ଭୁଲ ଉପସଂହାର

କିନ୍ତୁ କମ୍ରେଡ଼ ବୋର୍ଡ଼ିଗା ଓ ତାଙ୍କର "ବାମପନ୍ଥୀ" ବନ୍ଧୁମାନେ ଯଥାର୍ଥ ଭାବେ ଋଷୀୟ ଗୋଷ୍ଠୀକୁ ସମାଲୋଚନା କରୁଥିଲେ ମଧ୍ୟ ସେଥିରୁ ସେମାନେ ଏକ ଭୁଲ ସିଦ୍ଧାନ୍ତରେ ଯାଇ ଉପନୀତ ହେଉଛନ୍ତି । ସେମାନେ କହୁଛନ୍ତି ଯେ, ପାର୍ଲିମେଣ୍ଟରେ ଅଂଶ ଗ୍ରହଣ କରିବା ସାଧାରଣତଃ କ୍ଷତିକାରକ । ଏହା ସେମାନଙ୍କର ଏକ ଭୁଲ ସିଦ୍ଧାନ୍ତ । ଇଟାଲୀର [illegible]

"ବାମପନ୍ଥୀମାନେ" ନିଜର ଏତାଦୃଶ ମତାମତକୁ ଯଥାର୍ଥ ବୋଲି ପ୍ରତିପାଦନ
କରିପାରିଲା ଭଳି ଗୋଟିଏ ହେଲେ ଗୁରୁତ୍ୱପୂର୍ଣ୍ଣ ଯୁକ୍ତି ଦର୍ଶାଇ ପାରିବେ
ନାହିଁ । ବୁର୍ଜୋୟା ପାର୍ଲାମେଣ୍ଟକୁ କିପରି ପ୍ରକୃତରେ ବୈପ୍ଳବିକ ସ୍ୱାର୍ଥରେ ଓ
କମ୍ୟୁନିଷ୍ଟ ପନ୍ଥାରେ ସଦୁପଯୋଗ କରାଯାଏ ଏବଂ ସର୍ବହରା ବିପ୍ଳବର ପ୍ରସ୍ତୁତି
ଲାଗି ଯାହା ଏକାନ୍ତ ମୂଲ୍ୟବାନ ହୋଇ ଆସିଛି ତାହାର ଆନ୍ତର୍ଜାତିକ
ଦୃଷ୍ଟାନ୍ତଗୁଡ଼ିକୁ ସେମାନେ ଆଦୌ ଜାଣନ୍ତି ନାହିଁ (କିମ୍ବା ଜାଣିଥିଲେ ବି
ଭୁଲି ଯିବାକୁ ଚେଷ୍ଟା କରନ୍ତି) । ପାର୍ଲାମେଣ୍ଟକୁ କିପରି ଏକ "ନୂତନ"
ପନ୍ଥାରେ ସଦୁପଯୋଗ କରାଯାଇପାରିବ ସେ କଥା ସେମାନେ କଳ୍ପନା ବି
କରିପାରନ୍ତି ନାହିଁ । ସେମାନେ କେବଳ ସେଇ "ପୁରୁଣା", ଅଣ-ବଲ୍‌ଶେଭିକ
ପଦ୍ଧତି କଥା ବାରମ୍ବାର ଘୋଷି ହୁଅନ୍ତି ଓ ସେହି କଥା ଅନବରତ ପ୍ରଚାର
କରନ୍ତି ।

ଠିକ୍ ଏହିଥିରେ ହିଁ ସେମାନଙ୍କର ମୌଳିକ ଭୁଲ୍ ନିହିତ । କେବଳ
ପାର୍ଲାମେଣ୍ଟାରି କ୍ଷେତ୍ରରେ ନୁହେଁ, ମାନବୀୟ କାର୍ଯ୍ୟକଳାପର ସକଳ କ୍ଷେତ୍ରରେ
କମ୍ୟୁନିଜମ୍‌କୁ ନୀତିଗତ ଦୃଷ୍ଟିରୁ କିଛି ଏକ ନୂତନ କଥା ନିଶ୍ଚୟ ପ୍ରବର୍ତ୍ତନ
କରିବାକୁ ହେବ । (ଏବଂ ଦୀର୍ଘ, ଦୃଢ଼, ଓ ଅବ୍ୟାହତ ଉଦ୍ୟମ ବିନା
ଏହାର ପ୍ରବର୍ତ୍ତନ ଅସମ୍ଭବ), ଯାହା କି ଦ୍ୱିତୀୟ ଆନ୍ତର୍ଜାତିକଠାରୁ
ସମ୍ପୂର୍ଣ୍ଣ ଭିନ୍ନ ହେବ ଅର୍ଥାତ୍ ଦ୍ୱିତୀୟ ଆନ୍ତର୍ଜାତିକ ଠାରୁ ନିଜର ସମ୍ପୂର୍ଣ୍ଣ
ସ୍ୱାତନ୍ତ୍ର୍ୟର ପରିଚାୟକ ହେବ (କିନ୍ତୁ ଏହି ଦ୍ୱିତୀୟ ଆନ୍ତର୍ଜାତିକର ଯାହା
କିଛି ଭଲ ଗୁଣ ଥିଲା ତାହାକୁ ରକ୍ଷା କରିବାକୁ ହେବ ଓ ଆହୁରି ବିକଶିତ
କରିବାକୁ ହେବ) ।

ସାମ୍ବାଦିକତା କାମ କଥା ଏଠାରେ ଧରାଯାଉ । ପ୍ରଚାର, ଆନ୍ଦୋଳନ
ଓ ସଂଗଠନ ଲାଗି ସମ୍ବାଦ ପତ୍ର, ପ୍ରଚାର ପୁସ୍ତକ ଓ ପ୍ରଚାର ପତ୍ର ଏକାନ୍ତ
ପ୍ରୟୋଜନ । କୌଣସି ସଭ୍ୟ ଦେଶରେ ଏହି ସମ୍ବାଦପତ୍ର ବ୍ୟବସ୍ଥା ବିନା ଏକ
ଗଣ ଆନ୍ଦୋଳନ ଗଢ଼ି ତୋଳିବା ଅସମ୍ଭବ । "ନେତାମାନଙ୍କ" ବିରୁଦ୍ଧରେ
ଯେତେ ପାଟି ତୁଣ୍ଡ କଲେ ବି ନେତାମାନଙ୍କର ପ୍ରଭାବରୁ ଜନସାଧାରଣଙ୍କର

ଅନାବିଳତାକୁ ରକ୍ଷା କରିବା ଲାଗି ଯେତେ ପବିତ୍ର ଶପଥ ଗ୍ରହଣ କଲେ ବି ବୁର୍ଜୁଆ ବୌଦ୍ଧିକ ପରିବେଶ ଭିତରୁ ଆସିଥିବା ବ୍ୟକ୍ତିମାନଙ୍କୁ ଏହି କାର୍ଯ୍ୟରେ ବିନିଯୋଗ କରିବାର ପ୍ରୟୋଜନୀୟତାକୁ ଅସ୍ୱୀକାର କରି ହେବ ନାହିଁ କିମ୍ବା ପୁଞ୍ଜିବାଦର ଅମଳରେ ଯେଉଁ ବୁର୍ଜୁଆ ଗଣତାନ୍ତ୍ରିକ ଓ "ବ୍ୟକ୍ତିଗତ ସମ୍ପତ୍ତିର" ବାତାବରଣ ଓ ପରିବେଶ ଭିତରେ ଏହି କାର୍ଯ୍ୟ କରିଯାଏ ତାହାକୁ ଦୂର କରି ହେବ ନାହିଁ । ଏପରିକି ଆମ ଦେଶରେ ସର୍ବହରା ଶ୍ରେଣୀ ବୁର୍ଜୁଆଶ୍ରେଣୀକୁ କ୍ଷମତାଚ୍ୟୁତ କରିବାର ଓ ରାଜନୈତିକ କ୍ଷମତା ଦଖଲ କରିବାର ଅଠର ବର୍ଷ ପରେ ବି ଆମର ଚତୁର୍ଦ୍ଦିଗରେ ଏହି ପରିବେଶ ବିଦ୍ୟମାନ ହେଉଛି—ବୁର୍ଜୁଆ ଗଣତାନ୍ତ୍ରିକ ସମ୍ପତ୍ତିଗତ ସମ୍ପର୍କର ଗଣ (କୃଷକ, କାରିଗର) ପରିବେଶ ବିଦ୍ୟମାନ ରହିଛି ।

ପାର୍ଲାମେଣ୍ଟାରୀ କାର୍ଯ୍ୟ ହେଉଛି ଗୋଟାଏ ପ୍ରକାରର କାମ ଏବଂ ସାମ୍ବାଦିକତା ହେଉଛି ଅନ୍ୟ ପ୍ରକାରର କାମ । କିନ୍ତୁ ଏହି ଉଭୟ କାର୍ଯ୍ୟର ଆଦର୍ଶ କମ୍ୟୁନିଷ୍ଟ ଆଦର୍ଶ ହୋଇ ପାରିବ । ଏହି ଉଭୟ କ୍ଷେତ୍ରରେ କାର୍ଯ୍ୟ କରୁଥିବା ବ୍ୟକ୍ତିମାନେ ଯଦି ପ୍ରକୃତ କମ୍ୟୁନିଷ୍ଟ ହୋଇଥାନ୍ତି, ସେମାନେ ଯଦି ଏକ ସର୍ବହରା ଗଣ ପାର୍ଟିର ପ୍ରକୃତ ସଭ୍ୟ ହୋଇ ଥାନ୍ତି ତାହେଲେ ଏହି କାମ ନିଶ୍ଚୟ କମ୍ୟୁନିଷ୍ଟ କାମ ହେବ । ତଥାପି ଏ ଦୁଇ କ୍ଷେତ୍ରରେ କେତେକ ବାଧା ପ୍ରତିବନ୍ଧକ ରହିଛି ଯାହାକୁ ଏଡ଼ିଦେଇ ଖସିଯିବା ଆଦୌ ସମ୍ଭବ ନୁହଁ । କେବଳ ଏ ଦୁଇ କ୍ଷେତ୍ରରେ ନୁହଁ, ପୁଞ୍ଜିବାଦର ଅମଳରେ ଏବଂ ପୁଞ୍ଜିବାଦରୁ ସମାଜବାଦ ଆଡ଼କୁ ଅଗ୍ରସର ହେଲା ବେଳେ ମାନବିକ କର୍ମତତ୍ପରତାର ଅନ୍ୟ ସବୁ କ୍ଷେତ୍ରରେ ମଧ୍ୟ ଏହି ପରି ଅନେକ ବାଧା ପ୍ରତିବନ୍ଧକର ସମ୍ମୁଖୀନ ହେବାକୁ ପଡ଼ିବ ଯାହାକୁ ଏଡ଼ିଦେବା ସମ୍ଭବ ହେବ ନାହିଁ । ସର୍ବହରାଶ୍ରେଣୀକୁ ସେହିସବୁ ବାଧା ପ୍ରତିବନ୍ଧକକୁ ଅତିକ୍ରମ କରିବାକୁ ପଡ଼ିବ, ସେହି ସବୁ ପ୍ରଚଣ୍ଡ ସମସ୍ୟାକୁ ସମାଧାନ କରିବାକୁ ପଡ଼ିବ । ତାହେଲେ ଯାଇ ବୁର୍ଜୁଆଶ୍ରେଣୀ ଭିତରୁ ଆସିଥିବା ବ୍ୟକ୍ତିମାନଙ୍କୁ ସର୍ବହରା ଶ୍ରେଣୀ ନିଜର କାର୍ଯ୍ୟରେ ବିନିଯୋଗ କରିପାରିବ, ବୁର୍ଜୁଆ

ବୌଦ୍ଧିକ କୁସଂସ୍କାର ଓ ପ୍ରଭାବ ଉପରେ ବିଜୟ ହାସଲ କରି ପାରିବ, ସେଟି ବୁର୍ଜୁଆ ପରିବେଶର ପ୍ରତିରୋଧକୁ ଦୁର୍ବଳ କରି ଦେଇ ପାରିବ ( ଏବଂ ଅବଶେଷରେ ତାହାକୁ ସଂପୂର୍ଣ୍ଣ ରୂପେ ରୂପାନ୍ତରିତ କରି ଦେଇ ପାରିବ )।

୧୯୧୪-୧୮ର ଯୁଦ୍ଧ ପୂର୍ବରୁ ପ୍ରାୟ ସବୁ ଦେଶରେ ଏହିପରି ଅତି ଉଗ୍ର "ବାମପନ୍ଥୀ" ନୈରାଜ୍ୟବାଦୀ, ସିଣ୍ଡିକ୍ୟାଲବାଦୀ ପ୍ରଭୃତିଙ୍କର ଆବିର୍ଭାବ ଘଟିଥିଲା । ସେମାନେ ପାର୍ଲାମେଣ୍ଟାରିଆନମାନଙ୍କ ବିରୁଦ୍ଧରେ ବିଷୋଦ୍‌ଗୀରଣ କରୁଥିଲେ, ବୁର୍ଜୁଆ ଧର୍ମରେ କଳୁଷିତ ହୋଇଯାଇଥିବା ପାର୍ଲାମେଣ୍ଟାରି ସୋଶାଲିଷ୍ଟମାନଙ୍କୁ ବ୍ୟଙ୍ଗ ବିଦ୍ରୂପ କରୁଥିଲେ ଏବଂ ସେମାନଙ୍କର ସ୍ୱାର୍ଥାନ୍ୱେଷୀ ଜୀବିକା ସର୍ବସ୍ୱ ଜୀବନକୁ ନିନ୍ଦା ଇତ୍ୟାଦି କରୁଥିଲେ । ଅଥଚ ସେହି ଉଗ୍ରବାମପନ୍ଥୀମାନେ ନିଜେ ଏବେ ସାମ୍ବାଦିକତା ଜରିଆରେ ଏବଂ ସିଣ୍ଡିକେଟ୍ ( ଟ୍ରେଡ୍ ୟୁନିଅନ ସଙ୍ଗଠନ ) ଭିତରେ କାମ କରିବା ଜରିଆରେ ସେହି ସମାନ ବୁର୍ଜୁଆ ଜୀବନନିର୍ବାହ କରୁଥିଲେ । ଏକଥା କଣ ଆମେ ଯୁଦ୍ଧପୂର୍ବରୁ ସବୁ ଦେଶରେ ଲକ୍ଷ୍ୟ କରିନହେଁ ? କେବଳ ଫ୍ରାନ୍ସରୁ ଦୃଷ୍ଟାନ୍ତ ଖୋଜିଲେ ଜୁହୋ ଓ ମେରହାଇମ୍ କ'ଣ ଏହି ପ୍ରକାରର ଉଗ୍ରବାମପନ୍ଥୀମାନଙ୍କର ଏକ ଉଲ୍ଲେଖଯୋଗ୍ୟ ଦୃଷ୍ଟାନ୍ତ ନୁହଁନ୍ତି ?

ଯେଉଁମାନେ ପାର୍ଲାମେଣ୍ଟରେ ଅଂଶ ଗ୍ରହଣ କରିବା ନୀତିକୁ "ପ୍ରତ୍ୟାଖ୍ୟାନ" କରନ୍ତି ସେମାନେ ଭାବନ୍ତି ଯେ, ଶ୍ରମିକ ଶ୍ରେଣୀ ଆନ୍ଦୋଳନ ଭିତରେ ବୁର୍ଜୁଆ ଗଣତାନ୍ତ୍ରିକ ପ୍ରଭାବକୁ ପରାଭୂତ କରିବାର ଦୁଃସାଧ୍ୟ ସମସ୍ୟାକୁ ଏହି ଅତି "ସରଳ", "ସହଜ" ଓ ତଥାକଥିତ ବୈପ୍ଳବିକ ପନ୍ଥାରେ ସେମାନେ ଅକ୍ଳେଶରେ ସମାଧାନ କରି ଦେଇପାରିବେ । ଅଥଚ ପ୍ରକୃତରେ ଦେଖିବାକୁ ଗଲେ ଏପରି କରିବା ଦ୍ୱାରା ସେମାନେ କେବଳ ନିଜ ଛାଇକୁ [illegible] ଛାଡ଼ି ପଳାଇଯିବାକୁ ଚେଷ୍ଟା କରୁଛନ୍ତି, ସବୁ ପ୍ରକାର ବାଧା ପ୍ରତିବନ୍ଧକ ପ୍ରତି ଆଖିବୁଜି ଦେଉଛନ୍ତି ଏବଂ କେବଳ

ତଥା ଦ୍ୱାରା ଏସବୁ ବାଧାବିଘ୍ନକୁ ଏଡ଼େଇଦେବାକୁ ଚେଷ୍ଟା କରୁଛନ୍ତି । ସେମାନଙ୍କର ଠିକ୍ ଏତାଦୃଶ ଚିନ୍ତାଧାରା ଭିତରେ ହିଁ ସେମାନଙ୍କର ଶିଶୁ-ସୁଲଭ ଚପଳତା ନିହିତ । ନିର୍ଦ୍ଦିଷ୍ଟ ଜୀବିକା ସର୍ବସ୍ୱତା, ବୁର୍ଜୁଆ ଗଣତନ୍ତ୍ରରେ ପାର୍ଲାମେଣ୍ଟାରୀପଥର ସ୍ୱାର୍ଥପର ଉପଯୋଗ, ପାର୍ଲାମେଣ୍ଟାରୀ କାର୍ଯ୍ୟକଳାପର ଅତି ଉଲଗ୍ନ ସଂସ୍କାରବାଦୀ ବିକଳନ ଏବଂ ଅତି ଅଶ୍ଳୀଳ ପେଟିବୁର୍ଜୁଆ ଗତାନୁଗତିକତା—ଏସବୁ ଲକ୍ଷଣ ଆଜି ସାଧାରଣ ଜୀବନରେ ସର୍ବତ୍ର ପରି-ଲକ୍ଷିତ ହୁଏ । ଏସବୁ ଲକ୍ଷଣକୁ ପୁଞ୍ଜିବାଦ ସର୍ବତ୍ର ଜନ୍ମଦିଏ—ଶ୍ରମିକ-ଶ୍ରେଣୀ ଆନ୍ଦୋଳନ ବାହାରେ କେବଳ ନୁହେଁ, ଶ୍ରମିକଶ୍ରେଣୀ ଆନ୍ଦୋଳନ ଭିତରେ ମଧ୍ୟ । ତା ସଙ୍ଗେ ସଙ୍ଗେ ପୁଞ୍ଜିବାଦ ଓ ତା ଭିତରୁ ଜନ୍ମଲାଭ କରିଥିବା ବୁର୍ଜୁଆ ପରିବେଶ ଏ ଉଭୟେ ସୃଷ୍ଟି କରନ୍ତି ବୁର୍ଜୁଆ ଜୀବିକା ସର୍ବସ୍ୱତା, ଜାତୀୟମତ ଛତା, ପେଟିବୁର୍ଜୁଆ ଅଶ୍ଳୀଳତା ଇତ୍ୟାଦି । ଜୀବନ ଓ ସାମାଜିକ କାର୍ଯ୍ୟକଳାପର ପ୍ରତ୍ୟେକ କ୍ଷେତ୍ରରେ ଏହା ଆତ୍ମପ୍ରକାଶ କରେ । ଏହାର ରୂପରେ ଯାହା ସାମାନ୍ୟ କିଛିଏ ପ୍ରଭେଦ ରହିଥାଏ । ( ଆହୁ ଉପରୋକ୍ତ ବୁର୍ଜୁଆ ପରିବେଶ ବୁର୍ଜୁଆ ଶ୍ରେଣୀର ଉଚ୍ଛେଦ ପରେ ମଧ୍ୟ ଅତି ଧୀରେ ଧୀରେ କ୍ଷୟ ହୁଏ, ତାହା ଦ୍ରୁତ ଭାବେ ଉଭେଇଯାଏ ନାହିଁ କାରଣ କୃଷକଶ୍ରେଣୀ ଏହି ବୁର୍ଜୁଆଶ୍ରେଣୀକୁ ପ୍ରତିନିୟତ ଉଜ୍ଜୀବିତ କରୁଥାଏ) ।

ଅଃ, ଆମର ପ୍ରିୟ ବାସନ୍ଦବାଦୀ ବୃନ୍ଦ, ପ୍ରିୟ ପାର୍ଲାମେଣ୍ଟାରୀଆନ-ବିରୋଧବାଦୀ ବୃନ୍ଦ, ଆପଣମାନେ ଭାବନ୍ତି ଯେ, ଆପଣମାନେ ଅତି "ଭୟାନକ ଭାବେ ବିପ୍ଳବୀ" । କିନ୍ତୁ ପ୍ରକୃତରେ ଦେଖିବାକୁ ଗଲେ ଶ୍ରମିକଶ୍ରେଣୀ ଆନ୍ଦୋଳନ ଭିତରେ ଦେଖାଦେଇଥିବା ବୁର୍ଜୁଆ ପ୍ରଭାବ-ବିରୁଦ୍ଧରେ ସଂଗ୍ରାମ କରିବାର ଅପେକ୍ଷାକୃତ ଛୋଟ ଛୋଟ ଅସୁବିଧାକୁ ଦେଖି ଆପଣମାନେ ଭୟଭୀତ ହୋଇଯାଉଛନ୍ତି । ଅଥଚ ଆପଣ-ମାନଙ୍କର ବିଜୟ ଫଳରେ, ଅର୍ଥାତ୍ ବୁର୍ଜୁଆଶ୍ରେଣୀର ଉଚ୍ଛେଦ ଓ ସର୍ବହରାଶ୍ରେଣୀ କର୍ତ୍ତୃକ ରାଜନୈତିକ କ୍ଷମତା ଦଖଲ ଫଳରେ ଏହିସବୁ

ଅସୁବିଧାଗୁଡ଼ିକ ଅତ୍ୟନ୍ତ ବ୍ୟାପକ ଭାବେ, ଖୁବ୍ ବ୍ୟାପକଭାବେ ଦେଖାଦେବ । ଏକଥା ଆପଣମାନେ ବୁଝିପାରୁନାହାନ୍ତି । ଶ୍ରେଷ୍ଠ ଶ୍ରେଷ୍ଠ ପିଲାଙ୍କ ପରି ଆପଣମାନେ ଅଳ୍ପ ଏହି ଶ୍ରେଷ୍ଠ ଶ୍ରେଷ୍ଠ ଅସୁବିଧା, ଶ୍ରେଷ୍ଠ ଶ୍ରେଷ୍ଠ ବାଧା ପ୍ରତିବନ୍ଧକକୁ ଦେଖି ଭୟଭୀତ ହୋଇଯାଉଛନ୍ତି । ଆପଣମାନେ ବୁଝି ପାରୁନାହାନ୍ତି ଯେ, ଆଜି ନ ହେଲେ ବି କାଲି ନିଶ୍ଚୟ ଆପଣମାନଙ୍କୁ ଶିକ୍ଷା କରିବାକୁ ହେବ, ଯେକୌଣସିମତେ ଖୁବ୍ ଭଲ ଭାବେ ଶିକ୍ଷା କରିବାକୁ ହେବ ଏହି ସବୁ ବାଧା ପ୍ରତିବନ୍ଧକକୁ ଅତ୍ୟନ୍ତ ବ୍ୟାପକ ଭାବେ ଉପରେ ଭାବେ ଅତିକ୍ରମ କରିବାକୁ ହୁଏ ।

ସୋଭିଏତ୍ ବ୍ୟବସ୍ଥା ଅମଳରେ ଆମଣମାନଙ୍କର ସର୍ବହରା ପାର୍ଟି ଅଛି ଆମର ସର୍ବହରା ପାର୍ଟି ବି ଅତ୍ୟନ୍ତ ବହୁ ସଂଖ୍ୟକ ବୁର୍ଜୁଆ ବୁଦ୍ଧିଜୀବି ମାନଙ୍କ ଦ୍ୱାରା ଆକ୍ରାନ୍ତ ହୋଇ ପଡ଼ିବ । ଏହି ବୁର୍ଜୁଆ ବୁଦ୍ଧିଜୀବୀମାନେ ଗଳିପଶି ସୋଭିଏତ୍ ଗୁଡ଼ିକ ଭିତରକୁ, ଆଇନ ଅଦାଲତ ଭିତରକୁ ଓ ଶାସନକଳ ଭିତରକୁ ପଶି ଆସିବେ । କାରଣ ପୁଞ୍ଜିବାଦ ଦ୍ୱାରା ସୃଷ୍ଟ ମଣିଷ ମାନଙ୍କୁ ସମ୍ପୂର୍ଣ୍ଣରୂପେ ବାଦ ଦେଇ କମ୍ୟୁନିଜମ ଗଢ଼ିବା ସମ୍ଭବ ନୁହେଁ ଅଛି ଏହି ବୁର୍ଜୁଆ ବୁଦ୍ଧିଜୀବୀମାନଙ୍କୁ ବହିଷ୍କାର କରି ଦିଆଯାଇପାରିବ ନାହିଁ କି ଧ୍ୱଂସ କରି ଦିଆଯାଇପାରିବ ନାହିଁ । ସେମାନଙ୍କୁ ପରାଭୂତ କରିବାକୁ ହେବ, ନୂଆ କରି ଗଢ଼ି ତୋଳିବାକୁ ହେବ, ନିଜ ଭିତରେ ସେମାନଙ୍କୁ ସାମିଲ କରି ନେବାକୁ ହେବ ଏବଂ ସେମାନଙ୍କୁ ପୁନଃ ଶିକ୍ଷିତ କରିବାକୁ ହେବ । ଠିକ୍ ଆମ୍ଭେମାନେ ଯେମିତି ସର୍ବହରାର ଏକାଧିପତ୍ୟକୁ ଭିତ୍ତି କରି ଏକ ସୁଦୀର୍ଘ ସଂଗ୍ରାମ ଭିତର ଦେଇ ଆମର ସର୍ବହରାମାନଙ୍କୁ ପୁନଶିକ୍ଷିତ କରୁ ସେମିତି ଏହି ବୁର୍ଜୁଆ ବୁଦ୍ଧିଜୀବୀମାନଙ୍କୁ ମଧ୍ୟ ନୂଆ କରି ଶିକ୍ଷା ଦେବାକୁ ପଡ଼ିବ । ଆମର ଏହି ସର୍ବହରାମାନେ ମଧ୍ୟ ଗୋଟାଏ ତୋଡ଼ରେ କି ଯାଦୁବଳରେ, କି କୁମାରୀ ମେରୀଙ୍କର ହୁକୁମବଳରେ, କି ଗୋଟାଏ ସ୍ଲୋଗାନରେ କମ୍ବା ଗୋଟାଏ ପ୍ରସ୍ତାବ କି ଗୋଟାଏ ହୁକୁମ କାମରେ ସେମାନଙ୍କର ପେଟିବୁର୍ଜୁଆ କୁସଂସ୍କାରଗୁଡ଼ିକୁ ପରିତ୍ୟାଗ କରିଦିଅନ୍ତି ନାହିଁ ।

ଏହି ଗଣବ୍ୟାପୀ ପେଟିବୁର୍ଜୁଆ ପ୍ରଭାବ ବିରୁଦ୍ଧରେ ଏକ ସୁଦୀର୍ଘ ଓ କଠୋର ଗଣସଂଗ୍ରାମ ଜରିଆରେ ହିଁ ସେମାନେ ଏସବୁ କୁସଂସ୍କାରକୁ କ୍ରମେ କ୍ରମେ ପରିତ୍ୟାଗ କରନ୍ତୁ । ତେଣୁ ପାର୍ଲମେଣ୍ଟବିରୋଧୀମାନେ ଆଜି ଯେଉଁସବୁ ସମସ୍ୟାକୁ ଅତି ହେୟଜ୍ଞାନ କରି, ଅହଙ୍କାର ଓ ଗର୍ବର ସହିତ ଏବଂ ଅତି ଲଘୁଚିତ୍ତରେ ତୁଆଙ୍କ ପରି ହାତ ହଲେଇ ଦେଇ ଏଡ଼େଇ ଦେଇ ଯିବାକୁ ଚେଷ୍ଟା କରୁଛନ୍ତି ଠିକ୍ ସେହିସବୁ ସମସ୍ୟାହିଁ ବର୍ତ୍ତମାନ ସୋଭିଏତ୍ ଶାସନ ଅମଳରେ ମଧ୍ୟ ପୁଣି ଥରେ ନୂଆ କରି ଆମର ସୋଭିଏତ୍ ଗୁଡ଼ିକ ଭିତରେ, ସୋଭିଏତ୍ ଶାସନ କଳ ଭିତରେ ସୋଭିଏତ୍ "ଏଟର୍ଣ୍ଣି-ମାନଙ୍କ" ଭିତରେ ( ବୁଝିଥିରେ ଆମେ ଯଥାର୍ଥ ଭାବେ ବୁର୍ଜୁଆ ଆଇନଜୀବି ସଂସ୍ଥାକୁ ଲୋପ କରି ଦେଇଛୁ, ତଥାପି "ସୋଭିଏତ୍" "ଏଟର୍ଣ୍ଣି"ର ବେଶରେ ସେଇ ସଂସ୍ଥା ପୁଣି ଥରେ ବଞ୍ଚି ଉଠିଛି ) ମୁଣ୍ଡଟେକି ଉଠିଛି । ବୁର୍ଜୁଆ ପାର୍ଲମେଣ୍ଟାରିଆନ୍‌ମାନଙ୍କର ପ୍ରାୟ ସବୁ ମନ୍ଦଗୁଣ ବର୍ତ୍ତମାନ ସୋଭିଏତ୍ ଇଂଜିନିୟର, ସୋଭିଏତ୍ ସ୍କୁଲ ଶିକ୍ଷକ ଏବଂ ସୋଭିଏତ୍ କଳକାରଖାନାର ବହୁ ସୁବିଧାପ୍ରାପ୍ତ ଶ୍ରମିକ, ଅର୍ଥାତ୍ ଅତି ସୁଦକ୍ଷ ଓ ଉଚ୍ଚପାରିଶ୍ରମିକ ଶ୍ରମିକମାନଙ୍କ ଭିତରେ ପ୍ରତିନିୟତ ପୁଣି ମୁଣ୍ଡଟେକି ଉଠୁଥିବାର ଆମେ ଲକ୍ଷ୍ୟ କରୁଛୁ । ଆଉ ଏହି ଅନିଷ୍ଟକୁ ଆମେ ନିଶ୍ଚୟ କାଳକ୍ରମେ ପରାଭୂତ କରି ଦେବୁ — ତାହାକୁ ଅନବରତ, ଅବିଶ୍ରାନ୍ତ, ସୁଦୀର୍ଘ ଓ ସୁଦୃଢ଼ ସଂଗ୍ରାମ ଦ୍ୱାରା ଏବଂ ପ୍ରଲେତାରିଆର ସଗଠନ ଓ ଶୃଙ୍ଖଳା ଦ୍ୱାରା ଆମେ ପରାଭୂତ କରିବୁ ।

ଅବଶ୍ୟ, ବୁର୍ଜୁଆ ଶାସନ ଅମଳରେ ଏହି ସବୁ ବୁର୍ଜୁଆ ଅଭ୍ୟାସକୁ ଆମ ନିଜ ଭିତରୁ, ଅର୍ଥାତ୍ ଶ୍ରମିକ ପାର୍ଟି ଭିତରୁ ଦୂର କରିବା ଖୁବ୍ "କଷ୍ଟକର" କାମ । ବୁର୍ଜୁଆ କୁପ୍ରଥାର ଦ୍ୱାରା ସାଂଘାତିକ ଭାବେ କଳୁଷିତ ହୋଇ ଯାଇଥିବା ସାଧାରଣ ରକମର ପାର୍ଲମେଣ୍ଟାରି ନେତାଙ୍କୁ ପାର୍ଟି ଭିତରୁ ବହିଷ୍କାର କରିବା "କଷ୍ଟକର" । ବୁର୍ଜୁଆଶ୍ରେଣୀ ଭିତରୁ ଆସିଥିବା ଏକାନ୍ତ ଅପରିହାର୍ଯ୍ୟ ବିଶେଷଜ୍ଞମାନଙ୍କୁ ( ସେମାନଙ୍କର

ସଂଖ୍ୟା ଖୁବ୍ ସୀମିତ ହୋଇଥିଲେ ମଧ୍ଯ ) ସର୍ବହରା ଶୃଙ୍ଖଳା ଦ୍ୱାରା ଆବଦ୍ଧ କରି ରଖିବା "କଷ୍ଟକର" । ବୁର୍ଜୁଆ ପାର୍ଲାମେଣ୍ଟ ଭିତରେ ଶ୍ରମିକଶ୍ରେଣୀ ପାଇଁ ସମ୍ପୂର୍ଣ୍ଣରୂପେ ଯୋଗ୍ୟ ହେଲାଭଳି ଏକ କମ୍ୟୁନିଷ୍ଟ ସଭ୍ୟଗୋଷ୍ଠୀ ଗଠନ କରିବା ଖୁବ୍ "କଷ୍ଟକର" । ଏହି କମ୍ୟୁନିଷ୍ଟ ପାର୍ଲାମେଣ୍ଟ ସଭ୍ୟମାନେ ବୁର୍ଜୁଆ ପାର୍ଲାମେଣ୍ଟାରି ଖେଳ ନ ଖେଳି ନିଜକୁ ଯେପରି ଜନସାଧାରଣଙ୍କ ମଧ୍ୟରେ ପ୍ରଚାର, ଆନ୍ଦୋଳନ ଓ ସଂଗଠନ କାର୍ଯ୍ୟରେ ନିୟୋଜିତ କରନ୍ତୁ ତାର ବ୍ୟବସ୍ଥା କରିବା ମଧ୍ଯ "କଷ୍ଟକର" । ଏସବୁ ଅତି "କଷ୍ଟକର" କାମ । ଏବିଷୟରେ ସନ୍ଦେହ କରିବାର କିଛି ନାହିଁ । ରୁଷିଆରେ ଏସବୁ କାମ ଖୁବ୍ କଷ୍ଟକର ହୋଇଥିଲା । ପଶ୍ଚିମ ୟୁରୋପ ଓ ଆମେରିକାରେ ଏକାମ ଆହୁରି ସହସ୍ର ଗୁଣ କଷ୍ଟକର ହେବ । କାରଣ ସେଠାରେ ବୁର୍ଜୁଆ-ଶ୍ରେଣୀ ହେଉଛି ଅଧିକ ଶକ୍ତିଶାଳୀ, ବୁର୍ଜୁଆ ଗଣତାନ୍ତ୍ରିକ ପରମ୍ପରା ହେଉଛି ଅଧିକ ଶକ୍ତିଶାଳୀ ଇତ୍ୟାଦି ଇତ୍ୟାଦି ।

ତଥାପି ସର୍ବହରା ବିପ୍ଳବ ସମୟରେ ଓ ସର୍ବହରା କର୍ତ୍ତୃକ କ୍ଷମତା ଦଖଲ ହେବା ପରେ ମଧ୍ଯ ପୁଣି ଥରେ ଏହି ସମାନ ପ୍ରକାରର ସମସ୍ୟା ଦେଖା ଦେବ । ନିଜର ବିଜୟ ହାସଲ କରିବା ଲାଗି ସର୍ବହରାଶ୍ରେଣୀକୁ ଯେ କୌଣସିମତେ ସେ ସବୁ ସମସ୍ୟାକୁ ସମାଧାନ କରିବାକୁ ପଡ଼ିବ । ଏହା ଅନିବାର୍ଯ୍ୟ । ତେଣୁ ଏହା ତୁଳନାରେ ଉପରୋକ୍ତ "କଷ୍ଟକର" କାମଗୁଡ଼ିକ ନିହାତି ପିଲାଖେଳ ମାତ୍ର । ସର୍ବହରା ଏକାଧିପତ୍ୟର ଅମଳରେ କୋଟି କୋଟି କୃଷୀ ଓ ଛୋଟ ଛୋଟ ମାଲିକ, ଲକ୍ଷ ଲକ୍ଷ ଅଫିସ କର୍ମଚାରୀ ଅମଲା ଓ ବୁର୍ଜୁଆ ବୁଦ୍ଧିଜୀବିଙ୍କୁ ପୁନର୍ଶିକ୍ଷିତ କରିବା, ସେମାନଙ୍କୁ ସର୍ବହରା ରାଷ୍ଟ୍ର ଓ ସର୍ବହରାର ନେତୃତ୍ୱ ଅଧୀନକୁ ଆଣିବା, ସେମାନଙ୍କର ବୁର୍ଜୁଆ ଅଭ୍ୟାସ ଓ ପରମ୍ପରାକୁ ପରାଭୂତ କରିବା ବାସ୍ତବିକ ଏକ ବିରାଟ ସମସ୍ୟା । ଏହି ବିରାଟ ସମସ୍ୟାବଳୀ ତୁଳନାରେ ବୁର୍ଜୁଆ ଶାସନ ଅମଳରେ ଓ ବୁର୍ଜୁଆ ପାର୍ଲାମେଣ୍ଟ ଭିତରେ ଏକ ପ୍ରକୃତ ସର୍ବହରା ପାର୍ଟିର ଏକ ପ୍ରକୃତ କମ୍ୟୁନିଷ୍ଟ ଗ୍ରୁପ୍ ଗଠନ କରିବା ଛୁଆଖେଳ ପରି ଅତି ସହଜ ।

ଅମର "ବାମପନ୍ଥୀ" ଓ ପାର୍ଲମେଣ୍ଟ-ବିରୋଧୀ କମ୍ରେଡ୍‌ମାନେ ଏପରି ଏକ ଶ୍ରେଷ୍ଠ ପ୍ରତିଦ୍ୱନ୍ଦ୍ୱୀଙ୍କୁ ଉପରେ ଅତିକ୍ରମ କରିବାକୁ ହେବ ତାହା ଯଦି ଏବେ ଶିକ୍ଷା ନକରିବେ ତାହେଲେ ଆମେ ନିଶ୍ଚିତ ଭାବେ କହିପାରୁ ଯେ, ସେମାନେ ଦୃଢ଼ ତ ସର୍ବହରାର ଏକାଧିପତ୍ୟ ପ୍ରତିଷ୍ଠା କରିବା ପାଇଁ ଅକ୍ଷମ ହେବେ, ବୁର୍ଜୁଆ ବୁଦ୍ଧିଜୀବୀମାନଙ୍କୁ ଓ ବୁର୍ଜୁଆ ପ୍ରତିଷ୍ଠାନଗୁଡ଼ିକୁ ପୁନର୍ଶିକ୍ଷିତ କରିବାରେ ଓ ନିଜର ଅଧୀନସ୍ଥ କରିବାରେ ଅସମର୍ଥ ହେବେ ନରୁବା ସେମାନଙ୍କ ଖୁବ୍ ତରତରରେ ନିଜର ଶିକ୍ଷା-ସମ୍ପନ୍ନ କରିବାକୁ ପଡ଼ିବ । ଆଉ ଏହି ତର ତରିଆ କାମ ଫଳରେ ସେମାନେ ସର୍ବହରା ଆଦର୍ଶର ଘୋର କ୍ଷତି କରିବେ, ସାଧାରଣତଃ ସେମାନେ ଯାହା ଭୁଲ କରନ୍ତି ତା ଅପେକ୍ଷା ଢେର ବେଶି ଭୁଲ କରିବେ, ଢେର ବେଶି ଦୁର୍ବଳତା ଓ ଅକ୍ଷମତା ପ୍ରଦର୍ଶନ କରିବେ ଇତ୍ୟାଦି ଇତ୍ୟାଦି ।

ଯେତେ ଦିନ ପର୍ଯ୍ୟନ୍ତ ବୁର୍ଜୁଆଶ୍ରେଣୀର ଉଚ୍ଛେଦ ଘଟିନାହିଁ, ଆଉ ଯେତେ ଦିନ ପର୍ଯ୍ୟନ୍ତ ଶ୍ରେଷ୍ଠ ଧରଣର ଅର୍ଥନୀତି ଓ ଶ୍ରେଷ୍ଠ ଶ୍ରେଷ୍ଠ ପଣ୍ୟଦ୍ରବ୍ୟ ଉତ୍ପାଦନ ବ୍ୟବସ୍ଥା ସମ୍ପୂର୍ଣ୍ଣରୂପେ ଉଭେଇ ଯାଇନାହିଁ ସେତେଦିନ ପର୍ଯ୍ୟନ୍ତ ବୁର୍ଜୁଆ ବାତାବରଣ, ମାଲିକାନା ଅଭ୍ୟାସ ଓ ପେଟିବୁର୍ଜୁଆ ପରମ୍ପରା ତିଷ୍ଠିରହିଥିବ ଏବଂ ସର୍ବହରା ଶ୍ରେଣୀର କାର୍ଯ୍ୟକୁ ସର୍ବଦା ବାଧା ଦେଉଥିବ । କେବଳ ଶ୍ରମିକଶ୍ରେଣୀ ଆନ୍ଦୋଳନ ଭିତରେ ନୁହଁ ସେଇ ଆନ୍ଦୋଳନର ବାହାରେ ମଧ୍ୟ, କେବଳ ଗୋଟିଏ କର୍ମକ୍ଷେତ୍ର, ଅର୍ଥାତ୍ ପାର୍ଲମେଣ୍ଟାରୀ କର୍ମ କ୍ଷେତ୍ରରେ ନୁହଁ, ସବୁ ପ୍ରକାର ସାମାଜିକ, ସାଂସ୍କୃତିକ ଓ ରାଜନୈତିକ କର୍ମକ୍ଷେତ୍ରରେ ମଧ୍ୟ ତାହା ସର୍ବହରା ଶ୍ରେଣୀର କାର୍ଯ୍ୟକୁ ବ୍ୟାହତ କରୁଥିବ । ଏହା ଅନିବାର୍ଯ୍ୟ । ଆଉ କୌଣସି ଏକ କର୍ମକ୍ଷେତ୍ରର ଏହିପରି ଏକ "ଅପ୍ରୀତିକର" ସମସ୍ୟାକୁ କିମ୍ବା ପ୍ରତିବନ୍ଧକକୁ ଆମେ ଯଦି ଏଡ଼ି-ଦେବାକୁ ଚେଷ୍ଟା କରିବା ଏବଂ ତାଠାରୁ ନିଜକୁ ଦୂରେଇ ରଖିବା ପାଇଁ ଚେଷ୍ଟା କରିବା ତାହେଲେ ଆମେ ସାଙ୍ଘାତିକ ଭୁଲ କରି ବସିବା । ତା

ଫଳରେ ପରେ ଆମକୁ ନିଷ୍ପୃହ ବସ୍ତୁ ଦାମ୍ ଦେବାକୁ ପଡ଼ିବ ଓ ଭୋଗିବ ପଡ଼ିବ । ତେଣୁ ଜୀବନର ପ୍ରତ୍ୟେକ କର୍ମକ୍ଷେତ୍ରକୁ କପଟ ଅସ୍ପୃଷ୍ଟ କରିବାକୁ ହେବ ଏବଂ ସର୍ବତ୍ର ଓ ସବୁ ରକମର ବାଧାବିଘ୍ନ, ସବୁ ରକମର ବୁର୍ଜୁଆ ଅଭ୍ୟାସ, ବୁର୍ଜୁଆ ପ୍ରଥା ଓ ବୁର୍ଜୁଆ ସଂସ୍କାରକୁ କପଟ ଅତିକ୍ରମ କରିବାକୁ ହେବ ତାହା ଆମକୁ ଅନୁଧ୍ୟାନ କରିବାକୁ ହେବ ଓ ଶିକ୍ଷା କରିବାକୁ ହେବ । ଏହି ସମସ୍ୟାଟିକୁ ଅନ୍ୟ କୌଣସିରୂପେ ଉପସ୍ଥାପିତ କରିବା ଏକାନ୍ତ ନିରର୍ଥକ ଓ ଶିଶୁସୁଲଭ ଚପଳତା ବ୍ୟତୀତ ଅନ୍ୟ କିଛି ନୁହଁ ।

ମଇ' ୧୨, ୧୯୨୦

୧୯୨୦, ଏପ୍ରିଲ—ମଇ'ମାସରେ ଲିଖିତ ପୁସ୍ତିକାରେ
ପ୍ରଥମେ ୧୯୨୦, ଜୁନ୍ ମାସରେ ପ୍ରକାଶିତ ।